# ଆଞ୍ଚଳିକ ଜନଶ୍ରୁତି ଓ ଇତିହାସ


କୈଳାସ ଚନ୍ଦ୍ର ଦାଶ

ଇତିହାସ ବିଭାଗ

ଢେଙ୍କାନାଳ କଲେଜ, ଢେଙ୍କାନାଳ





ମୟୂର ପବ୍ଲିକେସନ୍ସ

ଭୁବନେଶ୍ୱର

# ଆଞ୍ଚଳିକ ଜନଶ୍ରୁତି ଓ ଇତିହାସ

*ଲେଖକ :* କୈଳାସ ଚନ୍ଦ୍ର ଦାଶ

*ପ୍ରକାଶକ :* ମୟୂର ପବ୍ଲିକେସନ୍ସ, ସି-୫, ୟୁନିଟ୍-୩, ଭୁବନେଶ୍ୱର-୧

*ପ୍ରଥମ ପ୍ରକାଶନ* - ୨୦୦୦ ମସିହା

*ମୁଦ୍ରଣ :* ଦୁଦୁଲି ପ୍ରୋସେସ ଆଣ୍ଡ ଅଫ୍‌ସେଟ, ଭୁବନେଶ୍ୱର

*ମୂଲ୍ୟ :* ଅଶି ଟଙ୍କା ମାତ୍ର



Anchalika Janasruti O Itihasa

*Writer :* Kailash Ch. Dash

*Publisher :* Mayur Publications, Bhubaneswar

*First Edition* - 2000 A.D.

*Printer :* Duduly Process & Offset, Bhubaneswar

*Price :* Rs. 80/-

ISBN : 81-86040-79-X

# ।। ଉତ୍ସର୍ଗ ।।

ଯେ ମୋତେ ପୁସ୍ତକ ପ୍ରକାଶନ ପାଇଁ ପ୍ରଥମେ
ଉତ୍ସାହିତ କରିଥିଲେ, ସେହି ସାହିତ୍ୟ ସଂସ୍କୃତି
ପ୍ରେମୀ ଅଧ୍ୟାପକ ସ୍ୱର୍ଗତଃ ଶରତ ଚନ୍ଦ୍ର ନାୟକଙ୍କ
ସ୍ମୃତିରେ ଏହି କ୍ଷୁଦ୍ର ଅବଦାନ ଅର୍ପିତ ।

# ମୁଖଶାଳା

ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଶାର ଇତିହାସ ଚର୍ଚ୍ଚାରେ ଜନଶ୍ରୁତି/ଲୋକକଥାର ଭୂମିକାକୁ ଅସ୍ୱୀକାର କରାଯାଇନପାରେ । ବେଳେବେଳେ ଐତିହାସିକମାନେ ଯାହାକୁ ପ୍ରାମାଣିକ ଉପାଦାନ ହିସାବରେ ଗ୍ରହଣ କରିଥାନ୍ତି, ତାହାଦ୍ୱାରା ଇତିହାସର ଚିତ୍ର ଅସ୍ପଷ୍ଟ ହୋଇଯାଏ । ସେ ସ୍ଥଳରେ ଜନଶ୍ରୁତି ବହୁ ଅନ୍ଧାର ଅଡୁଆ କାଟି ଅତୀତର ପଥକୁ ପରିଷ୍କାର କରିଥାଏ । ତେଣୁ ଆଧୁନିକ କାଳରେ ଜନଶ୍ରୁତି ଇତିହାସର ମୁଖ୍ୟ ଅଙ୍ଗ ରୂପେ ଗୃହିତ । ଓଡ଼ିଶାର ପ୍ରାଚୀନ ଓ ମଧ୍ୟଯୁଗ ସମ୍ପର୍କିତ ବହୁ ଜନଶ୍ରୁତି ରହିଛି । ସେ ସବୁର ସଂଯୋଜନରେ ପ୍ରାଚୀନ ଓ ମଧ୍ୟଯୁଗୀୟ ସମାଜ ଓ ସଂସ୍କୃତିର ବିବରଣୀ ଦିଆଯାଇପାରେ । ଆଞ୍ଚଳିକ ଇତିହାସ ଆଲୋଚନା ପାଇଁ ଜନଶ୍ରୁତିର ବିଶେଷ ଆବଶ୍ୟକତା ରହିଛି ।

ଊନବିଂଶ ଶତକରେ ଐତିହାସିକମାନେ ଆଣ୍ଡ୍ରିଉ ଷ୍ଟରଲିଂ, ଉଇଲିୟମ ହଣ୍ଟର, ରାଜେନ୍ଦ୍ରଲାଲ ମିତ୍ର, ଜନ୍ ବୀମସ୍, ଉଇଲିୟମ ଲଉରୀ, ପ୍ୟାରୀମୋହନ ଆଚାର୍ଯ୍ୟ- ଜନଶ୍ରୁତିକୁ ନେଇ ଓଡ଼ିଶାର ଇତିହାସ ରଚନା କରିଥିଲେ । ପରବର୍ତ୍ତୀ କାଳରେ ପ୍ରତ୍ନତାତ୍ତ୍ୱିକ ଉପାଦାନର ଆବିଷ୍କାର ଫଳରେ ଓଡ଼ିଶା ଇତିହାସ ଚର୍ଚ୍ଚା ବିସ୍ତାରିତ ହେଲା । ଜନଶ୍ରୁତି ସହିତ ପ୍ରତ୍ନତାତ୍ତ୍ୱିକ ଉପାଦାନକୁ ସଂଯୋଗ କରି ଇତିହାସ ଧାରା ଗଠନ କରାଗଲା । ଏ ଦିଗରେ ମନମୋହନ ଚକ୍ରବର୍ତ୍ତି, ମନମୋହନ ଗାଙ୍ଗୁଲି, ନଗେନ୍ଦ୍ରନାଥ ବସୁ, ରାଖାଲ ଦାସ ବାନାର୍ଜୀ, ରମେଶଚନ୍ଦ୍ର

ମଜୁମଦାର, କୃପାସିନ୍ଧୁ ମିଶ୍ର, ଜଗବନ୍ଧୁ ସିଂହ, ଦୀନେଶଚନ୍ଦ୍ର ସରକାର, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ସତ୍ୟନାରାୟଣ ରାଜଗୁରୁ, ପରମାନନ୍ଦ ଆଚାର୍ଯ୍ୟ ଏବଂ କେଦାରନାଥ ମହାପାତ୍ର ପ୍ରଭୃତି ବିଶେଷ ଉଦ୍ୟମ କରି ଇତିହାସ ରଚନା କରିଥିଲେ ।

ବିଂଶ ଶତକରେ ପ୍ରକାଶିତ ''ଉତ୍କଳ ସାହିତ୍ୟ'' ''ସହକାର'' ''ମୁକୁର'' ପ୍ରଭୃତି ପତ୍ରିକାରେ ଓଡ଼ିଶାର ଇତିହାସ ଓ ସଂସ୍କୃତିର ବହୁ ଆଲୋଚନାରେ ଜନଶ୍ରୁତିକୁ ମଧ୍ୟ ଗୁରୁତ୍ୱ ଦିଆଯାଇଛି । ଓଡ଼ିଶାର ଜନଶ୍ରୁତି ଉପରେ ବିଶେଷ ଗୁରୁତ୍ୱ ଦେଇ ଚକ୍ରଧର ମହାପାତ୍ର, ବିରୁପାକ୍ଷ କର, କୁଞ୍ଜବିହାରୀ ଦାଶ, ଭାବଗ୍ରାହୀ ମିଶ୍ର (ଏବର ଆଚାର୍ଯ୍ୟ ଭାବାନନ୍ଦ), ପ୍ରସନ୍ନ କୁମାର ମିଶ୍ର ଓ ମହେନ୍ଦ୍ର କୁମାର ମିଶ୍ର କେତେକ ପ୍ରବନ୍ଧ ଓ ଆଲୋଚନା ପ୍ରକାଶ କରିଛନ୍ତି । ସେସବୁ ମଧ୍ୟରେ କେତେକ ବିବରଣୀ ମୂଳକ ଓ ସମାଜ ତାତ୍ତ୍ୱିକ ଦୃଷ୍ଟିକୋଣ ଜଡ଼ିତ । ତେବେ ଜନଶ୍ରୁତିଗୁଡ଼ିକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିବେଚନା କରି ସେ ସବୁ ଇତିହାସ ରଚନା କ୍ଷେତ୍ରରେ କିପରି ବ୍ୟବହାର କରାଯାଇପାରେ ଗତ ତିନି ଦଶନ୍ଧିରେ ଜର୍ମାନୀ ଗବେଷକ ହରମାନ କୁଲ୍‌କେ, ହେନରୀ ଷ୍ଟିଟେନକ୍ରୋନ୍, ଏ. ଏସ୍‌ମାନ, ରୁପରେକ୍ଟ ଗାଏବ୍ ଏବଂ ଓଡ଼ିଶାର ପ୍ରାବନ୍ଧିକ ଓ ସମାଲୋଚକ ଗଗନେନ୍ଦ୍ର ନାଥ ଦାଶ ଆଲୋଚନା କରିଯାଇଛନ୍ତି । ଏମାନଙ୍କର ଆଲୋଚନା ଗର୍ଭିତ ଗବେଷଣା ଗ୍ରନ୍ଥ "The Cult of Jagannath and the Regional Tradition of Orissa" (୧୨୭୮) ଏ ଦିଗରେ ଏକ ଅବିସ୍ମରଣୀୟ ଅବଦାନ ।

ଜନଶ୍ରୁତିକୁ ଚିପୁଡ଼ି ସେଥିରୁ ରସ ନିଗାଡ଼ି ଇତିହାସର ଧାରା ନିର୍ମାଣ କରିବାରେ ଗଗନେନ୍ଦ୍ର ନାଥ ଦାଶ ବିଶେଷ ସଫଳ ହୋଇଛନ୍ତି । ତାଙ୍କର ସ୍ମରଣୀୟ ଗ୍ରନ୍ଥ ''ଜନଶ୍ରୁତି କାଞ୍ଚି କାବେରୀ, "Hindus and Tribals: Quest for Co-existence" ଏବଂ ଏକାଧିକ ପ୍ରବନ୍ଧରେ ଜନଶ୍ରୁତିର ନିର୍ମାଣ (Construction of the traditional account) ଏବଂ ତାହା ଇତିହାସ ରଚନାର ବିଭିନ୍ନ

ପର୍ଯ୍ୟାୟରେ କିପରି ଉପାଦାନ ହିସାବରେ ଗୃହୀତ ବିସ୍ତାରିତ ଆଲୋଚନା ହୋଇଛି । ଜନଶ୍ରୁତିର ଅନ୍ଧାର ଅଡୁଆ ଭିତରୁ ଅତୀତର ଆଲୋକକୁ ବାହାର କରିଥିବାରୁ ଗଗନେନ୍ଦ୍ର ନାଥ ଦାଶ ଇତିହାସ ଲେଖା ଓ ଚର୍ଚ୍ଚା କ୍ଷେତ୍ରରେ ଅବିସ୍ମରଣୀୟ ହୋଇ ରହିବେ ।

ଏ ସମସ୍ତ ଆଲୋଚକମାନଙ୍କ ମତାମତ ପ୍ରତି ସମ୍ମାନ ରଖି ଏ ପୁସ୍ତକରେ ପ୍ରକାଶିତ କେତେକ ପ୍ରବନ୍ଧରେ ଜନଶ୍ରୁତିର ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଦିଗ ଉପରେ ଆଲୋଚନା କରାଯାଇଛି । ଏ ସଂକଳନରେ ସ୍ଥାନ ପାଇଥିବା ପ୍ରବନ୍ଧଗୁଡ଼ିକ ବିଭିନ୍ନ ସମୟରେ ନବପତ୍ର, ଅମୃତାୟନ, ଅକ୍ଷପାଦ, ଶ୍ରୀମନ୍ଦିର, ନିଶାନ୍ତ ପରି ପତ୍ରିକାମାନଙ୍କରେ ପ୍ରକାଶ କରାଯାଇଥିଲା । ବିକ୍ଷିପ୍ତ ପ୍ରବନ୍ଧଗୁଡ଼ିକୁ ନେଇ "ଆଞ୍ଚଳିକ ଇତିହାସ ଓ ଜନଶ୍ରୁତି" ଶୀର୍ଷକ ପୁସ୍ତକ ପ୍ରସ୍ତୁତ କରାଯାଇଛି । ଏଥିରେ ଥିବା ବକ୍ତବ୍ୟଗୁଡ଼ିକ ବିଭିନ୍ନ ଐତିହାସିକ ଉପାଦାନ ଦ୍ୱାରା ନିର୍ମିତ ହୋଇଥିଲେ ମଧ ଏକ ନିର୍ଦ୍ଦିଷ୍ଟ ସମୟର ଇତିହାସ ଧାରା ବହନ କରିଛନ୍ତି । ଅନେକ ତଥ୍ୟର ଏ ପୁସ୍ତକର ହୁଏତ ଅଧିକ ଆଲୋଚନା ଆବଶ୍ୟକ ହୋଇପାରେ । ଅନେକ ମତ ଏ ପୁସ୍ତକର ହୁଏତ ସଂଶୋଧନ ଆବଶ୍ୟକ; ତେବେ ଅନେକ ମତ ମଧ ପୁସ୍ତକର ଭବିଷ୍ୟତ ଗବେଷଣା କ୍ଷେତ୍ରରେ ଓଡ଼ିଶା ସମ୍ପର୍କରେ ବ୍ୟବହାର କରାଯାଇପାରିବ ବୋଲି ଆଶା କରାଯାଏ । ପ୍ରବନ୍ଧଗୁଡ଼ିକର ଆବଶ୍ୟକ ସଂଶୋଧନ ସମୟ ଅଭାବରୁ କରାଯାଇପାରି ନାହିଁ, ସେଥିପାଇଁ ପାଠକବର୍ଗଙ୍କ ଠାରୁ କ୍ଷମା ଆଶା କରୁଛି ।

ପ୍ରବନ୍ଧଗୁଡ଼ିକ ବ୍ୟବହାର କରି ପୁସ୍ତକ ରଚନା କରିବାକୁ ବହୁ ଶୁଭେଚ୍ଛୁ ଓ ବନ୍ଧୁ ମୋତେ ବିଭିନ୍ନ ସମୟରେ ଉପଦେଶ ଦେଇଥିଲେ । ସେମାନଙ୍କ ନାମ ଏଠାରେ ଉଲ୍ଲେଖ ନକରି ମଧ ସେମାନଙ୍କୁ ସମ୍ମାନର ସହିତ ସ୍ମରଣ କରୁଛି । ପୁସ୍ତକରେ ବ୍ୟବହୃତ କେତେକ ତଥ୍ୟ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଓ ଅଭିଲେଖାଗାରରୁ ସଂଗୃହୀତ । ସେ ନିମନ୍ତେ ଉଭୟର କର୍ମକର୍ତ୍ତାଙ୍କ ନିକଟରେ କୃତଜ୍ଞ । ପୁସ୍ତକ ପ୍ରକାଶନର

ଆଗ୍ରହ ଓ ଉତ୍ସାହ ଦେଇଛନ୍ତି ବର୍ଷିୟାନ ଶିକ୍ଷାବିତ୍ ଓ ଗାନ୍ଧିବାଦୀ ଲେଖକ ଭାବଗ୍ରାହୀ ମିଶ୍ର (ଆଚାର୍ଯ୍ୟ ଭାବାନନ୍ଦ) । ପୁଣି ତାଙ୍କର ମୟୂର ପବ୍ଲିକେସନ୍‌ସ ଦ୍ୱାରା ଏ ପୁସ୍ତକ ପ୍ରକାଶ ପାଇଥିବାରୁ ତାଙ୍କ ନିକଟରେ କୃତଜ୍ଞ । ନାନା ଦିଗରୁ ପ୍ରକାଶନ କ୍ଷେତ୍ରରେ ସହଯୋଗ କରିଥିବା ମୟୂର ପବ୍ଲିକେସନ୍‌ସର ରାଧାକୃଷ୍ଣ ଘଡ଼େଇଙ୍କୁ ଆନ୍ତରିକ ଧନ୍ୟବାଦ ।

ପୁସ୍ତକଟି ସଂସ୍କୃତି ଓ ଐତିହପ୍ରେମୀ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କଲେ ନିଜକୁ ଧନ୍ୟ ମନେ କରିବି ।

କୈଳାସଚନ୍ଦ୍ର ଦାଶ

ଢେଙ୍କାନାଳ
୧୮.୦୯.୨୦୦୦

# ସୂଚୀପତ୍ର





# ନାଟବେଶରେ ଗଙ୍ଗେଶ୍ୱର-ଚୋଡ଼ଗଙ୍ଗ

ଜନଶ୍ରୁତି ଐତିହାସିକ ଘଟଣାକୁ ସରାଗରେ ନିଜ ବକ୍ଷରେ ଲୁଚାଇ ରଖେ । ଯୁଗ ଯୁଗ ପରେ ନାନା ବାଧାବିଘ୍ନ ସତ୍ତ୍ୱେ ଏହି ଐତିହାସିକ ଘଟଣାର ଧାରା ପ୍ରବାହ ଅବ୍ୟାହତ ରହିଥାଏ । କେବେ କେବେ ଅବଶ୍ୟ ପଥ ବଦଳାଇ ତ୍ରିଛକୀ/ଅଙ୍କାବଙ୍କା ବାଟ ଛୁଇଁ ଗଲାବେଳେ ମଧ୍ୟ ଇତିହାସର ଧାରାଟି କଡ଼େ କଡ଼େ ରହିଯାଏ । କେବଳ ଅନୁସନ୍ଧିତ୍ସୁ ତାହାର ସନ୍ଧାନ ପାଏ । ଇତିହାସ ରଚନା କ୍ଷେତ୍ରରେ କିନ୍ତୁ ଜନଶ୍ରୁତିର ଐତିହାସିକ ଦିଗଟିକୁ ପ୍ରାୟତଃ ଉପେକ୍ଷା କରାଯାଇଛି, କିମ୍ୱା ଆବଶ୍ୟକ ଗୁରୁତ୍ୱ ଦିଆଯାଇନାହିଁ । ସେଥିପାଇଁ ସତ୍ୟାଶ୍ରୟୀ ପାଠକ ନିରାଶ ହୋଇଯାଇଛି । ଏହି ଆଲୋଚନାରେ ସେହି ଗୁରୁତ୍ୱପୂର୍ଣ୍ଣ ଦିଗଟି ଉପରେ ଦୃଷ୍ଟି ରଖି ଇତିହାସର ଏଇ ପାଠକ କିଛି ବିବେଚନା କରିଛି । ସତ୍ୟର ନିକଟବର୍ତ୍ତୀ ହୋଇ ଇତିହାସର ଶୂନ୍ୟସ୍ଥାନ ପୂର୍ଣ୍ଣ କରିବା ଆଲୋଚନାର ମୂଳ ପ୍ରସଙ୍ଗ । ଯେଉଁ ଉପରେ ଆଲୋଚନାଟି ଆଧାରିତ, ତାହା ପ୍ରଖ୍ୟାତ ସମ୍ରାଟ ଗଙ୍ଗେଶ୍ୱର ଚୋଡ଼ଗଙ୍ଗଙ୍କୁ କେନ୍ଦ୍ର କରି ସୃଷ୍ଟି ହୋଇଛି । ଚୋଡ଼ଗଙ୍ଗଦେବ ମଧ୍ୟଯୁଗୀୟ କଳିଙ୍ଗ ଇତିହାସର ଏକ ଆକର୍ଷଣୀୟ ଚରିତ୍ର । ସେ ଖ୍ରୀ: ୧୦୭୮ ଠାରୁ ୧୧୪୭ ମଧ୍ୟରେ ଦୀର୍ଘ ୭୦ ବର୍ଷ ଶାସନ କରିଥିଲେ । ତାଙ୍କ ରାଜତ୍ୱ କାଳର ଅନେକ ସ୍ମରଣୀୟ ଘଟଣା ଜନଶ୍ରୁତିରେ ଲୁଚି ରହିଛି । ସେ ସମ୍ପର୍କିତ ସମସ୍ତ ଜନଶ୍ରୁତି ବଙ୍ଗ, ଓଡ଼ିଶା, ଆନ୍ଧ୍ରରେ ପ୍ରଚାରିତ । ଜନଶ୍ରୁତି କିପରି ଚୋଡ଼ଗଙ୍ଗଙ୍କ ରାଜତ୍ୱ କାଳର କେତେକ ଘଟଣାକୁ ଗର୍ଭସ୍ଥ କରି ପାରିଛି, ତାହା ଉପରେ ଉକ୍ତ ଆଲୋଚନାରେ ଗୁରୁତ୍ୱ ଦିଆଯାଇଛି ।

ଚୋଡ଼ଗଙ୍ଗଦେବଙ୍କ ରାଜନୈତିକ ତଥା ସାମରିକ ଜୀବନର ସ୍ମୃତି ବହନ କରୁଥିବା ଜନଶ୍ରୁତି ଆନ୍ଧ୍ରରେ ବହୁଳ ପ୍ରଚାରିତ ଏବଂ ଏହା ଗୋଦାବରୀ ମଣ୍ଡଳର ବେମୁଲବାଡ଼ର ଭୀମ କବିଙ୍କ ଜୀବନ ଗାଥା ସହିତ ଜଡ଼ିତ (୧) ।

ଏହି ଜନଶ୍ରୁତିର କଥାବସ୍ତୁ ନିମ୍ନରେ ଉଦ୍ଧାର କରାଯାଇଛି । ପ୍ରାଚୀନ କାଳରେ ଖ୍ୟାତିଲାଭ କରିଥିଲା ଦକ୍ଷିଣ ଭାରତର ଭୀମେଶ୍ୱର ଶିବ ମନ୍ଦିର । ଏହା ଅଧୁନା ଗୋଦାବରୀ କୂଳରେ ରାମଚନ୍ଦ୍ରପୁର ତାଲୁକ୍‌ରେ ଅବସ୍ଥିତ । ଭୀମେଶ୍ୱରଙ୍କର ପ୍ରସାଦ ଲାଭ କରି ଭୀମ କବି ବହୁତ ଖ୍ୟାତି ଅର୍ଜନ କଲେ । ଏକଦା ସେ କଳିଙ୍ଗ ଗଙ୍ଗ ରାଜ୍ୟରେ ପ୍ରବେଶ କରି ସମ୍ରାଟ ଚୋଡ଼ଗଙ୍ଗଙ୍କ ଦର୍ଶନ ଆଶା କଲେ । କିନ୍ତୁ ରାଜା ତାଙ୍କୁ ଦର୍ଶନ ଦେବାକୁ ପ୍ରସ୍ତୁତ ନଥିଲେ । କବି ମହାଶୟ କ୍ରୋଧାନ୍ଧ ହୋଇ ରାଜାଙ୍କୁ ଅଭିଶାପ ଦେଲେ । ସେହି ଅଭିଶାପ ଆଜି ପର୍ଯ୍ୟନ୍ତ ଆନ୍ଧ୍ରପ୍ରଦେଶର ଲୋକ କଥାରେ ରହିଯାଇଛି । ସେଥିରେ କୁହାଯାଇଛି;

''ବେମୁଲବାଡ ଭୀମକବି
ବେଗମେଚୁଚି କଳିଙ୍ଗ ଗଙ୍ଗ-ଗୁଡା
ଶାପୁମୁମାନି କୋପମୁନ
ସନ୍ଧିଡ଼ିତିରିନ ରମ୍ମୁପମ୍ମନେନ୍
ମୋମୁନଜୁଡ଼ା ଦଶମିକା ମୁପ୍ୟଦିରେଣ୍ଟୁ ଦିନମ୍ମୁଲାବଲ୍
ଜମୁନକର୍‌ଥ ମନ୍ଦତାନି ସମ୍ପଦ ଶତ୍ରୁଲ ପାଲୁଗାବୁତନ୍''

ଏହି ବିବରଣୀ ଅନୁସାରେ - ବେମୁଲବାଡ଼ ଭୀମକବି କ୍ରୋଧାନ୍ଧ ହୋଇ ଶୀଘ୍ର ଶୀଘ୍ର ଚାଲିଯାଉଛନ୍ତି । ସେ ଅଭିଶାପ ଦେଇଯାଉଛନ୍ତି ଯେ ୩୨ ଦିନ ମଧ୍ୟରେ ରାଜାଙ୍କର ରାଜ୍ୟ ଓ ଧନସମ୍ପଦ ଶତ୍ରୁ ହାତକୁ ଯିବ ।

ଏହି ଅଭିଶାପ ଲାଭ ପରେ ଗଙ୍ଗରାଜ୍ୟକୁ ଶତ୍ରୁ ରାଜ୍ୟର ରାଜା (ସଜ୍ଜନଗରର ରାଜା) ଆକ୍ରମଣ କଲେ; ମହାରାଜା ଚୋଡ଼ଗଙ୍ଗ ପରାଜିତ ହେଲେ ଏବଂ ରାଜଧାନୀ ଛାଡ଼ି ପଳାୟନ କଲେ । ଚୋଡ଼ଗଙ୍ଗଙ୍କର ପ୍ରତିପକ୍ଷଙ୍କୁ କଳିଙ୍ଗ ସିଂହାସନରେ ବସାଇ ଦିଆଗଲା । ଏହି ଶୋଚନୀୟ ପରାଜୟ ପରେ ଚୋଡ଼ଗଙ୍ଗ ରାଜଧାନୀ ଠାରୁ ବହୁଦୂରରେ ଅନ୍ୟ ଏକ ସ୍ଥାନକୁ ଆସିଲେ । ଅନ୍ଧାର ରାତିରେ ଚାଲି ଚାଲି ଯିବା କାଳରେ ସେ ଏକ କୁଟୀର ନିକଟସ୍ଥ ନାଳ (ନର୍ଦ୍ଦମା)ରେ ପଡ଼ିଗଲେ । ଏହି ଅବସ୍ଥାରେ ତାଙ୍କୁ ଜଣେ ପାଲିଙ୍କିରେ ବସିଥିବା ଲୋକ ଦେଖିବାକୁ ପାଇଲେ । ଚୋଡ଼ଗଙ୍ଗ ନିଜର ଦୂରାବସ୍ଥାକୁ ସେ ଲୋକ ନିକଟରେ ପ୍ରକାଶ କଲେ ଏବଂ କହିଲେ ଯେ ସେ ପ୍ରସିଦ୍ଧ ଭୀମକବିଙ୍କୁ ଅବଜ୍ଞା କରିବାରୁ ଏହିପରି ଦୁଃଖ ଭୋଗ କରିବାକୁ ପଡ଼ିଲା ।

ଶେଷରେ ଲୋକ ଜଣକ ନିଜେ ଭୀମକବି ବୋଲି ପରିଚୟ ଦେଲେ ଏବଂ ଦେଇଥିବା ଅଭିଶାପ ଖଣ୍ଡନ କରି ଉଚ୍ଚାରଣ କଲେ;

''ବେୟ ଗଜମୁଲୁଣ୍ଡ ବଦି
ବେଲ ତୁରଙ୍ଗ ମୁଲୁଣ୍ଡ ନାଜିଲ୍
ରାୟଲ୍‌ଗେଲ୍‌ଚି ସଜ୍ଜନଗରମୁନ ବଚ୍ଚମୁଗଚ୍ଚୁକୋ ବଦିନ
ରାୟ କଳିଙ୍ଗ ଗଙ୍ଗ କବିରାଜ ଭୟଙ୍କର ମୂର୍ତ୍ତି ଚୋଡ଼ଗା
ବୋୟନ ମୀନ ମାସମୁନ ବୋନ୍ନମ ବୋଇନ୍ ଷଷ୍ଠୀ ନାଟିକିନ୍

ଏହି ବିବରଣୀ ଅନୁସାରେ ଭୀମକବି ରାଜାଙ୍କୁ ଆଶୀର୍ବାଦ କରି ପ୍ରକାଶ କରିଥିଲେ ଏକ ହଜାର ହସ୍ତୀ ଏବଂ ହଜାର ହଜାର ଅଶ୍ୱ ସହିତ ଗଙ୍ଗରାଜା ସଜ୍ଜନଗରର ରାଜାଙ୍କୁ ପରାସ୍ତ କରନ୍ତୁ, ପୁଣି ପୂର୍ଣ୍ଣିମା ପରବର୍ତ୍ତୀ ଷଷ୍ଠୀ ତିଥିରେ (ମୀନ ମାସରେ) ବିଜୟ ଲାଭ କରନ୍ତୁ ।

କଳିଙ୍ଗ ନଗରରେ ନୂତନ ରାଜା ଏହି ଅବସରରେ ଶାନ୍ତିରେ ଶାସନ କଲେ । ତାଙ୍କର ପଟ୍ଟାଭିଷେକ ଉତ୍ସବ କାଳରେ କୁଚିପୁଡ଼ି ଭାଗବତ ସମ୍ପ୍ରଦାୟର ଏକ ଯାତ୍ରାଦଳର କେତେକ ଲୋକ ବାଦ୍ୟଯନ୍ତ୍ର ସହିତ କଳିଙ୍ଗ ଅଭିମୁଖେ ଯାତ୍ରାକଲେ । ବାଟରେ ସମସ୍ତ ବାଦ୍ୟଯନ୍ତ୍ର ଧରିଥିବା ଲୋକଟି ମରିଗଲା । ତେଣୁ ସେହି ଯାତ୍ରାଦଳ ସେହିପରି ଲୋକର ଆବଶ୍ୟକତା ଅନୁଭବ କରୁଥିଲେ । ଦଳର ଲୋକମାନେ ହଠାତ୍ ପରିତ୍ୟକ୍ତ ମହାରାଜଙ୍କୁ (ଯିଏ ଚୋଡ଼ଗଙ୍ଗ ବୋଲି ସେମାନଙ୍କୁ ଅଜଣା ଥିଲା) ଏକ ସ୍ଥାନରେ ଦେଖିଲେ । ସେତେବେଳେ ସେ ଗୀତଗାନ ରତ । ଯାତ୍ରା ଦଳର ଲୋକେ ତାଙ୍କୁ କହିଲେ ଯେ ସେ ସମସ୍ତ ବାଦ୍ୟଯନ୍ତ୍ର ବହନ କରି କଳିଙ୍ଗକୁ ଯାତ୍ରା କରିବେ ଏବଂ ସେହି କାର୍ଯ୍ୟ ପାଇଁ ତାଙ୍କୁ ଖାଦ୍ୟ ଦ୍ରବ୍ୟ ଦିଆଯିବ । ଏହିପରି ଭାଗବତ ଯାତ୍ରାଦଳ ଏବଂ ବାଦ୍ୟଯନ୍ତ୍ର ଧରିଥିବା ଛଦ୍ମବେଶୀ ଚୋଡ଼ଗଙ୍ଗ କଳିଙ୍ଗ ନଗରୀରେ ପ୍ରବେଶ କଲେ । ନୂତନ ରାଜା ସେମାନଙ୍କର ରହିବା ବ୍ୟବସ୍ଥା କଲେ । ସ୍ଥିରହେଲା ଯେ ଭାଗବତ ଦଳ ଯେପରି ଭାବରେ ନୂତନ ରାଜା ଚୋଡ଼ଗଙ୍ଗଙ୍କ ପରାଜୟ ପରେ ସିଂହାସନ ଅଧିକାର କଲେ ତାହାକୁ ଚମତ୍କାର ଅଭିନୟ ମାଧ୍ୟମରେ ପରିବେଷଣ କରିବେ । ଏହା ରାଜାଙ୍କ ନିର୍ଦ୍ଦେଶାନୁସାରେ ଅଭିନୀତ ହେବ । ସେଥିପାଇଁ ଯାତ୍ରାଦଳ କିଛିଦିନ ସମୟ ନେଲେ । ସେହି ସମୟ ମଧ୍ୟରେ ଯାତ୍ରାଦଳ ଅଭିନୟ ପାଇଁ ପ୍ରସ୍ତୁତ ହେଲା ଏବଂ ରାଜାଙ୍କୁ ନିର୍ଦ୍ଦିଷ୍ଟ ଦିନ ଚୋଡ଼ଗଙ୍ଗଙ୍କୁ ପରାସ୍ତ କରିଥିବା ଘଟଣାକୁ ଅଭିନୟ କରି ଦେଖାଇ ଦେବାକୁ

ପ୍ରସ୍ତୁତ ବୋଲି ଜଣାଇଦେଲା । ଏଥିପାଇଁ ଏକଦିନ ମଧ୍ୟ ସ୍ଥିର ହେଲା । ରାଜା ଅଭିନୟ ପାଇଁ ସକଳ ବନ୍ଦୋବସ୍ତ କଲେ । ବହୁ ବିବେଚନା ପରେ ଯାତ୍ରାଦଳର ମୁଖ୍ୟ ବାଟରେ ସମସ୍ତ ବାଦ୍ୟଯନ୍ତ୍ର ବହନ କରିଥିବା ଲୋକଟିକୁ ଚୋଡ଼ଗଙ୍ଗଙ୍କ ଭୂମିକାରେ ଅଭିନୟ କରିବାକୁ ସ୍ଥିର କଲେ । ଏହାର କାରଣ ସେ ଜଣେ ସାହସୀ ଲୋକ ପରି ଜଣାପଡୁଥିଲେ ଏବଂ ଜଣେ ଗାୟକ ଥିଲେ । ଅଭିନୟ ପାଇଁ ନୂତନ ରାଜାଙ୍କ ଠାରୁ ଖଡ୍‌ଗ, ଅଶ୍ୱ ଏବଂ ମୁକୁଟ ମଧ୍ୟ ସଂଗ୍ରହ କରାଗଲା; ଯାହାଦ୍ୱାରା ବାସ୍ତବ ଚିତ୍ରକୁ ସେମାନେ ରାଜାଙ୍କ ନିକଟରେ ପରିବେଷଣ କରି ପାରିବେ । ନିର୍ଦ୍ଦିଷ୍ଟ ଦିନ ରାଜା, ମନ୍ତ୍ରୀବର୍ଗ ଏବଂ ରାଜ ପରିବାରର ଅନ୍ୟ ସଦସ୍ୟଗଣ ଭାଗବତ ଦଳର ଅଭିନୟ ଦେଖିବାକୁ ସମବେତ ହେଲେ । ଅଭିନୟ ଆରମ୍ଭ ପରେ ପରେ ସେମାନେ ମଞ୍ଚରେ ଚୋଡ଼ଗଙ୍ଗ ଭୂମିକାରେ ଅଭିନୟ ଦେଖିବାକୁ ଆଗ୍ରହର ସହିତ ଅପେକ୍ଷା କରି ରହିଲେ । ହଠାତ୍ ପରଦା ଉଠିବା ପରେ ଚୋଡ଼ଗଙ୍ଗ ମଞ୍ଚ ଉପରେ ଠିଆ ହୋଇଥିବାର ଦୃଶ୍ୟ ସମବେତ ଜନତାକୁ ମୁଗ୍ଧ କଲା । ସେ ମଞ୍ଚରେ ଅଶ୍ୱ ପୃଷ୍ଠରେ ଖଡ୍‌ଗ ଧରି ଠିଆ ହୋଇଥିଲେ । ଜନତା ପ୍ରକୃତ (ପୁରାତନ) ମହାରାଜ ଚୋଡ଼ଗଙ୍ଗଙ୍କୁ ଦେଖିବାକୁ ପାଇଲେ ବୋଲି ଚିନ୍ତା କଲେ । ନୂତନ ରାଜାଙ୍କର ଅନୁଚର ଏବଂ ସହଚରମାନେ ଏ ଦୃଶ୍ୟରେ ଚିନ୍ତିତ ହେଲେ । ମଞ୍ଚରେ ଚୋଡ଼ଗଙ୍ଗ ହଠାତ୍ ନିଜର ଖଡ୍‌ଗ ପରିଚାଳନା ଦକ୍ଷତା ପ୍ରଦର୍ଶନ କଲେ ଏବଂ ଦର୍ଶକ କକ୍ଷକୁ ଡେଇଁ ପଡ଼ିଲେ । ଦର୍ଶକମାନଙ୍କର ସମ୍ମୁଖରେ ମଧ୍ୟ ସେ ଖଡ୍‌ଗ ଚାଳନା ପ୍ରଦର୍ଶନ କଲେ । ତା'ପରେ ସେ ନୂତନ ରାଜାଙ୍କ ନିକଟକୁ ଆସିଲେ । ଖଡ୍‌ଗ ଦ୍ୱାରା ତାଙ୍କ ମୁଣ୍ଡ କାଟ କଲେ ଏବଂ ପୁରାତନ (ଉପସ୍ଥିତ) ମନ୍ତ୍ରୀବର୍ଗଙ୍କ ନିକଟରେ ନିଜେ ସେ ପୁରାତନ ମହାରାଜ ଚୋଡ଼ଗଙ୍ଗ ବୋଲି ପ୍ରକାଶ କଲେ । ସେହି କାଳରେ ସେ ମଧ୍ୟ କଳିଙ୍ଗ ସିଂହାସନରେ ବସିଲେ । ଭୟରେ ନୂତନ ରାଜାଙ୍କର ଅନୁଚର/ସହଚରମାନେ ରାଜ୍ୟ ଛାଡ଼ି ପଳାଇଗଲେ । କିଛି ବର୍ଷପରେ ଚୋଡ଼ଗଙ୍ଗ ନିଜର ପ୍ରଧାନ ଶତ୍ରୁ (ସଜ୍ଜନଗର ସମ୍ରାଟ ବା ଯାଜନଗର ସମ୍ରାଟ)ଙ୍କୁ ପରାସ୍ତ କରିବାକୁ ଯୁଦ୍ଧ ଯାତ୍ରା କଲେ ଏବଂ ଏଥିରେ ମଧ୍ୟ ସଫଳ ହେଲେ ।

ଏହି ଜନଶ୍ରୁତି ମାଦଳା ପାଞ୍ଜିରେ ଚୋଡ଼ଗଙ୍ଗଙ୍କ ଉତ୍କଳ ବିଜୟ ପ୍ରସଙ୍ଗରେ ସୂଚିତ । ଏଥିରେ ବର୍ଣ୍ଣିତ ଅଛି;

''ଗଙ୍ଗବଂଶରୁ ଜାତ ଆଦି ପାଟ ଚୂଡ଼ଗଙ୍ଗଦେବ । ଏ ଚୁଡ଼ଗଙ୍ଗଦେବ ବେତାଳ ସାଧ । ନିତାଇମା ନଗ୍ରଦେବୀ କିଳତା ମାହାପଶୁ ମନିନ୍ତ କେସରୀ ବଂଶ ରାଜା ସିଦ୍ଧକଜ୍ଜ

କେଶରୀ ରାଜାଙ୍କୁ ଉଚ୍ଛନ୍ନ କରାଇ ରାଜା ହେଲେ । କନ୍ୟା ୧୩ ଦିନ କୃଷ୍ଣ ତ୍ରୟୋଦଶୀ ଗୁରୁବାର ଦିନ ନାଟବେଶରେ ଆସି କଟକ ମାଡ଼ିବସି ରାଜା ହୋଇଲା । (୨)

ଚୋଡ଼ଗଙ୍ଗଙ୍କର ଉତ୍କଳରେ ସାର୍ବଭୌମ କ୍ଷମତା ପ୍ରତିଷ୍ଠା କରିବା ସମ୍ବାଦ କେବଳ ମାଦଳା ପାଞ୍ଜିରେ ନୁହେଁ, ଅଷ୍ଟାଦଶ-ଊନବିଂଶ ଶତକର ରଚନା ଗଙ୍ଗବଂଶାନୁଚରିତ ଚମ୍ପୂ, କଟକରାଜ ବଂଶାବଳି ଏବଂ ଓଡ୍ରଦେଶ ରାଜବଂଶାବଳିରେ ମଧ୍ୟ ଅଳ୍ପେ ଅଧିକେ ସୂଚିତ । (୩) ଏ ସବୁରେ ଚୋଡ଼ଗଙ୍ଗ କୌଶଳ କରି ଅଦ୍‌ଭୁତ ଉପାୟରେ ଉତ୍କଳ ଅଧିକାର କରିଥିବା ତଥ୍ୟ ପ୍ରକାଶିତ ।

ମାଦଳାପାଞ୍ଜି, କଟକ ରାଜବଂଶାବଳି ଏବଂ ଗଙ୍ଗବଂଶାନୁଚରିତ ଚମ୍ପୂ ପ୍ରଭୃତି ପାରମ୍ପରିକ ବିବରଣୀ ବର୍ଣ୍ଣିତ ଜନଶ୍ରୁତିକୈନ୍ଦ୍ରିକ ଘଟଣା ଚୋଡ଼ଗଙ୍ଗଙ୍କ ଦୀର୍ଘ ଶାସନ କାଳର ଏକ ସ୍ମରଣୀୟ ପର୍ଯ୍ୟାୟ (ଖ୍ରୀ: ୧୦୭୮-୧୧୧୪)ରେ ଘଟିଥିବା ଘଟଣା ସହିତ ମେଳ ଖାଉଛି । ମାଦଳାପାଞ୍ଜିର ରାଜଚରିତ ଚୋଡ଼ଗଙ୍ଗ ସିଧାସଳଖ ଯୁଦ୍ଧ କରି ଉତ୍କଳ ଅଧିକାର କରିବା ବିଷୟକୁ ବିବରଣୀରେ ସ୍ଥାନ ଦେଇନାହିଁ । କିନ୍ତୁ ଆନ୍ଧ୍ର ଜନଶ୍ରୁତିରେ ବର୍ଣ୍ଣିତ ଚୋଡ଼ଗଙ୍ଗ ନାଟ୍ୟାଭିନୟ ଦ୍ୱାରା ନିଜ ରାଜ୍ୟ କଳିଙ୍ଗକୁ ଦ୍ୱିତୀୟବାର ଅଧିକାର ପ୍ରସଙ୍ଗଟି ମାଦଳାପାଞ୍ଜିରେ ଉତ୍କଳ ଅଧିକାର ପ୍ରସଙ୍ଗରେ ସ୍ଥାନ ପାଇଛି । ଉଭୟ ଘଟଣା ମଧ୍ୟରେ କି ସମ୍ପର୍କ ଥିଲା, ସେ ବିଷୟରେ ବର୍ତ୍ତମାନ ଜ୍ଞାନ ଦୃଷ୍ଟିରୁ କିଛି ସୂଚନା ଦିଆଯାଇ ନ ପାରିଲେ ମଧ୍ୟ ଏକଥା ସ୍ୱୀକାର କରାଯାଇ ପାରେ ଯେ ଉଭୟ ଜନଶ୍ରୁତିରେ ସତ୍ୟର ଧାରା ପ୍ରବାହିତ ଏବଂ ଉଭୟ ଚୋଡ଼ଗଙ୍ଗଙ୍କ ରାଜନୈତିକ ଜୀବନର ଆଦ୍ୟ କାଳର ଦୁଇଟି ସ୍ମରଣୀୟ ଘଟଣାକୁ ଉପସ୍ଥାପନା କରନ୍ତି । ସେହି ଦୁଇଟି ଘଟଣା ଥିଲା;

(୧) ଚୋଡ଼ଗଙ୍ଗଙ୍କ ରାଜତ୍ୱର ପ୍ରାରମ୍ଭରେ ତାଙ୍କ ପ୍ରତିପକ୍ଷ କଳିଙ୍ଗରେ ଗଙ୍ଗ ସିଂହାସନ ଅଧିକାର କରିବାକୁ ଉଦ୍ୟମ କରିଥିଲେ ।

(୨) ଦ୍ୱାଦଶ ଶତାବ୍ଦୀର ପ୍ରଥମ ଦୁଇଟି ଦଶନ୍ଧିରେ ଚୋଡ଼ଗଙ୍ଗଙ୍କର ଉତ୍କଳ ଅଧିକାର ।

ଏ ଦୁଇଟି ଜନଶ୍ରୁତିରେ ଥିବା ତଥ୍ୟର ସତ୍ୟତା ପାଇଁ ଚୋଡ଼ଗଙ୍ଗ ସମ୍ପର୍କିତ ସାହିତ୍ୟିକ ତଥା ଅଭିଲେଖୀୟ ବିବରଣୀର ବିଶ୍ଳେଷଣ ଏକାନ୍ତ ଆବଶ୍ୟକ । ଏହାଦ୍ୱାରା ଜନଶ୍ରୁତିରେ ସ୍ଥାନ ପାଇଥିବା ତଥ୍ୟକୁ ଇତିହାସ ଲେଖାରେ ବିନା ଦ୍ୱିଧାରେ ଅଧିକ ଗୁରୁତ୍ୱ ଦିଆଯାଇପାରିବ ।

ଚୋଡ଼ଗଙ୍ଗ ଖ୍ରୀ: ୧୦୭୦ଠାରୁ ୧୦୭୮ ମଧ୍ୟରେ କଳିଙ୍ଗରେ ଶାସନ କରୁଥିବା ଦେବେନ୍ଦ୍ର ବର୍ମନ ପ୍ରଥମ ରାଜାରାଜଙ୍କର ପ୍ରଥମ ପୁତ୍ର ଥିଲେ । ଶାସନ ଆରମ୍ଭରେ ରାଜାରାଜ ଚୋଡ଼ରାଜାଙ୍କୁ ପରାସ୍ତ କରି ତାଙ୍କ କନ୍ୟା ରାଜସୁନ୍ଦରୀଙ୍କୁ ବିବାହ କରିଥିଲେ (୪) ଏହି ଯୁଦ୍ଧ ଖ୍ରୀ ୧୦୭୦ ଠାରୁ ୧୦୭୨ ମଧ୍ୟରେ ହୋଇଥିଲା ବୋଲି ଅନୁମାନ କରାଯାଇଛି ଏବଂ ସେଥିପାଇଁ ୧୦୭୮ ଖ୍ରୀଷ୍ଟାବ୍ଦରେ ସିଂହାସନ ଅଭିଷିକ୍ତ ହେବା କାଳରେ ସେ ଶିଶୁଥିଲେ ବୋଲି ସିଦ୍ଧାନ୍ତ ନିଆଯାଇଛି (୫) ରାଜତ୍ୱ କରୁଥିବା କାଳରେ ପିତା ମରିଯାଇଥିବାରୁ ଶିଶୁ ଚୋଡ଼ଗଙ୍ଗଙ୍କୁ ସିଂହାସନରେ ଶୀଘ୍ର ଅଭିଷିକ୍ତ କରାଯାଇଥିଲା । ଏହାର କାରଣ ସେତେବେଳେ କଳିଙ୍ଗରେ ଅନ୍ୟ ଏକ ଗଙ୍ଗବଂଶୀ ଶାଖାର ରାଜପୁତ୍ର ଏହି ଗଙ୍ଗ ସିଂହାସନ ପାଇଁ ପ୍ରବଳ ଉଦ୍ୟମ କରିଥିଲେ । କଳିଙ୍ଗରେ ଗଙ୍ଗବଂଶୀ ରାଜ ପଞ୍ଚମ ବଜ୍ରହସ୍ତ ଦେବ (ଖ୍ରୀ: ୧୦୩୮-୧୦୭୦)ଙ୍କ ରାଜତ୍ୱ କାଳରେ ଗଙ୍ଗ ସିଂହାସନ ପାଇଁ ଏହି ଶାଖା ପ୍ରବଳ ଉଦ୍ୟମ ଚଳାଇଥିଲା । ସେହି ବଂଶର ରାଜା ସମ୍ଭବତଃ ଦେବେନ୍ଦ୍ର ବର୍ମନ୍ । ସେ କଳିଙ୍ଗ ରାଜ୍ୟରେ ଖ୍ରୀ: ୧୦୫୯ ଠାରୁ ଦନ୍ତପୁରକୁ ରାଜଧାନୀ କରି ସ୍ୱାଧୀନ ଭାବରେ ଶାସନ କରିଥିଲେ । (୬)

ଦେବେନ୍ଦ୍ର ବର୍ମନ୍ଙ୍କର ମହେନ୍ଦ୍ରଗିରି ସନ୍ନିକଟ ଅଞ୍ଚଳ ଉପରେ ପ୍ରତ୍ୟକ୍ଷ କର୍ତ୍ତୃତ୍ୱ ଥିଲା । ଶକାବ୍ଦ ୧୦୦୩ (ଖ୍ରୀ: ୧୦୮୧)ର କାୟକାୟ ତାମ୍ରଫଳକରୁ ଜଣାଯାଏ ଯେ ପଞ୍ଚପାତ୍ର ବିଷୟ ବା ପଞ୍ଚ ବିଷୟ (ଏକ ଜିଲ୍ଲାର ନାମ) କଦମ୍ବବଂଶୀ ରାଜାମାନଙ୍କ ଅଧୀନରେ ଥିଲା ଏବଂ ସେମାନେ ଏହି ଦନ୍ତପୁରରେ ଶାସନ କରୁଥିବା ଗଙ୍ଗବଂଶ ଅଧୀନରେ ଥିଲେ । (୭) ପଞ୍ଚ ବିଷୟକୁ ଐତିହାସିକମାନେ ବର୍ତ୍ତମାନ ଗଞ୍ଜାମର ପାରଳାଖେମୁଣ୍ଡି ନିକଟବର୍ତ୍ତୀ ଅଞ୍ଚଳ ସହିତ ଚିହ୍ନିତ କରିଛନ୍ତି ଏବଂ ଏହା ମଧ୍ୟ ମହେନ୍ଦ୍ରଗିରି ଅଞ୍ଚଳ ଠାରୁ ବହୁ ଦୂରରେ ଅବସ୍ଥିତ । (୮) ଯେତେ ଦୂର ଅନୁମାନ କରାଯାଏ, ଗଙ୍ଗବଂଶୀ ଶାଖାର ରାଜା ଦେବେନ୍ଦ୍ର ବର୍ମନ୍ଙ୍କର ଅଧୀନରେ କଳିଙ୍ଗର ଏହି ଉତ୍ତର ଅଂଶଟି ରହିଥିଲା (ଯେଉଁଥିରେ ମହେନ୍ଦ୍ରଗିରି ଅଞ୍ଚଳ ଅନ୍ତର୍ଗତ) । ଖ୍ରୀଷ୍ଟାବ୍ଦ ୧୦୪୫ (ଶକାବ୍ଦ ୯୬୭)ରେ ଦନ୍ତପୁର ପଞ୍ଚମ ବଜ୍ରହସ୍ତଙ୍କ ଅଧୀନରେ ଥିଲା; କିନ୍ତୁ ଦେବେନ୍ଦ୍ର ବର୍ମନ୍ (ଗଙ୍ଗବଂଶ ଶାଖାର ରାଜା) କଦମ୍ବବଂଶୀ ଶାଖାର ସାମନ୍ତ ରାଜା ଭୀମଖେଡ଼ିଙ୍କ ସାହାଯ୍ୟରେ ଶକାବ୍ଦ ୯୮୮ (ଖ୍ରୀ: ୧୦୬୬) ପୂର୍ବରୁ ଏହାକୁ ଅଧିକାର କରିଥିଲେ । (୯) ଦେବେନ୍ଦ୍ର ବର୍ମନ୍ ରାଜାରାଜ ପ୍ରଥମ (ଖ୍ରୀ: ୧୦୭୦-୧୦୭୮)ଙ୍କ ରାଜତ୍ୱ କାଳରେ ଏହି ଦେବେନ୍ଦ୍ର ବର୍ମନ୍ ପ୍ରବଳ ଭାବରେ ପରାଜୟ ବରଣ କରିଥିଲେ; କାରଣ

ଗଙ୍ଗବଂଶୀ ସେନାପତି ବଣପତି ପାରଳାଖେମୁଣ୍ଡି ଅଞ୍ଚଳକୁ ଅଧିକାର କରିଥିଲେ ଏହି ପ୍ରତିପକ୍ଷ ରାଜାଙ୍କଠାରୁ । ଏହା ତାଙ୍କର ଦୀର୍ଘସି ଶିଳାଲେଖ (ଖ୍ରୀ: ୧୦୭୫)ରୁ ଜଣାପଡ଼େ । (୧୦) ସେଥିପାଇଁ ଗଙ୍ଗ ସମ୍ରାଟ ପ୍ରଥମ ରାଜରାଜଙ୍କ ମୃତ୍ୟୁ ପରେ ଦେବେନ୍ଦ୍ର ବର୍ମନ୍ କଳିଙ୍ଗ ରାଜ୍ୟପ୍ରତି ଏକ ଭୟଙ୍କର ବିପଦ ରୂପେ ଦେଖାଦେଲେ । ସେ ନିଜକୁ ସ୍ୱାଧୀନ ବୋଲି ଘୋଷଣାକଲେ । କଳିଙ୍ଗ ସମ୍ରାଟ ବୋଲି ଦାବୀ କଲେ ଏବଂ କଳିଙ୍ଗରେ ନବ ଅଭିଷିକ୍ତ ରାଜା ଚୋଡ଼ଗଙ୍ଗଙ୍କ ଶାସନକୁ ଗ୍ରହଣ କରି ନଥିଲେ । (୧୧) ଏହି କାଳରେ ଉତ୍କଳର ସୋମବଂଶୀ ସମ୍ରାଟ (ଦ୍ୱିତୀୟ ଜନ୍ମେଜୟ ବା ପୁରଞ୍ଜୟ) ଦେବେନ୍ଦ୍ର ବର୍ମନ୍‌ଙ୍କୁ ସାହାଯ୍ୟ କରି ଥାଇପାରନ୍ତି; କାରଣ ଗଙ୍ଗ ନରପତି ପ୍ରଥମ ରାଜାରାଜ ମଧ୍ୟ ତାଙ୍କ ରାଜତ୍ୱ କାଳରେ ଉତ୍କଳ ସମ୍ରାଟଙ୍କୁ ପରାସ୍ତ କରିଥିଲେ । (୧୨) ଗଙ୍ଗବଂଶୀ ସମ୍ରାଟ ପ୍ରଥମ ରାଜରାଜଙ୍କର ଉତ୍କଳ ବିଜୟ ଉପରେ ପ୍ରତିଶୋଧ ନେବା ଉତ୍କଳ ରାଜାଙ୍କର ଦେବେନ୍ଦ୍ର ବର୍ମନ୍‌ଙ୍କୁ କଳିଙ୍ଗ ସିଂହାସନ ଅଧିକାର ପାଇଁ ସାହାଯ୍ୟ କରିବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଉଭୟ ଦେବେନ୍ଦ୍ର ବର୍ମନ୍‌ଙ୍କର ଏବଂ ଉତ୍କଳ ରାଜାଙ୍କର ସୈନ୍ୟ ବାହିନୀ କଳିଙ୍ଗର ଗଙ୍ଗ ସୈନ୍ୟବାହିନୀକୁ ଏକ ଯୁଦ୍ଧରେ ପରାସ୍ତ କରିଥିଲେ । ତେଣୁ ଦେବେନ୍ଦ୍ର ବର୍ମନ୍‌ଙ୍କର ଏବଂ ଉତ୍କଳ ରାଜାଙ୍କର ସୈନ୍ୟ ବାହିନୀ କଳିଙ୍ଗର ଗଙ୍ଗ ସୈନ୍ୟ ବାହିନୀକୁ ଏକ ଯୁଦ୍ଧରେ ପରାସ୍ତ କରିଥିଲେ । ତେଣୁ ଦେବେନ୍ଦ୍ର ବର୍ମନ୍ ଶକାବ୍ଦ ୧୦୦୩ (ଖ୍ରୀ: ୧୦୮୧)ର ଏକ ତାମ୍ର ଲେଖରେ ନିଜକୁ କଳିଙ୍ଗର ସମ୍ରାଟ ବୋଲି ଘୋଷଣା କଲେ । (୧୩) ଏହି କାଳରେ କଳିଙ୍ଗ ଓ ଉତ୍କଳ ମଧ୍ୟରେ ସଂଘର୍ଷପୂର୍ଣ୍ଣ ସମ୍ପର୍କର ଏକ ପରୋକ୍ଷ ସୂଚନା ସୋମବଂଶୀ ସମ୍ରାଟ କର୍ଣ୍ଣଦେବଙ୍କର ରତ୍ନଗିରି ଠାରୁ ପ୍ରାପ୍ତ ତାମ୍ରଲେଖରୁ ସଂଗ୍ରହ କରାଯାଇ ପାରେ । (୧୪) ଉତ୍କଳ ସମ୍ରାଟ ଦେବେନ୍ଦ୍ର ବର୍ମନ୍‌ଙ୍କୁ କଳିଙ୍ଗ ସିଂହାସନ ଅଧିକାର କରିବା ପାଇଁ ସକ୍ରିୟ ସମର୍ଥନ କରିଥିବାରୁ ପରେ ପରେ କଳିଙ୍ଗର ନବ ସମ୍ରାଟ ଗଙ୍ଗବଂଶୀ ଚୋଡ଼ଗଙ୍ଗଙ୍କର ସୁରକ୍ଷା ପାଇଁ ପ୍ରଖ୍ୟାତ ଚୋଳ ସମ୍ରାଟ କୁଲୋତୁଙ୍ଗ (ପ୍ରଥମ) କଳିଙ୍ଗ ଆକ୍ରମଣ କରିଥିଲେ ଏବଂ ତାଙ୍କର ସେନାପତି ଉତ୍କଳ (ଓଡ୍ର)ର ସୀମା ପର୍ଯ୍ୟନ୍ତ ସାମରିକ ଅଭିଯାନରୁ ଅନୁମାନ ହୁଏ ଯେ, ଏକଦା ଗଙ୍ଗ ସିଂହାସନ ପାଇଁ ଉଦ୍ୟମ କରିଥିବା ଗଙ୍ଗ ବଂଶୀ ଶାଖା ର ରାଜା ଦେବେନ୍ଦ୍ର ବର୍ମନଙ୍କୁ ଉତ୍କଳ ସମ୍ରାଟ ସକ୍ରିୟ ସାହାଯ୍ୟ କରିଥିଲେ ।

କଳିଙ୍ଗର ଶିଶୁରାଜା ଚୋଡଗଙ୍ଗଙ୍କ ଅଧୀନରେ ଥିବା ଗଙ୍ଗ ସୈନ୍ୟ ବାହିନୀର ଦେବେନ୍ଦ୍ର ବର୍ମନଙ୍କ ଦ୍ୱାରା ପ୍ରାରମ୍ଭିକ ପରାଜୟ ଏବଂ ଦେବେନ୍ଦ୍ର ବର୍ମନଙ୍କୁ ଉତ୍କଳ ରାଜା

କଳିଙ୍ଗ ସିଂହାସନ ପାଇଁ ସକ୍ରିୟ ସହଯୋଗ ଆନ୍ଧ୍ର ଜନଶ୍ରୁତିର ଏକ ଅଂଶ ବିଶେଷ ଏବଂ ଏହି ଜନଶ୍ରୁତି ସହିତ ଜଡ଼ିତ ହୋଇଛି ଚିରବନ୍ଦିତ ଆନ୍ଧ୍ର କବି ଭୀମକବିଙ୍କର ଅଲୌକିକ ଗାଥା । ଏଣୁ କଥିତ ଜନଶ୍ରୁତିରେ ଥିବା ଚୋଡ଼ଗଙ୍ଗ ରାଜତ୍ୱର ଆଦ୍ୟ କାଳର ଏହି ଘଟଣାକୁ ଐତିହାସିକ ମାନେ ଅସ୍ୱୀକାର କରିପାରିବେ ନାହିଁ । କିନ୍ତୁ କଳିଙ୍ଗ ନଗରରେ ଗଙ୍ଗ ସିଂହାସନକୁ ନାଟ୍ୟାଭିନୟ ଦ୍ୱାରା ଚୋଡ଼ଗଙ୍ଗଦେବ ପୁନର୍ବାର ଅଧିକାର କରିବା କଥାଟି ପ୍ରଥମେ ଘଟିନଥିଲା ବୋଲି ଅନୁମାନ କରାଯାଇପାରେ ।

ଚୋଡ଼ଗଙ୍ଗ ନାଟ ବେଶରେ ବା ନାଟ୍ୟାଭିନୟ ଦ୍ୱାରା ଉତ୍କଳ ଅଧିକାରକରିବା ପରେ ଏହା ଏତେ ଦ୍ରୁତ ଗତିରେ ପ୍ରଚାରିତ ହୋଇଗଲା ଯେ, ଏହିପରି ଘଟଣାଟି ଚୋଡ଼ଗଙ୍ଗଙ୍କ କଳିଙ୍ଗରେ ରାଜତ୍ୱ ଆରମ୍ଭ କାଳରେ ଦେବେନ୍ଦ୍ର ବର୍ମନଙ୍କ ଦ୍ୱାରା ପ୍ରାରମ୍ଭିକ ପରାଜୟ ଘଟଣା ସହିତ ଯୋଡ଼ି ଦିଆଗଲା ଏବଂ ଆନ୍ଧ୍ର ଜନଶ୍ରୁତିର ଜନ୍ମ ଘଟିଲା । ବାସ୍ତବରେ ଚୋଡ଼ଗଙ୍ଗ ଚାଲୁକ୍ୟ ଚୋଳ ସୈନ୍ୟବାହିନୀ ଦ୍ୱାରା କଳିଙ୍ଗରେ ତାଙ୍କ ପ୍ରତିପକ୍ଷ ଦେବେନ୍ଦ୍ର ବର୍ମନଙ୍କୁ ଶୋଚନୀୟ ଭାବରେ ପରାସ୍ତ କରିଥିଲେ ଏବଂ କଳିଙ୍ଗରେ ନିଜର କ୍ଷମତା ସମ୍ପ୍ରସାରିତ କରିଥିଲେ । ଏହା କଳିଙ୍ଗ ଅଭିଲେଖମାଳା ଏବଂ ଚୋଳ ଅଭିଲେଖୀୟ ବିବରଣୀରେ ସ୍ଥାନ ପାଇଛି । (୧୬) କିନ୍ତୁ ଏହି ଘଟଣାର ଅନେକ ବର୍ଷ ପରେ ଚୋଡ଼ଗଙ୍ଗ ସକ୍ରିୟ ରାଜକାର୍ଯ୍ୟ କରିବା ପରେ ସେ କୌଶଳ ଅବଲମ୍ବନ କରି ନାଟ୍ୟାଭିନୟ ଦ୍ୱାରା ଉତ୍କଳ ସିଂହାସନ ଅଧିକାର କରିଥିଲେ, ତାହା ସମଗ୍ର ଗଙ୍ଗ ରାଜ୍ୟ କଳିଙ୍ଗରେ ସଂଗେ ସଂଗେ ପ୍ରଚାରିତ ହୋଇଗଲା । କିନ୍ତୁ ଆନ୍ଧ୍ରର ଜନରବରେ ଉତ୍କଳ ଅଧିକାର କରିଥିବା ଚୋଡ଼ଗଙ୍ଗଙ୍କର କୌଶଳଟି (ନାଟ୍ୟାଭିନୟ ଦ୍ୱାରା ସିଂହାସନ ଅଧିକାର) ତାଙ୍କ ରାଜକୀୟ ଜୀବନର ଘଟଣା (ଅର୍ଥାତ୍) ଦେବେନ୍ଦ୍ର ବର୍ମନଙ୍କ ଦ୍ୱାରା ପରାସ୍ତ ହେବା ଏବଂ ପୁନଶ୍ଚ ଚୋଳରାଜା କୁଳୋତୁଙ୍ଗଙ୍କ ସାହାଯ୍ୟରେ ଶତ୍ରୁକୁ ନିପାତ କରି କ୍ଷମତା ବିସ୍ତାର କରିବା) ସହିତ ମିଶିଗଲା ଏବଂ ଭିନ୍ନ ଜନଶ୍ରୁତି ହୋଇ ରହିଗଲା ।

ଚୋଡ଼ଗଙ୍ଗ କେବଳ ନିଜ ରାଜ୍ୟ କଳିଙ୍ଗରେ ପ୍ରତିପକ୍ଷକୁ ପରାସ୍ତ କରି ନଥିଲେ, ଉତ୍କଳର ସୋମବଂଶୀ ସମ୍ରାଟଙ୍କୁ ପରାସ୍ତ କରିବାରେ ସଫଳ ହୋଇଥିଲେ । ଆନ୍ଧ୍ର ଜନଶ୍ରୁତି ଅନୁସାରେ ଉତ୍କଳ ସୋମବଂଶୀ ସମ୍ରାଟ ତାଙ୍କର ବୃହତ୍ ଶତ୍ରୁ ହିସାବରେ ମୁଣ୍ଡ ଟେକି ଉଠିଥିଲେ । ଦ୍ୱାଦଶ ଶତାବ୍ଦୀର ପ୍ରଥମ ପର୍ଯ୍ୟାୟରେ ଚୋଡ଼ଗଙ୍ଗଙ୍କର ଉତ୍କଳ ଅଭିଯାନ ବିଭିନ୍ନ କାଳରେ ହୋଇଥିଲା । ପ୍ରଥମେ ଖ୍ରୀଷ୍ଟାବ୍ଦ ୧୦୯୬ ପରେ ଏବଂ

ଖ୍ରୀଷ୍ଟାବ୍ଦ ୧୧୦୮ ପୂର୍ବରୁ ସେ ଉତ୍କଳରେ ପରାଜିତ ସମ୍ରାଟଙ୍କୁ ପୁନର୍ବାର ସିଂହାସନରେ ବସାଇ ଥିଲେ । (୧୭)

ଚୋଡ଼ଗଙ୍ଗ ଜଣେ ଚତୁର/କୌଶଳୀ ସମ୍ରାଟ ଥିଲେ । ଶତ୍ରୁଦ୍ୱାରା ପରାଜିତ ହୋଇଥିବା ଉତ୍କଳ ସମ୍ରାଟଙ୍କ ପ୍ରତି ସେ ପ୍ରଥମେ ସହାନୁଭୂତିଶୀଳ ହୋଇଗଲେ । ଉତ୍କଳରେ ପରାଜିତ ସମ୍ରାଟଙ୍କୁ ପୁନର୍ବାର ପରାସ୍ତ କରିବା ଅପେକ୍ଷା ତାଙ୍କୁ ସିଂହାସନରେ ପୁନର୍ବାର ସଂସ୍ଥାପନ କରିବାକୁ ଚୋଡ଼ଗଙ୍ଗ ନିଜର କୀର୍ତ୍ତି/ଗୌରବମୟ କାର୍ଯ୍ୟ ବୋଲି ମନେ କରିଥିବେ । ସହାନୁଭୂତିଶୀଳ ହୋଇ ଏବଂ ରାଜନୈତିକ ଦୃଷ୍ଟିକୋଣରୁ ସେ ପୁରଞ୍ଜୟ (ଉତ୍କଳର ସୋମବଂଶୀ ସମ୍ରାଟ)ଙ୍କୁ ସିଂହାସନରେ ପୁନର୍ବାର ସଂସ୍ଥାପନ କଲେ । (୧୮) ଏହି ପ୍ରସଙ୍ଗଟି ଚୋଡ଼ଗଙ୍ଗଙ୍କ ଦ୍ୱାରା ୧୧୦୮ ଖ୍ରୀଷ୍ଟାବ୍ଦ ଠାରୁ ପ୍ରଦତ୍ତ ସମସ୍ତ ତାମ୍ର ଫଳକରେ ବର୍ଣ୍ଣିତ ଏବଂ ଏହା ଜନଶ୍ରୁତିର ବିଷୟ ହୋଇନାହିଁ । କିନ୍ତୁ ସିଂହାସନ ପୁନର୍ବାର ଗ୍ରହଣ ପରବର୍ତ୍ତୀ ଘଟଣା ଏପରି କୌତୁହଳପୂର୍ଣ୍ଣ ହୋଇଯାଇଥିଲା ଯେ ଯୁଗଯୁଗ ପାଇଁ ଏହାକୁ ଜନରବ ଘୋଷି ଚାଲିଲା । (୧୯) ଉତ୍କଳ ସମ୍ରାଟ ଚୋଡ଼ଗଙ୍ଗଙ୍କ ଦ୍ୱାରା ପୁନର୍ବାର ସିଂହସନରେ ସଂସ୍ଥାପିତ ହେବାର ଅନ୍ତତଃ ଦୁଇବର୍ଷ ମଧ୍ୟରେ ତାଙ୍କର ଭ୍ରାତା କର୍ଣ୍ଣଦେବ ଉତ୍କଳର ରାଜା ହେଲେ । ମାଦଳାପାଞ୍ଜିର ରାଜ ଚରିତରେ ସିଦ୍ଧ କଳ୍ପକେଶରୀ ଶେଷ ସମ୍ରାଟ ରୂପେ ବର୍ଣ୍ଣିତ । (୨୦) ସମ୍ଭବତଃ ସିଦ୍ଧକଳ୍ପ କର୍ଣ୍ଣଦେବଙ୍କର ଅନ୍ୟ ନାମ କିମ୍ବା ଏକ ରାଜକୀୟ ଉପାଧି । ତାଙ୍କୁ ଉତ୍କଳର କେତେକ ସାମନ୍ତରାଜା ସମର୍ଥନ କରୁଥିଲେ । ଉତ୍କଳ ରାଜ୍ୟର ଏକ ଅଂଶ (ଯହିଁରେ ଥିଲା ପ୍ରାଚୀ ଅଞ୍ଚଳ ଏବଂ ଭୁବନେଶ୍ୱର-ପୁରୀ) କର୍ଣ୍ଣଦେବଙ୍କର ପ୍ରତ୍ୟକ୍ଷ କ୍ଷମତା ବାହାରେ ଥିଲା ।(୨୧) କର୍ଣ୍ଣଦେବ ପରମ ମାହେଶ୍ୱର ବୋଲି ନିଜର ତାମ୍ର ଫଳକରେ ପ୍ରକାଶ କରିଥିଲେ ମଧ୍ୟ ଉତ୍କଳ ସାମ୍ରାଜ୍ୟର ପ୍ରସିଦ୍ଧ ଶୈବପୀଠର ମୁଖ୍ୟ ଦେବତା ଲିଙ୍ଗରାଜଙ୍କୁ ପ୍ରାୟତଃ ପୃଷ୍ଠପୋଷକତା କରୁନଥିଲେ । (୨୨) କର୍ଣ୍ଣଦେବ ଶିବ-ଲିଙ୍ଗରାଜଙ୍କ ପ୍ରତି ବିମୁଖ ହୋଇଯିବାର ଲକ୍ଷ୍ୟ କରି ଭୁବନେଶ୍ୱର ଶୈବମାନେ ତାଙ୍କ ପ୍ରତି ସମର୍ଥନ ଦେଖାଇ ନଥିଲେ ଏବଂ ସମ୍ଭବତଃ ରାଜବଂଶର ପତନ ପାଇଁ ଚିନ୍ତା କରିଥିଲେ । ସେମାନେ ଚୋଡ଼ଗଙ୍ଗଙ୍କର ପ୍ରଥମବାର ଉତ୍କଳ ଅଭିଯାନ ସମ୍ପର୍କରେ ସଚେତନ ଥିଲେ ଏବଂ ସେଥିପାଇଁ ସେମାନେ ସେହି ଚୋଡ଼ଗଙ୍ଗଙ୍କ ସାହାଯ୍ୟରେ ସୋମବଂଶୀ-କେଶରୀ ଶାସନ ଉତ୍କଳରେ ଅବସାନ କରିବାକୁ ଉଦ୍ୟମ କରିଥିଲେ ।

ଭୁବନେଶ୍ୱରର ଶୈବମାନେ ମଧ୍ୟ ଚୋଡ଼ଗଙ୍ଗ ଶୈବ ଥିବାର ଏବଂ

ଗୋକର୍ଣ୍ଣେଶ୍ୱର ମଧୁକେଶ୍ୱରଙ୍କର ପ୍ରବଳ ପୃଷ୍ଠପୋଷକ ଥିବାର କଥା ସ୍ମରଣ କରି ତାଙ୍କୁ ଉତ୍କଳରେ ସମ୍ରାଟ କରାଇଦେଲେ ଶିବ-ଲିଙ୍ଗରାଜ ଅଧିକ ପୃଷ୍ଠପୋଷକତା ଲାଭ କରିବେ ଏବଂ ଓଡ଼ିଶାର ଧର୍ମ ଓ ରାଜନୀତିରେ ଶିବ ଲିଙ୍ଗରାଜଙ୍କ ପ୍ରାଧାନ୍ୟ ବଢ଼ି ବଢ଼ି ଚାଲିବ ବୋଲି ଚିନ୍ତା କରିଥିବେ । (୨୩) ପ୍ରାଚୀ କୁଶଭଦ୍ରା ତଥା ଭୁବନେଶ୍ୱର ଅଞ୍ଚଳର ସାମନ୍ତମାନେ ମଧ ଏହି ଶୈବମାନଙ୍କୁ ଓଡ଼ିଶାରେ ଗଙ୍ଗଶାସନ ଦ୍ୱାରା ଅଧିକ ସୁବିଧା ପାଇବେ କିମ୍ୱା ସେମାନଙ୍କର ଅନ୍ୟ ସ୍ୱାର୍ଥ ସାଧନ ହେବ (ଯାହା ସୋମବଂଶୀ ଶାସନ କାଳରେ ସମ୍ଭବ ହୋଇନଥିଲା) ବୋଲି ସମର୍ଥନ କରିଥିବେ ।

କଳିଙ୍ଗ ଏବଂ ଆନ୍ଧ୍ରର ରାଜନୈତିକ ପରିବେଶ ଚୋଡ଼ଗଙ୍ଗଙ୍କୁ ଉତ୍କଳ ଆଡ଼କୁ ଦୃଷ୍ଟିଦେବାକୁ ବାଧ କରିଥିଲା । ଖ୍ରୀଷ୍ଟାବ୍ଦ ୧୧୧୦ରେ ଚୋଡ଼ଗଙ୍ଗଙ୍କର ବେଙ୍ଗୀ ରାଜ୍ୟରେ କ୍ଷମତା ବିସ୍ତାର ଚୋଡ଼ ସମ୍ରାଟ ପ୍ରଥମ କୁଲୋତୁଙ୍ଗ ଗ୍ରହଣ କରିପାରିନଥିଲେ ଏବଂ ସେହି କ୍ଷମତାର ହ୍ରାସ ପାଇଁ ସେ ତାଙ୍କର ପ୍ରଖ୍ୟାତ ସେନାପତି ଜୟଗୋଣ୍ଡ ଚୋଡ଼ଙ୍କୁ ସୈନ୍ୟବାହିନୀ ସହିତ କଳିଙ୍ଗ ଆମନ୍ତ୍ରଣ କରିବାକୁ ପଠାଇଥିଲେ । (୨୪) ଚୋଡ଼ଗଙ୍ଗ ପ୍ରଥମେ ଏହି ସେନାପତିଙ୍କୁ ଶୋଚନୀୟ ପରାସ୍ତ କରିଥିଲେ । ଏପରିକି ଯୁଦ୍ଧଭୂମିରେ ହତ୍ୟା କରିଥିଲେ । ପରାଜିତ ଚୋଡ଼ ନୃପତି ପ୍ରଥମ କୁଲୋତୁଙ୍ଗ ବାଧହୋଇ ଏକ ଚୋଡ଼ ରାଜକନ୍ୟାକୁ ଚୋଡ଼ଗଙ୍ଗଙ୍କ ସହିତ ବିବାହ କରାଇ ଦେଇ ସନ୍ଧି କରିଥିଲେ । ପରେ ଚୋଡ଼ଗଙ୍ଗ ଏହି ଅସାଧାରଣ ବିଜୟକୁ ଚିରଦିନ ସ୍ମରଣରେ ରଖିବାକୁ ତାଙ୍କ ରାଣୀ ଚୋଡ଼ ରାଜକନ୍ୟାର ନାମ୍ ଜୟଗୋଣ୍ଡ ଚୋଡ଼ ଦେବୀ ବୋଲି ପ୍ରଚାର କରିଥିଲେ । (୨୫) କୁଲୋତୁଙ୍ଗଙ୍କର ଚୋଡ଼ଗଙ୍ଗଙ୍କ ସହିତ ସନ୍ଧି ହେବା ଦ୍ୱାରା ଚୋଡ଼ଗଙ୍ଗ ଆଉ ବେଙ୍ଗୀ ଆଡ଼କୁ ତାଙ୍କ ରାଜ୍ୟର ସୀମା ବଢାଇବାକୁ ଇଚ୍ଛାକଲେ ନାହିଁ । ଅନ୍ୟପକ୍ଷରେ ସେ ପୁଣି ଉତ୍କଳ ଆଡ଼କୁ ମାଡ଼ି ଚାଲିଲେ । ବେଙ୍ଗୀ ରାଜ୍ୟ ପୂର୍ବପରି ଚୋଡ଼ ରାଜ୍ୟର ଅଂଶ ହୋଇ ରହିଲା । ସେହି କାଳରେ ଚୋଡ଼ଗଙ୍ଗଙ୍କୁ ଉତ୍କଳର ରାଜନୈତିକ ଅବସ୍ଥା ଜଣାଇ ଦିଆଯାଇଥିବା ଅନୁମାନ କରାଯାଇପାରେ । ଅବଶ୍ୟ ଉତ୍କଳରେ କର୍ଣ୍ଣଦେବଙ୍କର ସିଂହାସନାରୋହଣ ସମ୍ପର୍କରେ ପ୍ରଥମ ଉତ୍କଳ ଅଭିଯାନ ପରେ ଉତ୍କଳରୁ ପ୍ରସ୍ଥାନ କାଳରେ ସେ ସଚେତନ ହୋଇଥିଲେ । ସେଥିପାଇଁ ସେ ତାଙ୍କର ୧୧୦୮ ଖ୍ରୀଷ୍ଟାବ୍ଦର ତାମ୍ରଫଳକରେ ପୂର୍ବ ପରାଜିତ ଉତ୍କଳପତିଙ୍କୁ ସିଂହାସନରେ ବସାଇଥିଲେ ବୋଲି ପ୍ରକାଶ କରାଇଥିଲେ । ଏହାର ଅନେକ ବର୍ଷ ପରେ କୁଲୋତୁଙ୍ଗଙ୍କ ସହିତ ସନ୍ଧି ସ୍ଥାପନ ପରେ (୧୧୧୦ ଖ୍ରୀଷ୍ଟାବ୍ଦ ପରେ) ସେ ଉତ୍କଳ ବିଜୟ କରିବାକୁ

ସ୍ଥିର କଲେ । ଏହାଦ୍ୱାରା ସେ କଳିଙ୍ଗ ଉତ୍କଳ ସାମ୍ରାଜ୍ୟର ସାର୍ବଭୌମ ଶାସକ ହୋଇରହିବେ । ଅନୁମାନ କରାଯାଇପାରେ ଯେ ଚୋଡ଼ଗଙ୍ଗ ପ୍ରଥମେ ତାଙ୍କ ସୈନ୍ୟବାହିନୀ ସହିତ ଉତ୍କଳ ରାଜ୍ୟରେ ପ୍ରବେଶ କରି ସାରଙ୍ଗଗଡ଼ ଅଞ୍ଚଳରେ ଗୋପନରେ ରହିଲେ । ମାଦଳାପାଞ୍ଜି ଅନୁସାରେ ଏହି ସାରଙ୍ଗଗଡ଼ ଜଣେ କେଶରୀ ସମ୍ରାଟଙ୍କ ଦ୍ୱାରା ନିର୍ମିତ ହୋଇଥିଲା । (୨୭) ସୋମବଂଶୀ ରାଜବଂଶର ଜଣେ ସାମନ୍ତରାଜା ଏଠାରେ ଶାସନ କରୁଥିବାରୁ ସମ୍ଭବତଃ ସ୍ଥାନଟି ପରେ ତାଙ୍କ ନାମରେ ସାରଙ୍ଗଗଡ଼ ହୋଇଗଲା । (୨୮) ସେ ଯାହା ହେଉନା କାହିଁକି, ଚୋଡ଼ଗଙ୍ଗଙ୍କ ରାଜତ୍ୱ ପୂର୍ବରୁ ଏହି ସ୍ଥାନଟି ସୋମବଂଶୀ ଶାସନ ଅନ୍ତର୍ଗତ ଥିଲା । ଚୋଡ଼ଗଙ୍ଗ ଭୁବନେଶ୍ୱର ଶୈବମାନଙ୍କର ଏବଂ ଭୁବନେଶ୍ୱର ଅଞ୍ଚଳର ସାମନ୍ତରାଜଙ୍କ ସକ୍ରିୟ ସହଯୋଗ ଲାଭ କରି ସୋମବଂଶୀ ସମ୍ରାଟ କର୍ଣ୍ଣଦେବଙ୍କର ରାଜଧାନୀ ଯଯାତିନଗର ଅଭିମୁଖେ ଯୁଦ୍ଧଯାତ୍ରା କରିଥିଲେ । ପ୍ରଥମେ ସମ୍ଭବତଃ ଚୋଡ଼ଗଙ୍ଗ କର୍ଣ୍ଣଦେବଙ୍କର ରାଜଦରବାରକୁ ନାଟବେଶରେ ବା ନାଟ୍ୟାଭିନୟ ପ୍ରଦର୍ଶନ ଆଳରେ ପ୍ରବେଶ କରିଥିଲେ ଯେପରି ପୂର୍ବାଲୋଚିତ ଆନ୍ଧ୍ର ଜନଶ୍ରୁତିରେ ଦେଖାଇ ଦିଆଯାଇଛି । ଛଦ୍ମବେଶରେ ଚୋଡ଼ଗଙ୍ଗ ତାଙ୍କ ଦଳ ସହିତ ପ୍ରବେଶ କରି ପ୍ରଥମେ ଚୋଡ଼ଗଙ୍ଗ କିପରି ଉତ୍କଳରାଜାଙ୍କୁ ସିଂହାସନ ଫେରାଇଥିଲେ ତାହାକୁ ଅଭିନୟ କରିବାକୁ ପ୍ରସ୍ତୁତ ହୋଇ ତାହା କରିଥିବେ । ଏହି ଅଭିନୟ ରାତ୍ରିରେ ହୋଇଥିବ । ଏହାର ସତ୍ୟତାକୁ ଅସ୍ୱୀକାର କରାଯାଇପାରିବ ନାହିଁ; କାରଣ ଚୋଡ଼ଗଙ୍ଗ ନାଟବେଶରେ ଆସି କଟକ (ସୋମବଂଶୀ ରାଜ୍ୟ) ଅଧିକାର କରିଥିବା ସମ୍ବାଦ ବହନ କରିଥିବା ଜନଶ୍ରୁତି କେବଳ ମାଦଳା ପାଞ୍ଜିର ରାଜଚରିତରେ ବର୍ଣ୍ଣିତ ହୋଇନାହିଁ, ଏହା ମଧ୍ୟ ଚୋଡ଼ଗଙ୍ଗଙ୍କର ସମସାମୟିକ ବଂଗ ନରପତି ରାମପାଳଙ୍କ ସଭାକବି ସନ୍ଧ୍ୟାକର ନନ୍ଦୀଙ୍କ ରଚିତ ରାମଚରିତରେ ବର୍ଣ୍ଣିତ ହୋଇଛି । (୨୯) ରାମଚରିତ ଏହି ଜନରବ ଭିନ୍ନ ଭାବରେ ଉପସ୍ଥାପନ କରିଛି । ଏଥିରେ ବର୍ଣ୍ଣିତ ହୋଇଛି ଯେ ଦଣ୍ଡଭୁକ୍ତି ରାଜା ଜୟସିଂହ (ରାମପାଳଙ୍କର ସାମନ୍ତ ରାଜା) ଉତ୍କଳେଶ କର୍ଣ୍ଣକେଶରୀଙ୍କୁ କଳିଙ୍ଗାଗତ ନିଶାଚର ମାନଙ୍କ କବଳରୁ ଉଦ୍ଧାର କରିଥିଲେ । (୩୦) କଳିଙ୍ଗରୁ ଆସିଥିବା ଏବଂ କର୍ଣ୍ଣକେଶରୀଙ୍କୁ ଆକ୍ରମଣ କରିଥିବା ଏହି ନିଶାଚର ଦଳ ସମ୍ଭବତଃ ଚୋଡ଼ଗଙ୍ଗ ଏବଂ ତାଙ୍କର ଦଳ ଛଦ୍ମବେଶରେ ନାଟ୍ୟାଭିନୟ ପ୍ରଦର୍ଶନ କରିବା ଆଳରେ କର୍ଣ୍ଣକେଶରୀଙ୍କ ରାଜ ଦରବାରରେ ପ୍ରବେଶ କରିବା ପ୍ରସଙ୍ଗକୁ ବୁଝାଇଥାଏ । (୩୧) ଜନଶ୍ରୁତିର ବିଭିନ୍ନ ଭାଗକୁ ବିଶ୍ଳେଷଣ କରି ଆମ୍ଭେ ଏହି ସିଦ୍ଧାନ୍ତରେ ଉପନୀତ

ହେବା ଯେ ଚୋଡ଼ଗଙ୍ଗ କର୍ଣ୍ଣକେଶରୀଙ୍କ ଶତ୍ରୁମାନଙ୍କ ସହିତ ହାତ ମିଳାଇ ଏବଂ ଭୁବନେଶ୍ୱରର ଶୈବମାନଙ୍କର ସହଯୋଗ ଲାଭକରି ନାଟବେଶରେ ଯଯାତିନଗରରେ ପ୍ରବେଶ କରି ସୋମବଂଶୀ ସିଂହାସନକୁ ବଳାତ୍କାରରେ ଛଡ଼ାଇନେଲେ ଏବଂ ସେହି ଅସହାୟବେଳେ **ସମ୍ଭବତଃ** ପାଳରାଜାଙ୍କ ସାମନ୍ତରାଜା ଦଣ୍ଡଭୁକ୍ତିପତି ଜୟସିଂହ ଯଯାତିନଗରରେ ପ୍ରବେଶ କରି କର୍ଣ୍ଣକେଶରୀଙ୍କୁ ଉଦ୍ଧାର କରିଥିଲେ ଯାହା ରାମଚରିତରେ ବର୍ଣ୍ଣିତ ହୋଇଛି । (୩୨) ଏହା ନ ହୋଇଥିଲେ କର୍ଣ୍ଣକେଶରୀ ସମ୍ପୂର୍ଣ୍ଣ ଭାବରେ କଳିଙ୍ଗର ଯାତ୍ରାଦଳ ଦ୍ୱାରା (ନାଟବେଶୀ ନିଶାଚରମାନଙ୍କ ଦ୍ୱାରା) ଶେଷ ହୋଇଥାଆନ୍ତେ । ଏହି ଘଟଣା ଘଟିବା ପରେ ଚୋଡ଼ଗଙ୍ଗ ଉତ୍କଳ ସିଂହାସନରେ ବସିଯାଇଥିଲେ । କିନ୍ତୁ ତାଙ୍କୁ ପୁନଶ୍ଚ ଦଣ୍ଡଭୁକ୍ତିରାଜ ଜୟସିଂହ ସମର୍ଥିତ ପୂର୍ବ ସମ୍ରାଟ କର୍ଣ୍ଣକେଶରୀଙ୍କ ସହିତ ଯୁଦ୍ଧ କରିବାକୁ ପଡ଼ିଥିଲା ।

ଏହି ଯୁଦ୍ଧ ଚାଲିଥିବା କାଳରେ ଭୁବନେଶ୍ୱରର ଶୈବମାନେ ଆନ୍ଧ୍ର, ବଙ୍ଗ ଏବଂ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଭୁବନେଶ୍ୱରର ଶିବଙ୍କୁ ଦର୍ଶନ କରିବାକୁ ଆସିଥିବା ତୀର୍ଥଯାତ୍ରୀମାନଙ୍କ ନିକଟରେ ପ୍ରଚାର କରିଗଲେ ଯେ ଚୋଡ଼ଗଙ୍ଗ ବେତାଳ ସାଧ ଏବଂ ସେ ନାଟବେଶରେ ଶିବ ଲିଙ୍ଗରାଜଙ୍କର ଆଜ୍ଞା ନେଇ ଉତ୍କଳ ସିଂହାସନ ଲାଭ କଲେ । (୩୩) ଭୁବନେଶ୍ୱରର ଶିବଲିଙ୍ଗରାଜ ସେବକମାନଙ୍କର ମଧ୍ୟଯୁଗରେ ଏହି ପ୍ରଚାରକୁ କେହି ଅସ୍ୱୀକାର କରିପାରିନଥିଲେ; କାରଣ ସେତେବେଳର ଓଡ଼ିଶାର ଧର୍ମଧାରଣାରେ ଶିବଲିଙ୍ଗରାଜଙ୍କର ଅପ୍ରତିହତ ପ୍ରଭାବ ଥିଲା । (୩୪) ଯଦିବା ସେହି କାଳରେ ଚୋଡ଼ଗଙ୍ଗ କର୍ଣ୍ଣଦେବଙ୍କ ସହିତ ପୁନର୍ବାର ଯୁଦ୍ଧ କରିଥିଲେ, ସୋମବଂଶୀ ରାଜାଙ୍କୁ ସମ୍ପୂର୍ଣ୍ଣ ପରାସ୍ତ କରି ଉତ୍କଳରେ ସୋମବଂଶୀ ସାର୍ବଭୌମତ୍ୱର ଅବସାନ କରାଇଥିଲେ, ଜନରବରେ ତାଙ୍କର ଅଦ୍ଭୁତ କାର୍ଯ୍ୟ (ନାଟବେଶରେ ଆସି କଟକ ମାଡ଼ିବସି ରାଜା ହୋଇଲେ) ଯୁଗ ଯୁଗ ପାଇଁ ରହିଗଲା । (୩୫) ଉତ୍କଳରେ ରାଜାଙ୍କର ଏହି କାର୍ଯ୍ୟ ବଂଗ, ଓଡ଼ିଶା ଓ ଆନ୍ଧ୍ରରେ ପ୍ରଚାରିତ ହୋଇଯିବା ଦ୍ୱାରା ତାହା ଜନରବରେ ଚିରଘୋଷିତ ହୋଇଚାଲିଲା । ଜନରବର ଏକ ଅଂଶ ଆନ୍ଧ୍ର ଜନଶ୍ରୁତିରେ ପରିବର୍ତ୍ତିତ ହୋଇ ଚୋଡ଼ଗଙ୍ଗଙ୍କର ଆଦ୍ୟ ଜୀବନର ଏକ ଘଟଣା ସହିତ ମିଶିଗଲା । ଆନ୍ଧ୍ର ଜନରବରେ (ଯାହା ଭୀମକବି ଘଟଣା ସହିତ ଜଡ଼ିତ) ଚୋଡ଼ଗଙ୍ଗ ଉତ୍କଳ ସିଂହାସନକୁ ନାଟବେଶରେ ଛଡ଼ାଇନେବା କଥା ସ୍ଥାନ ପାଇନାହିଁ । ଏହି ଉପାୟରେ ସେ କଳିଙ୍ଗ

ସିଂହାସନ ଛଡ଼ାଇନେଲେ ବୋଲି ଆନ୍ଧ୍ର ଜନଶ୍ରୁତି ଘୋଷଣା କରେ, କିନ୍ତୁ ଚୋଡ଼ଗଙ୍ଗ ଉତ୍କଳରାଜାଙ୍କୁ ଯୁଦ୍ଧରେ ପରାସ୍ତ କଲେ ବୋଲି ଏ ଜନଶ୍ରୁତି ଘୋଷଣା କରେ । ଏହିପରି ଆନ୍ଧ୍ର ଓଡ଼ିଶାର ଜନଶ୍ରୁତି, ନାନାଭାବରେ ପରିବର୍ତ୍ତିତ ହୋଇଥିଲେ ମଧ୍ୟ ଚୋଡ଼ଗଙ୍ଗଙ୍କ ଆଦ୍ୟକାଳର ଘଟଣାକୁ ଉପସ୍ଥାପନ କରିଛନ୍ତି । ଆନ୍ଧ୍ରରେ ପ୍ରଚାରିତ ଜନରବରେ ଯାଜନଗର ପରିବର୍ତ୍ତେ ସଜ୍ଜନଗର (ଓଡ଼ିଶା ରାଜାଙ୍କ ରାଜଧାନୀ) ସ୍ଥାନ ପାଇଛି । ଏପରି ଭ୍ରମ ବା ପରିବର୍ତ୍ତନ ଜନଶ୍ରୁତିରେ ସମ୍ଭବ । ଏହିସବୁ ଦୃଷ୍ଟିରୁ ମାଦଳାପାଞ୍ଜି ବର୍ଣ୍ଣିତ ତଥ୍ୟ (ଚୋଡ଼ଗଙ୍ଗ ଭୁବନେଶ୍ୱରର ଶୈବମାନଙ୍କର ସକ୍ରିୟ ସମର୍ଥନ ଲାଭ କରି ଉତ୍କଳ ସିଂହାସନ ଗ୍ରହଣ)କୁ ଗ୍ରହଣ କରାଯାଇପାରେ (୩୬)

ସପ୍ତଦଶ ଶତକରେ ରଚିତ ମାଦଳାପାଞ୍ଜିର ରାଜଚରିତ ଚୋଡ଼ଗଙ୍ଗଙ୍କ ରାଜନୈତିକ ଜୀବନର ଏକ ଘଟଣାକୁ ବାସ୍ତବରୂପ ଦେଇ ଥିବାରୁ ଏହାକୁ ଐତିହାସିକ ସତ୍ୟ ରୂପେ ଗ୍ରହଣ କରାଯିବା ଉଚିତ । ପ୍ରଥମେ ଚୋଡ଼ଗଙ୍ଗ ଉତ୍କଳ ଯେଉଁ ସ୍ଥାନରେ ସୈନ୍ୟବାହିନୀ ନେଇ ପ୍ରବେଶ କରିଥିଲେ, ତାହା ସୋମବଂଶୀ ରାଜବଂଶ ଅନ୍ତର୍ଗତ ଏକ ସାମନ୍ତରାଜାଙ୍କ ଅଧିନରେ ଥିଲା ବୋଲି ପୂର୍ବେ ଏ ଲେଖକ ପ୍ରକାଶ କରିଛି ଏବଂ ପରେ ଏହାକୁ ଚୁଡ଼ଙ୍ଗଗଡ଼ ବୋଲି ନାମିତ କରାଗଲା । ଜନଶ୍ରୁତିରେ ଚୋଡ଼ଗଙ୍ଗ ଏହି ସ୍ଥାନ ସହିତ ଜଡ଼ିତ ଥିବାରୁ ଚୁଡ଼ଗଙ୍ଗ ଗଡ଼, ଚୁଡଂଗ ଗଡ଼ ଏବଂ ଚୂଡ଼ଂଗିଆଣୀ ପ୍ରଭୃତି ସ୍ଥାନ ଚିର ସ୍ମରଣୀୟ ହୋଇରହିଛି । ଏସବୁ ଅଭ୍ରାନ୍ତ ଭାବରେ ପ୍ରକାଶ କରନ୍ତି ଯେ ଚୋଡ଼ଗଙ୍ଗଙ୍କର ଉତ୍କଳରେ ଆଦ୍ୟ ରାଜନୈତିକ ଜୀବନର କେନ୍ଦ୍ରସ୍ଥଳ ଥିଲା ସାରଙ୍ଗଗଡ଼ ଅଞ୍ଚଳ । ଏପରିକି ଶାରଳା ଦାସ ମଧ୍ୟ ଏହି ଅଞ୍ଚଳକୁ ତାଙ୍କ ମହାଭାରତରେ ଚୁଡଂଗନଗର ବୋଲି ନାମିତ କରିଛନ୍ତି । (୩୭) ଚୋଡ଼ଗଙ୍ଗଙ୍କର ୧୧୨୯ ଖ୍ରୀଷ୍ଟାବ୍ଦର ଏକ ତାମ୍ରଫଳକରେ ତାଙ୍କର ଉତ୍କଳ ଦେଶର ରାଜଧାନୀ ବୁଆଲି ବୋଲି ପ୍ରକାଶ କରାଯାଇଛି । ଏହି ବୁଆଲି ନାମକ ସ୍ଥାନଟି ମଧ୍ୟ ଚନ୍ଦକା ଅଭୟାରଣ୍ୟରେ ସାରଙ୍ଗଗଡ଼ ନିକଟରେ କାଠଯୋଡ଼ି ନଦୀ କୂଳରେ ଅବସ୍ଥିତ । ଏଠାରେ ରାଜନଅର ଏବଂ ଦୁର୍ଗର ଭଗ୍ନାବଶେଷ ଏବେ ମଧ୍ୟ ରହିଛି । (୩୮) ମନେହୁଏ ଚୋଡ଼ଗଙ୍ଗଙ୍କ ଶାସନ କାଳରେ ଏହିସବୁ ଅଞ୍ଚଳ ତାଙ୍କ ଶାସନର ପ୍ରଧାନ କେନ୍ଦ୍ର (ରାଜଧାନୀ ଅଞ୍ଚଳ) ରୂପେ ପରିଚିତ ଥିଲା ।

---

ପ୍ରସଙ୍ଗ ନିର୍ଦ୍ଦେଶ

୧. ଆନ୍ଧ୍ର ପ୍ରଦେଶରେ ଚୋଡ଼ଗଙ୍ଗ ଏବଂ ଭୀମକବିଙ୍କୁ କେନ୍ଦ୍ରକରି ଜନଶ୍ରୁତି ଆଜି ପର୍ଯ୍ୟନ୍ତ

ପ୍ରଚଳିତ । ରେଡ୍‌ଡୀ ରାଜବଂଶର ସୁପ୍ରସିଦ୍ଧ କବି ତଥା ତେଲୁଗୁ ଭାଷାର ବିଶିଷ୍ଟ ପଣ୍ଡିତ ଶ୍ରୀନାଥଙ୍କ କାଶିଖଣ୍ଡମୁରେ ଭୀମକବିଙ୍କ ସମ୍ପର୍କରେ ସୂଚନା ରହିଛି । ପିଙ୍ଗଳୀ ସୁରନଙ୍କ ରଚନାରେ ଭୀମକବି ରାଘବ- ପାଣ୍ଡବୀୟମୁ ରଚନା କରିଥିବାର ସୂଚନା ରହିଛି । ପିଙ୍ଗଳୀ ସୁରନ (ଖ୍ରୀ. ୧୫୨୦-୮୦) ମଧ୍ୟ ରାଘବ ପାଣ୍ଡବୀୟମୁ ରଚନା କରିଥିଲେ ଏବଂ ସେହି ଗ୍ରନ୍ଥରେ ସେ ପ୍ରକାଶ କରିଥିଲେ ଯେ ବେମୁଲବାଡ଼ ଭୀମକବି ପ୍ରଥମେ ଏହାକୁ ରଚନା କରିଥିଲେ; କିନ୍ତୁ ଏହା ଆଲୋକକୁ ଆସିପାରିନଥିଲା । ସେ ମଧ୍ୟ ଭୀମକବି 'କବିଜନାଶ୍ରୟ' ନାମକ ଗ୍ରନ୍ଥ ରଚନା କରି ତାହାକୁ କୋମଟି ରେଚନଙ୍କୁ ଉତ୍ସର୍ଗ କରିଥିଲେ ବୋଲି ପ୍ରକାଶ କରିଥିଲେ । ଭୀମେଶ୍ୱର ମନ୍ଦିର ଶିଳାଲିପିରୁ ଚୋଡ଼ଗଙ୍ଗଙ୍କର ସନ୍ଧି ବିଗ୍ରହଙ୍କ ନାମ ରେଚନ ଥିବାର ଜଣାପଡ଼ିଛି । SII South India Inscriptions, (ଏହାପରେ ସର୍ବତ୍ର ସୂଚିତ Vol. IV, No. 1363, Inscriptions of Orissa, ଏହାପରେ ସର୍ବତ୍ର ସୂଚିତ 10, Vol.III, part.1, No. 42) ମଣ୍ଡ ନରସିଂହ ଭୀମକବି ସମ୍ପର୍କିତ ଜନଶ୍ରୁତି ତେଲୁଗୁରେ ପ୍ରକାଶ କରିଛନ୍ତି । ଭାରତୀ (ତେଲୁଗୁ ପତ୍ରିକା, ଅକ୍ଟୋବର, ୧୯୫୪, ପୃ-୪୨୬-୨୭ । ଭୀମକବିଙ୍କ ସମ୍ପର୍କରେ ପୂର୍ଣ୍ଣ ଧାରଣା ପାଇଁ 'ଅମରକବୁଲୁ', ତ୍ରିବେଣୀ ପ୍ରକାଶନୀ, ମସୁଲିପଟମ, ୧୯୫୬, ପୃ-୩୨-୫୦ ।

୨. ମାଦଳାପାଞ୍ଜି, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର, ୧୯୬୯, ପୃ-୨୨ ।

୩. (କ) ଓଡ୍ରଦେଶ ରାଜବଂଶାବଳି, ୧୯୮୩ (Institute of Orissan Culture), ପୃ- ୧୪-୧୫ ।

(ଖ) କଟକ ରାଜବଂଶାବଳି (ଯୁଗ୍ମ ସମ୍ପାଦକ- ହର୍‌ମାନ କୁଲ୍‌କେ ଏବଂ ଗୟାଚରଣ ତ୍ରିପାଠୀ), ଭେରା ପବ୍ଲିକେସନ୍‌ସ, ଆଲହାବାଦ, ୧୯୮୭, ପୃ-୧୮ ।

(ଗ) ଗଙ୍ଗବଂଶାନୁଚରିତ ଚମ୍ପୂ (ବାସୁଦେବ ରଥ ସୋମୟାଜୀ), ଡାଇରେକ୍ଟୋରେଟ୍ ଅଫ୍ କଲଚର, ଓଡ଼ିଶା, ଅଷ୍ଟମ ଅଧ୍ୟାୟ, ପୃ- ୧୭୩

୪. ଦେବେନ୍ଦ୍ର ବର୍ମନ ରାଜାରାଜଙ୍କ ରାଜତ୍ୱ ବିବରଣୀ ଚୋଡ଼ଗଙ୍ଗଙ୍କ ତାମ୍ର ଫଳକରେ ସଂରକ୍ଷିତ । Epigraphia Andhrica, Andhra Pradesh Government Museum, Hyderabad, Vol.IV, P. 43-44

୫. ଦାଶ, କୈଳାସଚନ୍ଦ୍ର 'A historical study of the legends on the Ganga king Chodaganga, Orissa Historical Research Journal (ଏହାପରେ ସର୍ବତ୍ର ସୂଚିତ, OHRJ) Vol XXXIV, Nos.III and IV; p.5, p. 23-24.

୬. ଗଙ୍ଗରାଜ ପଞ୍ଚମ ବଜ୍ରହସ୍ତଙ୍କ ଶକାବ୍ଦ ୯୬୭ (ଖ୍ରୀ. ୧୦୪୫)ର ଏକ ତାମ୍ର ଲେଖାନୁସାରେ ଦନ୍ତପୁର ତାଙ୍କ ରାଜଧାନୀ ଥିଲା । Epigraphia Indica, Vol-I, p.149 । କିନ୍ତୁ ତାଙ୍କର ପରବର୍ତ୍ତୀ ଅନ୍ୟ ସମସ୍ତ ତାମ୍ର ଫଳକରେ ରାଜଧାନୀ କଳିଙ୍ଗ ନଗରୀ ଥିବାର ସୂଚନା ରହିଛି । ଶକାବ୍ଦ ୯୮୮ (ଖ୍ରୀ. ୧୦୬୬)ରେ ଦନ୍ତପୁର ଦେବେନ୍ଦ୍ର ବର୍ମନ୍‌ଙ୍କର ଅଧୀନକୁ

ଆସିଥିଲା । IO, Vol.II, p.218; Vol. III, Part III, P. 379.

୭. IO, Vol.II, No. 47, P. 221-23

୮. ରାମଚନ୍ଦ୍ର ରାଓ, ସି.ଭି., Administration and Society in Mediaeval Andhra under the later Eastern Gangas and the Suryavansi Gajapatis: Manas Publications, Nellore, 1976, p. 113-14.

୯. ଦାଶ, କୈଳାସଚନ୍ଦ୍ର; ପୂର୍ବୋକ୍ତ ପ୍ରବନ୍ଧ, OHRJ, Vol.XXXIV, Nos.III & IV, p. 5-6, p. 23-24.

୧୦. IO, Vol.III, part.I, p. 20 (ଦୀର୍ଘସି ଶିଳାଲିପି)

୧୧. ଶକାବ୍ଦ ୧୦୦୩ (ଖ୍ରୀ. ୧୦୮୧)ରେ ପ୍ରଦତ୍ତ କାୟକାୟ ଗ୍ରାମରୁ ଆବିଷ୍କୃତ ତାମ୍ର ଫଳକରେ ଦେବେନ୍ଦ୍ର ବର୍ମନ୍ ସମସ୍ତ ସାମ୍ରାଜ୍ୟବାଦୀ ଉପାଧିରେ ଭୂଷିତ ହୋଇଥିବାର ସୂଚିତ ହୋଇଛି । ସେ ମଧ୍ୟ କଳିଙ୍ଗ ସମ୍ରାଟ ବୋଲି ଉକ୍ତ ତାମ୍ର ଲେଖରେ ଦାବି କରିଛନ୍ତି । IO, Vol.II, No. 47, p. 221-223. ଏହି ତାମ୍ର ଫଳକଟି କଳିଙ୍ଗ ରାଜଧାନୀ କଳିଙ୍ଗ ନଗରୀରୁ ପ୍ରଦତ୍ତ ହୋଇଥିଲା ବୋଲି ପ୍ରକାଶ କରାଯାଇଛି । ଏହି ବର୍ଷ (ଶକାବ୍ଦ ୧୦୦୩)ର ଚୋଡ଼ଗଙ୍ଗଙ୍କର ଅନ୍ୟ ଏକ ତାମ୍ର ଫଳକ ମଧ୍ୟ କଳିଙ୍ଗ ନଗରୀ ଗଙ୍ଗ ରାଜଧାନୀ ଥିବାର ସୂଚନା ବହନ କରେ । Indian Antiquary, Vol, XVIII, p. 61, IO, Vol III, Part I No. 20. ଏହା ଜଣାଇ ଦିଏ ଯେ ଦନ୍ତପୁରରେ ରାଜଧାନୀ ଥାଇ ମଧ୍ୟ ଦେବେନ୍ଦ୍ର ବର୍ମନ୍ ଶକାବ୍ଦ ୧୦୦୩ (ଖ୍ରୀ ୧୦୮୧)ରେ କଳିଙ୍ଗର ରାଜଧାନୀ କଳିଙ୍ଗ ନଗରୀ ଅଧିକାର କରିସାରିଥିବାର ଏକ ମିଥ୍ୟା ପ୍ରଚାର କରିଥିଲେ ।

୧୨. ଉତ୍କଳରାଜାଙ୍କୁ ଗଙ୍ଗରାଜା ରାଜାରାଜ ପରାସ୍ତ କରିଥିବାର ସୂଚନା ଗଙ୍ଗ ସେନାପତିଙ୍କ ଦୀର୍ଘସି ଶିଳାଲିପିରୁ ସଂଗୃହୀତ । IO, Vol III, Part I, p.20 No. 20

୧୩. କାୟକାୟ ତାମ୍ର ଫଳକ (ଶକାବ୍ଦ ୧୦୦୩ ବା ଖ୍ରୀ. ୧୦୮୧) ଏକ ଯୁଦ୍ଧ ପରେ ପ୍ରଦତ୍ତ ହୋଇଥିବାର ଜଣାଯାଏ । IO, Vol III, No.47

୧୪. ଉତ୍କଳର ସୋମବଂଶୀ ନରପତି କର୍ଣ୍ଣଦେବଙ୍କର ରତ୍ନଗିରି ତାମ୍ର ଫଳକରେ ପୁରଞ୍ଜୟଙ୍କ ରାଜତ୍ୱ କାଳରେ କଳିଙ୍ଗ ଉତ୍କଳ ସଂଘର୍ଷପୂର୍ଣ୍ଣ ସମ୍ପର୍କ ସୂଚିତ । Epigraphia Indica, Vol.XXXIII, p. 266

୧୫. ଦାଶ କୈଳାସଚନ୍ଦ୍ର, ପୂର୍ବୋକ୍ତ ପ୍ରବନ୍ଧ, OHRJ, Vol, XXXIV, Nos.III & IV, p. 25

୧୬. ତତ୍ରୈବ ।

୧୭. ଚୋଡ଼ଗଙ୍ଗଙ୍କର ଖ୍ରୀ ୧୧୦୮ (ଶକାବ୍ଦ ୧୦୩୦)ର ତାମ୍ର ଫଳକରେ ସେ ପୂର୍ବ ପରାଜିତ ଉତ୍କଳ ପତିଙ୍କୁ ଉତ୍କଳ ସିଂହାସନରେ ବସାଇ ଥିବାର ବର୍ଣ୍ଣନା ରହିଛି । ଏହା ପରବର୍ତ୍ତୀ ଚୋଡ଼ଗଙ୍ଗଙ୍କର ଅନ୍ୟ ସମସ୍ତ ତାମ୍ର ଫଳକରେ ମଧ୍ୟ ବର୍ଣ୍ଣିତ । Epigraphia Andhrica, Vol IV, p. 46. ଦାଶ କୈଳାସଚନ୍ଦ୍ର, "A Study on the con-

quest of Utkal by the Ganga King Chodaganga" OHRJ, Vol. XXXI, Nos.II, III & IV, 1985, p. 131-133.

୧୮. ତତ୍ରୈବ ।

୧୯. ତତ୍ରୈବ (ଚୋଡ଼ଗଙ୍ଗଙ୍କ ପ୍ରଦତ୍ତ ମୁଖଲିଙ୍ଗମରୁ ଆବିଷ୍କୃତ ୧୧୦୮ ଖ୍ରୀଷ୍ଟାବ୍ଦର ତାମ୍ର ଲେଖରେ ପୂର୍ବ ପରାଜିତ ଉତ୍କଳ ପତିଙ୍କୁ ଚୋଡ଼ଗଙ୍ଗ ସିଂହାସନରେ ବସାଇଥିବାର ସୂଚନା ରହିଛି) ।

୨୦. ମାଦଳାପାଞ୍ଜି,ପୃ-୨୧-୨୨ ।

୨୧. ସମ୍ଭବତଃ ଚୋଡ଼ଗଙ୍ଗ ପ୍ରଥମଥର ଉତ୍କଳ ଅଭିଯାନ ପରେ ଉତ୍କଳର ଏକ ଅଂଶ (ଏଥିରେ ଅନ୍ତର୍ଗତ ଭୁବନେଶ୍ୱର ଶୈବ କ୍ଷେତ୍ର) ଏବଂ ପ୍ରାଚୀ- କୁଶଭଦ୍ରା ଅଞ୍ଚଳ ତଥା ପୁରୁଷୋତ୍ତମ କ୍ଷେତ୍ର) ଚୋଡ଼ଗଙ୍ଗଙ୍କ ପ୍ରତ୍ୟକ୍ଷ ଅଧୀନକୁ ଆସି ଯାଇଥିଲା । ସୋମବଂଶୀ ସମ୍ରାଟ କର୍ଣ୍ଣ ଦେବଙ୍କର ତାମ୍ର ଲେଖ (ରତ୍ନଗିରି ଠାରୁ ଆବିଷ୍କୃତ) ଅନୁସାରେ ମହାନଦୀର ଅପର ପାର୍ଶ୍ୱ ଅଞ୍ଚଳ ଅର୍ଥାତ୍ କଟକ, ବାଲେଶ୍ୱର ଏବଂ ମୟୂରଭଞ୍ଜ ପ୍ରଭୃତି କର୍ଣ୍ଣ ଦେବଙ୍କର ପ୍ରତ୍ୟକ୍ଷ ଶାସନାନ୍ତର୍ଗତ ହୋଇଥିଲା । Epigraphia Indica, Vol.XXXIII, p. 263-74, ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର. Chronology of the Bhauma Karas and the Somavamsis of Orissa, Madras Law Journal Press, Madras, 1961, p. 38.

୨୨. ରତ୍ନଗିରି ତାମ୍ରଲେଖରେ କର୍ଣ୍ଣଦେବଙ୍କର ପରମ ମାହେଶ୍ୱର ଉପାଧି ଥିବାର ବର୍ଣ୍ଣନା ରହିଛି । Epigraphia Indica, Vol.XXXIII, p. 264-74 ମାଦଳାପାଞ୍ଜିର ରାଜଚରିତରେ ଶେଷ ସୋମବଂଶୀ କେଶରୀ ସମ୍ରାଟ ଓଡ଼ିଶାରେ ଶିବ- ଲିଙ୍ଗରାଜଙ୍କର ପୃଷ୍ଠପୋଷକ ନଥିବାର ସୂଚନା ରହିଛି । ମାଦଳାପାଞ୍ଜି, ପୃ-୨୧ ।

୨୩. ମାଦଳାପାଞ୍ଜିରେ ବର୍ଣ୍ଣିତ ତଥ୍ୟ ଉପରେ ଏହି ଚିନ୍ତାଧାରା ନିର୍ମିତ । ଏହା ପ୍ରକାଶ କରେ ଯେ ଶେଷ କେଶରୀ ସମ୍ରାଟଙ୍କର ସେନାପତି ବାସୁଦେବ ଦକ୍ଷିଣରୁ/ କର୍ଣ୍ଣାଟଦେଶରୁ ଚୋଡ଼ଗଙ୍ଗଙ୍କୁ ଆଣିଥିଲେ ଏବଂ ଏଥିପାଇଁ ସେ ଶିବ-ଲିଙ୍ଗରାଜଙ୍କର ଆଜ୍ଞା ପାଇଥିଲେ । ଏହି ପ୍ରସଙ୍ଗରେ ଚୋଡ଼ଗଙ୍ଗଙ୍କର ଓଡ଼ିଶା ଅଧିକାରରେ ଭୁବନେଶ୍ୱର- ଶୈବ ମାନଙ୍କର ସ୍ୱାର୍ଥ ଜଡ଼ିତ ଥିବାର ସୂଚନା ରହିଛି । ଭୁବନେଶ୍ୱରର ଶିବଲିଙ୍ଗରାଜଙ୍କ ପ୍ରତି ପ୍ରବଳ ରାଜପୃଷ୍ଠପୋଷକତା ହିଁ ଏହି ସ୍ୱାର୍ଥର ଅନ୍ୟ ଅର୍ଥ । ଚୋଡ଼ଗଙ୍ଗଙ୍କର ଅନ୍ୟ ଶିଳାଲିପି ଓ ତାମ୍ରଲେଖରେ ସେ ଗୋକର୍ଣ୍ଣେଶ୍ୱର ଓ ମଧୁକେଶ୍ୱରଙ୍କର ଉପାସକ ଥିବାର ବର୍ଣ୍ଣନା ରହିଛି । 10, Vol. III, Part.I, Part, II, ମାଦଳାପାଞ୍ଜି, ପୃ- ୨୧-୨୨ ।

୨୪. ଚୋଡ଼ଗଙ୍ଗଙ୍କର ୧୧୨୯ ଖ୍ରୀଷ୍ଟାବ୍ଦର ଏକ ତାମ୍ର ଲେଖରେ ସେ ଚୋଡ଼ ସେନାପତି ଜୟଗୋଣ୍ଡ ଚୋଡ଼ଙ୍କୁ ଯୁଦ୍ଧ ଭୂମିରେ ହତ୍ୟା କରିଥିବାର ବର୍ଣ୍ଣନା ରହିଛି । ଡେମ୍ବୁରୁ ତାମ୍ରଫଳକ, ଭାରତୀ, ଅଗଷ୍ଟ, ୧୯୬୮, ପୃ-୧୨ ।

୨୫. ଶଃ ୧୦୫୦ (ଖ୍ରୀ ୧୧୨୮)ର ଦ୍ରାକ୍ଷାରାମସ୍ଥିତ ଭୀମେଶ୍ୱର ମନ୍ଦିର ଶିଳାଲିପିରେ ଜୟଗୋଣ୍ଡ ଚୋଡ଼ଦେବୀ କଳିଙ୍ଗ ମହାଦେବୀ ଏବଂ ପଟ୍ଟ ମହାଦେବୀ ବୋଲି ସୂଚିତ ।

SII, Vol.IV, No. 1194, 10, Vol.III, part.1, No.104. ସତ୍ୟନାରାୟଣ ରାଜଗୁରୁଙ୍କ ମତାନୁସାରେ ଏହି କଳିଙ୍ଗ ମହାଦେବୀ ବେଙ୍ଗୀ ରାଜ୍ୟପାଳ ବୀରଚୋଡ଼ଙ୍କର କନ୍ୟା ଥିଲେ । 10, Vol.III, Part-1, No. 104. ଏହି ମତକୁ ମୁଁ ସମର୍ଥନ କରିନାହିଁ । ଏହି ମହାଦେବୀଙ୍କ ନାମ ସହିତ ଜୟଗୋଣ୍ଡ ନାମ ଛଡ଼ିତ ଥିବାରୁ ଚୋଡ଼ ସେନାପତି ଜୟଗୋଣ୍ଡଙ୍କ ସହିତ ଏହାଙ୍କର କିଛି ସମ୍ପର୍କ ଥିବାର ଅନୁମାନ କରାଯାଇଥାଏ । ମୋର ଅନୁମାନ ଚୋଡ଼ଗଙ୍ଗ ଯୁଦ୍ଧରେ ଚୋଡ଼ ସେନାପତି ଜୟଗୋଣ୍ଡଙ୍କୁ ହତ୍ୟା କରି ବିଜୟ ଲାଭ କରିବା ଫଳରେ ଚୋଡ଼ଗଙ୍ଗଙ୍କୁ ବାଧ ହୋଇ କୁଲୋତୁଙ୍ଗଙ୍କ ପକ୍ଷରୁ ଏକ ଚୋଡ଼ ରାଜକନ୍ୟା ବିବାହ ଦିଆଯାଇଥିଲା । ଏହାଦ୍ୱାରା ଉଭୟ ପକ୍ଷରେ ଶାନ୍ତି ପ୍ରତିଷ୍ଠା ହେଲା । ସେହି ନାମ ଅର୍ଥାତ୍ ଚୋଡ଼ ରାଜକନ୍ୟାଙ୍କର ଜୟଗୋଣ୍ଡ ଚୋଡ଼ଦେବୀ ନାମଟି ଚୋଡ଼ଗଙ୍ଗଙ୍କର ଚୋଡ଼ ସେନାପତି ଉପରେ ଅଭୂତପୂର୍ବ ବିଜୟର ସ୍ମାରକୀ ସଦୃଶ ଚୋଡ଼ଗଙ୍ଗଙ୍କ ପକ୍ଷ ତରଫରୁ ଆରୋପ କରାଯାଇଥିଲା ।

୨୬. Epigraphia Andhrica, Vol.IV, p.46

୨୭. ମାଦଳାପାଞ୍ଜିରେ ବରାହକେଶରୀ ସାରଂଗଗଡ଼ର ନିର୍ମାତାବୋଲି ସୂଚିତ । ମାଦଳାପାଞ୍ଜି, ପୃ-୧୭ । ଷ୍ଟାରଲିଂ (A. Stirling) ଏବଂ (-W, Hunter) ହଣ୍ଟର ପ୍ରଭୃତି ଊନବିଂଶ ଶତକର ଐତିହାସିକମାନେ ସାରଂଗଡ଼ର ନିର୍ମାତା ମାଧବ କେଶରୀ ବୋଲି ଗ୍ରହଣ କରିଛନ୍ତି । Stirling, A, An Account, Geographical, statistical and Historical of Orissa proper or Cuttack reprint, 1904, part.II, p.70. Hunter, W.W, Orissa, Vol.I, 1872, p.186.

୨୮. ଦାଶ, କୈଳାସଚନ୍ଦ୍ର, OHRJ, vol.XXXI, Nos II III and IV p, 136, p 140-41 ରାମଚରିତ (ସନ୍ଧ୍ୟାକର ନନ୍ଦୀ) Memoire of Asiatic society of Bengal, Calcutta, vs III, No. pp 421 ଭବଭୂଷଣ ସନ୍ତତିମନୁଜ ଗ୍ରାହଜିତମୁକୁଳତ୍ରମ୍ ଯଃ ଜଗଦ୍ଵତିସ୍ମ ସମସ୍ତ କଳିଙ୍ଗତ ସ୍ଥାନ ନିଶାଚରାନ୍ ନିଘ୍ନନ ।

୩୦. ଦାଶ, କୈଳାସଚନ୍ଦ୍ର, OHRJ, vol.XXXI, Nos II III and IV, p.134-136,

୩୧. ତତ୍ରୈବ, ପୃ ୧୩୬-୧୩୭, ପୃ-୧୪୧ ।

୩୨. ତତ୍ରୈବ । ରାମଚରିତରେ ଥିବା ଶ୍ଳୋକର ବାଖ୍ୟାରେ କୁହାଯାଇଛି- ସିଂହଇତି ଦଣ୍ଡଭୁକ୍ତି ଭୂପତିର ଭୂତ ପ୍ରଭାବାକର କମଳ ମୁକ୍ତଳତୁଳି ତୋକ୍ରଳେଶ କର୍ଣ୍ଣକେଶରୀ ସରିଦ୍‌ବଲ୍ଲଭ କୁମ୍ଭସମ୍ଭବ- ଜୟସିଂହଃ । ଏହାର ଅର୍ଥ: ଦଣ୍ଡଭୁକ୍ତି ନରପତି ତଥା ଅସାଧାରଣ ଶକ୍ତିର ଅଧିକାରୀ ଜୟସିଂହ ଉତ୍କଳରାଜା କର୍ଣ୍ଣକେଶରୀଙ୍କୁ ଏକ ନିମ୍ନ ପତିତ ସ୍ଥାନରୁ ଉଦ୍ଧାର କଲେ । ଯେପରି ଅଗସ୍ତି (କୁମ୍ଭ ସମ୍ଭବ) ସମୁଦ୍ରକୁ ନିଜ ହାତରେ ନିମ୍ନ ସ୍ଥାନରେ ଉଦ୍ଧାର କରିଗଲେ । ଶ୍ଳୋକ ଏବଂ ତାହାର ବାଖ୍ୟା ପାଇଁ: Memoirs of Asiatic Society of Bengal, Calcutta Vol.III, No.1, P. Iff,p. 42-50.

୩୩. ମାଦଳାପାଞ୍ଜି, ପୃ-୨୨ । ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତାନୁସାରେ ଉତ୍କଳ

ସିଂହାସନ ଲାଭ ପରେ ଚୋଡ଼ଗଙ୍ଗ ଏବଂ ତାଙ୍କର ସହଯୋଗୀ ଶେଷକେଶରୀ ସେନାପତି ବାସୁଦେବ ଚୋଡ଼ଗଙ୍ଗ ଭୁବନେଶ୍ୱର ଶିବଙ୍କ ଆଜ୍ଞାନୁସାରେ ଓଡ଼ିଶା ଅଧିକାର କରିଛନ୍ତି ବୋଲି ପ୍ରଚାର କରିଥିଲେ । ଜନମତକୁ ତୁଷ୍ଟ କରିବା ଏହି ପ୍ରଚାରର ମୁଖ୍ୟ ଉଦ୍ଦେଶ୍ୟ ଥିଲା । କିନ୍ତୁ ଭୁବନେଶ୍ୱର ଶୈବମାନଙ୍କର ଏହି ପ୍ରଚାର ଦ୍ୱାରା ଲୋକମାନେ ଏହାକୁ ଗ୍ରହଣ କରିଥିବେ । କାରଣ ସେହି ଅବସ୍ଥାରେ ଓଡ଼ିଶାରେ ଚୋଡ଼ଗଙ୍ଗ ଅଜଣା ଥିଲେ । ତେଣୁ ତାଙ୍କ ପ୍ରଚାରକୁ କିଏ କାହିଁକି ଗୁରୁତ୍ୱ ଦେବ ? ଧର୍ମ ଦୃଷ୍ଟିରୁ ଶୈବମାନଙ୍କ ଦ୍ୱାରା ଏହି ପ୍ରଚାରକୁ ସମସ୍ତେ ଗ୍ରହଣ କରିନେଇଥିବେ । ପାଣିଗ୍ରାହୀଙ୍କ ମତ ପାଇଁ ତାଙ୍କ ପୁସ୍ତକ ଇତିହାସ ଓ କିମ୍ବଦନ୍ତୀ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର, ୧୯୬୨, ପୃ-୧୧୩ ।

୩୪. ଦାଶ, ଗଗନେନ୍ଦ୍ର ନାଥ (e) "The Evolution of the priestly power: The Gangavamsa period in, The Cult of Jagannath and the Regional Tradition of Orissa, edited by Eschmann, Kulke and Tripathy. Manohar publications, Delhi, chapter-IX, 1978, 160-161 (୨) ଜନଶ୍ରୁତି କାଞ୍ଚି କାବେରୀ, ପୁସ୍ତକ ଭଣ୍ଡାର, ବ୍ରହ୍ମପୁର-୧, ୧୯୭୯, ପୃ-୪୨ । ଦାଶ, କୈଳାସଚନ୍ଦ୍ର, ''ମଧ୍ୟଯୁଗୀୟ ଓଡ଼ିଶାରେ ଶୈବ- ବୈଷ୍ଣବ ବିବାଦ'' ନବପତ୍ର, କଳଚରାଲ ଏକାଡେମୀ, ରାଉରକେଲା, ୧୫ ବର୍ଷ, ୪ର୍ଥ ସଂଖ୍ୟା ୧୯୮୭, ପୃ-୪୨ ।

୩୫. ତେମ୍ଭୁରୁ ତାମ୍ରଫଳକରେ ଚୋଡ଼ଗଙ୍ଗ କର୍ଣ୍ଣଦେବଙ୍କୁ ପରାସ୍ତ କରି ଥିବାର ବାସ୍ତବ ଚିତ୍ର ପ୍ରକଟିତ । ଦାଶ, କୈଳାସଚନ୍ଦ୍ର, OHRJ, vol.XXXI, Nos II, III and IV, p.136, p.141 ମାଦଳାପାଞ୍ଜି, ପୃ-୨୨ ।

୩୬. ଦାଶ, ଗଗନେନ୍ଦ୍ର ନାଥ, ପୂର୍ବୋକ୍ତ ପ୍ରବନ୍ଧ, ୧୯୭୮, The cult of Jagannath and the Regional Tradition of Orissa, p-161.

୩୭. ଶାରଳା ମହାଭାରତ, ବିରାଟ ପର୍ବରେ ବର୍ଣ୍ଣିତ: ବୀର ଚୁଡଙ୍ଗନଗର ପଶ୍ଚିମର କୋଣେ । ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର, ଇତିହାସ ଓ କିମ୍ବଦନ୍ତୀ, ୧୯୬୨, ପୃ- ୪୮ ।

୩୮. ଚୋଡ଼ଗଙ୍ଗଙ୍କର ବୁଆଳି ଉତ୍କଳ ଦେଶରେ ଏକ ରାଜଧାନୀ ଥିଲା ବୋଲି ତାଙ୍କର ୧୧୨୯ ଖ୍ରୀଷ୍ଟାବ୍ଦର ତାମ୍ରଫଳକ ଦାବି କରେ । ଏ ସମ୍ପର୍କରେ ମୋର ପ୍ରବନ୍ଧ; ଗଙ୍ଗେଶ୍ୱର- ଚୋଡ଼ଗଙ୍ଗ ଓ ବୁଆଳିଗଡ଼ (ସମ୍ବାଦ, ଜୁଲାଇ୧, ୧୯୮୮) ବୁଆଳି ନାମଟି ମୂଳ ନାମ ନିବୁଆଳିର ବିକୃତ ରୂପ ।



# ନୀଳମାଧବ ଓ ଗାଲମାଧବ

ସ୍କନ୍ଦ ପୁରାଣର ପୁରୁଷୋତ୍ତମ ଖଣ୍ଡ, ଶାରଳା ମହାଭାରତର ମୂଷଳୀ ପର୍ବ, ନୀଳାଦ୍ରି ମହୋଦୟ ଏବଂ ଶିଶୁ କୃଷ୍ଣଦାସ ରଚିତ ଦେଉଳତୋଳା ପରି ଗ୍ରନ୍ଥରେ ଜଗନ୍ନାଥ ତତ୍ତ୍ୱ ଓ ମନ୍ଦିରର ଆଦି ପର୍ଯ୍ୟାୟ ସମ୍ପର୍କିତ ଏକ ଜନଶ୍ରୁତି ବିସ୍ତାରିତ ଭାବରେ ବର୍ଣ୍ଣନା କରାଯାଇଛି (୧)। ଏହା ଜଗନ୍ନାଥ ତତ୍ତ୍ୱ ସମ୍ପର୍କିତ ଆଲୋଚନାର ଏକ ମୌଳିକ ଦିଗ ହିସାବରେ ମଧ୍ୟ ଗ୍ରହଣ କରାଯାଇପାରେ । ନୀଳାଚଳ ବା ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଏହି ଚତୁର୍ଦ୍ଧାମୂର୍ତ୍ତି ମାଳବାଧିପତି ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଉପାସିତ ହେବା ପୂର୍ବରୁ ପ୍ରଥମେ ନୀଳମାଧବ ଉପାସ୍ୟ ଦେବତା ରୂପେ ଗୃହୀତ ହୋଇଥିଲେ-ଏହାଥିଲା ଜନଶ୍ରୁତିର ମୂଳ ପ୍ରସଙ୍ଗ । ସମ୍ଭବତଃ ସ୍କନ୍ଦ ପୁରାଣ ଅନ୍ତର୍ଗତ ପୁରୁଷୋତ୍ତମ ଖଣ୍ଡରେ ଜଗନ୍ନାଥ ତତ୍ତ୍ୱ ସମ୍ପର୍କିତ ଏହି ଜନଶ୍ରୁତିଟି ଅନ୍ୟ ପୁରାଣମାନଙ୍କ ପୁରୁଷୋତ୍ତମ ଖଣ୍ଡରେ ବର୍ଣ୍ଣିତ ଜଗନ୍ନାଥ ତତ୍ତ୍ୱ ସମ୍ପର୍କିତ ଜନଶ୍ରୁତି ସହିତ ପ୍ରାୟ ସମାନ ।

ସ୍କନ୍ଦ ପୁରାଣର ପୁରୁଷୋତ୍ତମ ଖଣ୍ଡରେ ବହୁ ଅତୀତରେ ପୁରୁଷୋତ୍ତମ କ୍ଷେତ୍ର ଘନ ଅରଣ୍ୟାବୃତ ନୀଳଗିରି ନାମରେ ପରିଚିତ ଥିଲା ବୋଲି ପ୍ରକାଶ କରାଯାଇଛି-(୨)। ଏହି ନୀଳଗିରି ମଧ୍ୟଭାଗରେ ଏକ କ୍ରୋଶ ବ୍ୟାପୀ ଏକ କଳ୍ପବୃକ୍ଷ ଥିଲା । ଏହି କ୍ଷେତ୍ରରେ ନୀଳେନ୍ଦ୍ରମଣି ସଦୃଶ ବିଷ୍ଣୁ-ବାସୁଦେବଙ୍କର ଏକ ପାଷାଣ ବିଗ୍ରହ ଉପାସନାର ବସ୍ତୁଥିଲା; ନୀଳଗିରିର ପଶ୍ଚିମ ଭାଗଟି ସଂଖ୍ୟାଧିକ ଶବରମାନଙ୍କର ବାସଗୃହ ଦ୍ୱାରା ବେଷ୍ଟିତ ଥିଲା । ମାଳବାଧିପତି ଇନ୍ଦ୍ରଦ୍ୟୁମ୍ନ ବିଦ୍ୟାପତିଙ୍କୁ ଏପରି ଏକ ପବିତ୍ର ତୀର୍ଥ ସ୍ଥାନର ସନ୍ଧାନରେ ପଠାଇଥିଲେ । ବିଦ୍ୟାପତି ଅରଣ୍ୟବେଷ୍ଟିତ ଏହି ନୀଳାଚଳକୁ ଆସିଥିଲେ । ନୀଳଗିରିର ଅନ୍ୟପାର୍ଶ୍ୱରୁ ଦୁଇ ଜଣଙ୍କର କଥୋପକଥନକୁ ଶୁଣି ସେ ଶବରବେଷ୍ଟିତ ସ୍ଥାନଟିକୁ ଦେଖିବାକୁ ପାଇଲେ । ବିଶ୍ୱାବସୁ ନାମକ ବୃଦ୍ଧ ଶବର

ନୀଳାଚଳରୁ ଦେବତାଙ୍କୁ ପୂଜାକରି ସେହି ସ୍ଥାନରେ ପହଞ୍ଚିଗଲେ । ବିଦ୍ୟାପତି ତାଙ୍କୁ ଦେଖି ଆନନ୍ଦିତ ହେଲେ । ବିଶ୍ୱାବସୁ ତାଙ୍କୁ ସେଠାରେ ଅବସ୍ଥାନ କରିବାକୁ ଅନୁମତି ଦେଲେ । ବିଦ୍ୟାପତି ନିଜକୁ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ପୁରୋହିତ ବୋଲି ପରିଚିତ କରାଇଥିଲେ ଏବଂ ନୀଳମାଧବଙ୍କର ଦର୍ଶନ ପାଇଁ ତାଙ୍କର ବ୍ୟାକୁଳତା ବିଶ୍ୱାବସୁ ଶବର ନିକଟରେ ପ୍ରକାଶ କରିଥିଲେ । ଏହି ସମ୍ବାଦରେ ବୃଦ୍ଧ ଶବରଙ୍କର ଉତ୍କଣ୍ଠା ଅଧିକ ବଢ଼ିଯାଇଥିଲା; କାରଣ ବିଦ୍ୟାପତିଙ୍କର ଏହି ଧର୍ମପୀଠ ପରିଦର୍ଶନ ପରେ ନୀଳମାଧବ (ଯେଉଁ ଦେବତା ସେ ଯାବତ୍ ଅପ୍ରକାଶିତ ଥିଲେ) ଜନସାଧାରଣରେ ପ୍ରକାଶିତ ହୋଇଯିବେ । ପରିଶେଷରେ ବିଶ୍ୱାବସୁ ତାଙ୍କୁ ଏକ କଣ୍ଟକିତ ଏବଂ ସଙ୍କୀର୍ଣ୍ଣ ପଥଦେଇ ନୀଳଗିରି ଶିଖରକୁ ନେଇଗଲେ । ସେମାନେ ରୋହିଣ କୁଣ୍ଡ ଏବଂ କଳ୍ପବୃକ୍ଷ ଦର୍ଶନ ପରେ ନୀଳମାଧବଙ୍କୁ ଦର୍ଶନ କଲେ । ଏହାପରେ ବିଦ୍ୟାପତି ବିଶ୍ୱାବସୁଙ୍କର ଅନୁମତି ନେଇ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ତାଙ୍କର ନୀଳାଚଳକୁ ସଫଳ ଯାତ୍ରା ଏବଂ ନୀଳମାଧବ ଦର୍ଶନ ବିଷୟ ଜଣାଇବାପାଇଁ ଅବନ୍ତୀ ଯାତ୍ରା କରିବାକୁ ଉଦ୍ୟତ ହେଲେ । କିନ୍ତୁ ବିଶ୍ୱାବସୁ ତାଙ୍କୁ ରାଜା ଇନ୍ଦ୍ରଦ୍ୟୁମ୍ନ ଆଉ ନୀଳମାଧବଙ୍କ ଦର୍ଶନ ପାଇପାରିବେ ନାହିଁ ବୋଲି ଜଣାଇଦେଲେ; କାରଣ ରାଜାଙ୍କ ଆଗମନ ବେଳକୁ ନୀଳମାଧବ ବାଲୁକା ଗର୍ଭରେ ଲୀନ ହୋଇଯାଇଥିବେ । ବିଦ୍ୟାପତିଙ୍କର ପ୍ରସ୍ଥାନ ପରେ ନୀଳାଚଳରେ ଏକ ଭୟଙ୍କର ବାତ୍ୟା ଦେଖାଦେଇ ଚାରିଆଡେ ସୁବର୍ଣ୍ଣ ବାଲୁକା ବ୍ୟାପିଗଲା । ଏହି ବାତ୍ୟା ପରେ ଆଉ ନୀଳମାଧବ ଏହି କ୍ଷେତ୍ରରେ ଦୃଷ୍ଟ ହେଲେ ନାହିଁ । ବିଦ୍ୟାପତି ଅବନ୍ତୀରେ ପ୍ରବେଶ କରି ଇନ୍ଦ୍ରଦ୍ୟୁମ୍ନଙ୍କୁ ରୋହିଣ କୁଣ୍ଡ, କଳ୍ପବୃକ୍ଷ ଏବଂ ନୀଳେନ୍ଦ୍ରମଣିଙ୍କର ପ୍ରତିମା ବିଷୟରେ ଜଣାଇଥିଲେ । ଇନ୍ଦ୍ରଦ୍ୟୁମ୍ନ ନାରଦ ଏବଂ ବିଦ୍ୟାପତିଙ୍କ ସହିତ ଏହି ସ୍ଥାନକୁ ଆସିଲେ । ଓଡ୍ର ଦେଶର ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସାକ୍ଷାତ କରି ନୀଳାଚଳରେ ହୋଇଥିବା ବାତ୍ୟା (ଯାହା ଫଳରେ ପୁରୁଷୋତ୍ତମ କ୍ଷେତ୍ରର ମୁଖ୍ୟଦେବତା ନୀଳମାଧବ ବାଲୁକା ଗର୍ଭରେ ଲୀନ ହୋଇଗଲେ) ବିଷୟ ଅବଗତ କରାଇଥିଲେ । ପୁରୁଷୋତ୍ତମ କ୍ଷେତ୍ରରେ ପ୍ରବେଶ କରି ନାରଦ ମଧ୍ୟ ନୀଳମାଧବ ବିଦ୍ୟାପତିଙ୍କର ପ୍ରସ୍ଥାନ ପରେ ସୁବର୍ଣ୍ଣ ବାଲୁକା ମଧ୍ୟରେ ଲୀନ ହୋଇଗଲେ ଏବଂ ଇନ୍ଦ୍ରଦ୍ୟୁମ୍ନ ଆଉ ନୀଳମାଧବଙ୍କୁ ଦର୍ଶନ କରିପାରିବେ ନାହିଁ ବୋଲି କହିଲେ । ଏହା ଶୁଣି ମହାରାଜ ଇନ୍ଦ୍ରଦ୍ୟୁମ୍ନ ହଠାତ୍ ଚେତନା ଶୂନ୍ୟ ହୋଇଗଲେ । କିନ୍ତୁ ନାରଦ ତାଙ୍କୁ ଆଶ୍ୱାସନା ଦେଇଥିଲେ । ସେ ମଧ୍ୟ ନୀଳମାଧବ ପୂଜିତ ସ୍ଥାନ ପରିଦର୍ଶନ କରିଥିଲେ । ପୁରୁଷୋତ୍ତମ ଖଣ୍ଡର ପରବର୍ତ୍ତୀ ଅଧ୍ୟାୟ ମାନଙ୍କରେ

ଇନ୍ଦ୍ରଦ୍ୟୁମ୍ନଙ୍କର ପୁରୁଷୋତ୍ତମ କ୍ଷେତ୍ରରେ ବୃହତ୍ ମନ୍ଦିର ନିର୍ମାଣ ଏବଂ, ସେଠାରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏବଂ ସୁଦର୍ଶନଙ୍କ ପରି ଦାରୁବିଗ୍ରହ ଉପାସନା ପାଇଁ ସଫଳ ଉଦ୍ୟମ ସମ୍ପର୍କରେ ବିସ୍ତାରିତ ବର୍ଣ୍ଣନା ରହିଛି । ଏହି ପୁରାଣ ଖଣ୍ଡର ୨୧ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି ଯେ ପୁରୁଷୋତ୍ତମ କ୍ଷେତ୍ରରେ ମନ୍ଦିର ନିର୍ମାଣ କାଳରେ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମଲୋକକୁ ଯାଇ ପ୍ରତିଷ୍ଠା ଉତ୍ସବ ପାଇଁ ବ୍ରହ୍ମାଙ୍କୁ ମୁଖ୍ୟ ପୁରୋଧା ହିସାବରେ ନିମନ୍ତ୍ରଣ କରିଥିଲେ । ପୁରୁଷୋତ୍ତମ କ୍ଷେତ୍ରରେ ତାଙ୍କର ଏହି ଅନୁପସ୍ଥିତିର ସୁଯୋଗ ନେଇ ରାଜା ''ଗାଲ'' ଏହି ମନ୍ଦିରକୁ ନିଜର ବୋଲି ଦାବୀ କରି ନେଇଥିଲେ ଏବଂ ସେଠାରେ ମାଧବ ଉପାସନା ପାଇଁ ବ୍ୟବସ୍ଥା କରଥିଲେ । ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମଲୋକରୁ ପ୍ରତ୍ୟାବର୍ତ୍ତନ କରିବା ପରେ ରାଜା ଗାଲ ତାଙ୍କ ସହିତ ସଂଘର୍ଷ କରିବାକୁ ପ୍ରସ୍ତୁତ ହେଲେ; କିନ୍ତୁ ସେ ଇନ୍ଦ୍ରଦ୍ୟୁମ୍ନଙ୍କର ମନ୍ଦିର ପ୍ରତିଷ୍ଠା ଉତ୍ସବ ନିମିତ୍ତ ବିବିଧ ବ୍ୟବସ୍ଥା ଦେଖି ମୁଗ୍ଧ ହୋଇଥିଲେ । ଫଳରେ ଏଠାରେ ସେ ଆଉ ମାଧବ ଉପାସନା ପାଇଁ ସୁଯୋଗ ପାଇପାରି ନଥିଲେ ।

ପୁରୁଷୋତ୍ତମ କ୍ଷେତ୍ରରେ ନୀଳମାଧବ ଉପାସିତ ହୋଇଥିବା ସମ୍ବାଦ ବହନ କରୁଥିବା ଆଖ୍ୟାନଟି ଖ୍ରୀଷ୍ଟୀୟ ପଞ୍ଚଦଶ ଶତକରେ ରଚିତ ଶାରଳା ମହାଭାରତର ମୂଷଳୀ ପର୍ବରେ ଭିନ୍ନ ପ୍ରକାରରେ ବର୍ଣ୍ଣିତ ହୋଇଛି (୩) । ଏହି ଗ୍ରନ୍ଥରେ ଗାଲମାଧବ ପ୍ରସଙ୍ଗଟି ପ୍ରଥମେ ସ୍ଥାନ ପାଇଛି ଏବଂ ପରେ ଇନ୍ଦ୍ରଦ୍ୟୁମ୍ନଙ୍କର ମନ୍ଦିର ନିର୍ମାଣ ପାଇଁ ସଫଳ ଉଦ୍ୟମ ଏବଂ ଦାରୁବିଗ୍ରହମାନଙ୍କର ସେହି ନବନିର୍ମିତ ମନ୍ଦିରରେ ପ୍ରତିଷ୍ଠା ବିଷୟ ବର୍ଣ୍ଣନା କରାଯାଇଛି । ରାଜା ଗାଲମାଧବଙ୍କର ଦୂତ ବସୁ ବ୍ରାହ୍ମଣ ଶବର ଅଧୀନରେ ଥିବା ରୁଦ୍ର ନଦୀକୂଳର ଧବଳୀ ପର୍ବତ ନିକଟସ୍ଥ ତ୍ରୟମ୍ବକ ତୀର୍ଥରେ ପୂଜିତ ମାଧବଙ୍କ ସ୍ଥାନଟି ଦେଖି ପାରିଥିଲେ । ଏହାପରେ ସେ କାଞ୍ଚିଦେଶର ରାଜାଙ୍କୁ ତାହାଙ୍କର ନୀଳମାଧବ ଦର୍ଶନ ସମ୍ପର୍କରେ ସମ୍ବାଦ ଜଣାଇଥିଲେ । ରାଜା ସୈନ୍ୟମାନଙ୍କ ସହିତ ନୀଳମାଧବ ପୀଠକୁ ଆସିଲେ ଏବଂ ସେ ସେଠାରେ ମାଧବଙ୍କୁ ଆଦୌ ଦେଖିବାକୁ ପାଇଲେ ନାହିଁ । ରାଜା ଶବରମାନଙ୍କ ସହିତ ମାଧବଙ୍କୁ ପାଇବା ପାଇଁ ଯୁଦ୍ଧକଲେ । ଯୁଦ୍ଧ ଭୂମିରେ ଶବରର ଜ୍ଞାତିକୁଟୁମ୍ବମାନେ ପରାଜିତ ହୋଇ ପ୍ରାଣଦେଲେ । ତେଣୁ ଶବର ମୁଖ୍ୟ ମାଧବଙ୍କୁ ସାହାଯ୍ୟ ନିମିତ୍ତ ପ୍ରାର୍ଥନା କଲେ । ମାଧବ ସ୍ୱପ୍ନରେ ରାଜାଙ୍କୁ ମୃତ୍ୟୁପରେ ତାଙ୍କର ବଂଶ ରହିବ ନାହିଁ ବୋଲି ଅଭିଶାପ ଦେଲେ; କାରଣ ଶବରମାନଙ୍କୁ ହତ୍ୟା କରି ସେ ପାପ ଅର୍ଜନ କଲେ । ମାଧବ ରାଜାଙ୍କୁ ଶବରମାନଙ୍କର ସାହାଯ୍ୟ

ନେଇ ଯମନିକ ତୀର୍ଥ ନିକଟସ୍ଥ ନୀଳସୁନ୍ଦର ପର୍ବତରେ ତାଙ୍କର ପାଷାଣ ବିଗ୍ରହ ପୂଜା କରିବାକୁ ନିର୍ଦ୍ଦେଶ ଦେଲେ । ମାଧବଙ୍କର ନିର୍ଦ୍ଦେଶ ଅନୁସାରେ ଗାଲମାଧବ କାର୍ଯ୍ୟ କରିଥିଲେ । କିନ୍ତୁ ମାଧବଙ୍କର ଅଭିଶାପରେ ତାହାଙ୍କର ବଂଶ ଲୋପପାଇଗଲା । ଏହା ପରବର୍ତ୍ତୀ କାଳରେ ଅର୍ଥାତ୍ ଗାଲମାଧବ ବଂଶ କ୍ଷୟପରେ ନୀଳସୁନ୍ଦର ପର୍ବତରେ ମାଧବ ତତ୍ତ୍ୱର ପ୍ରସାର ସମ୍ପର୍କରେ ସାରଳା ମହାଭାରତ ନୀରବ । ଏଥିରେ ବର୍ଣ୍ଣନା କରାଯାଇଛି ଯେ ଗାଲ ବଂଶର ପତନ ପରେ ଇନ୍ଦ୍ରଦ୍ୟୁମ୍ନ ଏକ ବୃହତ୍ ମନ୍ଦିର ନୀଳସୁନ୍ଦର ପର୍ବତରେ ନିର୍ମାଣ କଲେ ଏବଂ ଦାରୁବିଗ୍ରହ ଉପାସନା ଆରମ୍ଭ କଲେ ।

ଉଭୟ ସ୍କନ୍ଦ ପୁରାଣ ଅନ୍ତର୍ଗତ ପୁରୁଷୋତ୍ତମ ଖଣ୍ଡ ଏବଂ ସାରଳା ମହାଭାରତ ମୂଷଳୀ ପର୍ବର ପୁରୁଷୋତ୍ତମ କ୍ଷେତ୍ର ସମ୍ପର୍କିତ ବିବରଣୀରେ ମୌଳିକ ପାର୍ଥକ୍ୟ ରହିଛି । ମୂଷଳୀ ପର୍ବରେ ଶବର ଉପାସିତ ମାଧବଙ୍କର ସର୍ବପ୍ରଥମ ସ୍ଥାନ ପୁରୁଷୋତ୍ତମ ଖଣ୍ଡ ବର୍ଣ୍ଣିତ ଶବର ଉପାସିତ ମାଧବଙ୍କର ସର୍ବପ୍ରଥମ ସ୍ଥାନ ଠାରୁ ଭିନ୍ନ । ମୂଷଳୀ ପର୍ବ ଅନୁସାରେ ମାଧବଙ୍କର ପାଷାଣ ବିଗ୍ରହ ନୀଳସୁନ୍ଦର ପର୍ବତରେ ଶବରମାନଙ୍କର ସହଯୋଗରେ ଗାଲବଙ୍କ ଦ୍ୱାରା ଉପାସିତ ହୋଇଥିଲା । ଉଭୟ ଗ୍ରନ୍ଥରେ ନୀଳସୁନ୍ଦର ପର୍ବତକୁ ମାଧବ ଉପାସନାର ସର୍ବ-ପ୍ରଥମ (ପ୍ରାଚୀନ) ପୀଠ ରୂପେ ସ୍ୱୀକାର କରାଯାଇଛି ।

ପୁରାଣ ବର୍ଣ୍ଣିତ ନୀଳମାଧବ ଜନଶ୍ରୁତିର ବିଶ୍ଳେଷଣ କରି ଗୟା ଚରଣ ତ୍ରିପାଠୀ ମତ ଦେଇଥିଲେ :

"In the beginning of the present millenium, therefore, when the worshippers of Jagannath felt the need and the necessity to explain to themselves and to others this strange form and the wooden character of the deity, they naturally thought first of Nila Madhava which was the most common form the Vishnu in those days.They claimed and propagated that their Jagannath had not all along been so. He was originally a Nila Madhava of stone which stood under the shade of a tree and was worshipped by the chief of the Sabara race. X X X X It is quite obvious that in this legend the element of Nila Madhava has been brought in as a sort of apology born out of a certain lack of self confidence in worshipping the strange looking wooden statues. (୪) ଏହି ଚିନ୍ତାଧାରାକୁ ଡକ୍ଟର ଏଚ୍.ଭି. ଷ୍ଟିଟେନ୍‌କ୍ରୋନ୍ (H.v. Stietencron) ଏବଂ ଡକ୍ଟର

ଗଗନେନ୍ଦ୍ର ନାଥ ଦାଶ ନିଜ ନିଜର ଆଲୋଚନାରେ ମଧ୍ୟ ଗୁରୁତ୍ୱ ଦେଇଛନ୍ତି (୫) ।

କିନ୍ତୁ ନୀଳମାଧବ ଜନଶ୍ରୁତିର ଏପରି ଦୃଷ୍ଟିକୋଣରୁ ବିଶ୍ଳେଷଣ ଜନଶ୍ରୁତିର ଉଦ୍ଭବ ସମ୍ପର୍କରେ ବା ପ୍ରକୃତ ଘଟଣା ସମ୍ପର୍କରେ ଯଥାର୍ଥ ଉତ୍ତର ନୁହେଁ । ଏହାର ବିପକ୍ଷରେ ମଧ୍ୟ ଯୁକ୍ତି କରାଯାଇପାରେ ।

ଯଦି ଆଦିବାସୀ ବିଗ୍ରହ ଉପାସିତ ଏକ ଧର୍ମକ୍ଷେତ୍ରକୁ ବିଷ୍ଣୁ ବିଗ୍ରହ ଉପାସିତ ଧର୍ମପୀଠରେ ରୂପାନ୍ତର କରାଯାଇଥିବା ସତ୍ୟ ହୁଏ ଏବଂ ଏହା ମଧ୍ୟ ଖ୍ରୀଷ୍ଟୀୟ ଦଶମ-ଦ୍ୱାଦଶ ଶତକର ଲୋକମାନଙ୍କ ଜ୍ଞାତସାରର ତଥ୍ୟ ହୋଇଥାଏ, ତେବେ କିପରି ପୁରାଣ ବର୍ଣ୍ଣିତ ପ୍ରସଙ୍ଗ (ଏହା ନୀଳମାଧବଙ୍କର ପୀଠ)କୁ ସେମାନେ ଗ୍ରହଣ କରିନେଲେ ? ଦ୍ୱାଦଶ-ତ୍ରୟୋଦଶ ଶତାବ୍ଦୀରେ ଏହିପରି ପ୍ରଚାରକୁ ଅନ୍ୟମାନେ ଅସ୍ୱୀକାର କରିପାରିଥାଆନ୍ତେ; କିମ୍ବା ଏ ସମ୍ପର୍କିତ ବିବରଣୀକୁ ସନ୍ଦେହ କରିପାରିଥାଆନ୍ତେ । କିନ୍ତୁ ଜନଶ୍ରୁତିର ତଥ୍ୟକୁ ସମସ୍ତ ଲେଖକମାନେ ଗ୍ରହଣ କରିନେଇଛନ୍ତି । ଏହା ଜଣାଇଦିଏ ଯେ ପୁରୁଷୋତ୍ତମ କ୍ଷେତ୍ରରେ ସର୍ବ-ପ୍ରାଚୀନ ବା ସର୍ବ-ପ୍ରଥମ ଉପାସ୍ୟ ଦେବତା ନୀଳମାଧବ ବୋଲି ପ୍ରଚାର କରାଯାଇ ଏପରି ଏକ ଜନଶ୍ରୁତି ହୋଇନାହିଁ । ଏହି ଜନଶ୍ରୁତି ଏକ ନିର୍ଦ୍ଦିଷ୍ଟ ସମ୍ବାଦ ବହନ କରେ (ପ୍ରକାରାନ୍ତରରେ ଏକ ନିର୍ଦ୍ଦିଷ୍ଟ ତଥ୍ୟ ପ୍ରକାଶ କରେ) । ଏହି ତଥ୍ୟଟି ହେଲା-ଶବର ଉପାସିତ ଏକ ଧର୍ମକ୍ଷେତ୍ରରେ ମାଧବ ଉପାସନା ପ୍ରବର୍ତ୍ତନ କରିବାର ବିଫଳ ପ୍ରଚେଷ୍ଟା । ଏଣୁ ଜନଶ୍ରୁତିର ଅନ୍ୟ ଏକ ଦିଗ ଉପରେ ଦୃଷ୍ଟି ଦେଇ ବିଚାର କରାଯାଇପାରେ ।

ପୌରାଣିକ ଉପାଦାନରୁ ଜଣାଯାଏ ଯେ ବିଷ୍ଣୁଙ୍କର ଏକ ପ୍ରସିଦ୍ଧ ପୀଠ ସମୁଦ୍ର କୂଳରେ ଅବସ୍ଥିତ (୬) । ଏହିପରି ଏକ କ୍ଷେତ୍ର ଉତ୍କଳରେ ଥିଲା । କିନ୍ତୁ ଶତାବ୍ଦୀ ଶତାବ୍ଦୀଧରି ଏହି କ୍ଷେତ୍ରଟି ଏକ ଆଦିବାସୀ ସମ୍ପ୍ରଦାୟ ଦେବତାଙ୍କର ଉପାସନା ପୀଠ ରୂପେ ସର୍ବଭାରତୀୟ ସ୍ତରରେ ଖ୍ୟାତିଲାଭ କରିଥିଲା । ସମ୍ଭବତଃ ଖ୍ରୀଷ୍ଟୀୟ ନବମ-ଦଶମ ଶତାବ୍ଦୀ ବେଳକୁ ଏହି ପୀଠକୁ ବିଷ୍ଣୁ-ପୁରୁଷୋତ୍ତମ ପୀଠ ରୂପେ ସ୍ୱୀକାର କରାଯାଇଥିଲା । ବିଷ୍ଣୁ-ପୁରୁଷୋତ୍ତମ କ୍ଷେତ୍ର ରୂପେ ପରିଚିତ ହେଲେ ମଧ୍ୟ ଏଠାରେ ଉପାସିତ ଆଦିବାସୀ ବିଗ୍ରହକୁ ହିନ୍ଦୁକରଣ/ଆର୍ଯ୍ୟକରଣ ପ୍ରକ୍ରିୟା ଦ୍ୱାରା ଆର୍ଯ୍ୟଦେବତା ରୂପେ ସ୍ୱୀକାର କରାଯାଇଥିଲା । ଆଦିବାସୀ ବିଗ୍ରହର ସମ୍ପୂର୍ଣ୍ଣ ଆର୍ଯ୍ୟକରଣ ଅପେକ୍ଷା କ୍ରମ ଆର୍ଯ୍ୟକରଣ ସେତେବେଳେ ସମ୍ଭବ ହୋଇଥିଲା । ଏହି କ୍ରମ ଆର୍ଯ୍ୟକରଣ (Gradual Hinduization) ପରେ ଆଦିବାସୀ ବିଗ୍ରହକୁ ବିଷ୍ଣୁ-ପୁରୁଷୋତ୍ତମ ବୋଲି

ନାମିତ କରାଗଲା ଏବଂ ଭାରତୀୟ ଧର୍ମଧାରଣା ଏହାକୁ ଗ୍ରହଣ କରିନେଲା । ତେବେ ଓଡ଼ିଶାର ଧର୍ମଧାରଣାରେ ଆଦିବାସୀ ବିଗ୍ରହର ଅସମ୍ପୂର୍ଣ୍ଣ ଆର୍ଯ୍ୟକରଣ (Gradual Hinduization) ପ୍ରାରମ୍ଭିକ ପର୍ଯ୍ୟାୟରେ ଗୃହୀତ ହୋଇପାରି ନଥିଲା ।

ବରଂ ଏପରି ଭାବରେ ବିଷ୍ଣୁ ଉପାସନାକୁ (ଆଦିବାସୀ ବିଗ୍ରହକୁ ହିନ୍ଦୁକରଣ ପ୍ରକ୍ରିୟା ଦ୍ୱାରା ରୂପ ପରିବର୍ତ୍ତନ କରି ପରିବର୍ତ୍ତିତ ବିଗ୍ରହ ପୁରୁଷୋତ୍ତମ ନାମରେ ପୂଜାକୁ) ଓଡ଼ିଶାରେ ବିରୋଧ କରାଯାଇଥିବାର ଅନୁମାନ କରାଯାଇପାରେ । ପୁଣି ଏହି ବିଗ୍ରହ ସମ୍ପୂର୍ଣ୍ଣ ହିନ୍ଦୁ ମୂର୍ତ୍ତିରେ ରୂପାନ୍ତରିତ ହୋଇ ନଥିବାରୁ ଓଡ଼ିଶାର ଲୋକମାନେ ଏପରି ମୂର୍ତ୍ତିକୁ (ବିଷ୍ଣୁ ମୂର୍ତ୍ତିତତ୍ତ୍ୱ ଦୃଷ୍ଟିକୋଣରୁ) ଗ୍ରହଣ କରିନଥିଲେ । ବିଷ୍ଣୁ କ୍ଷେତ୍ର ସହିତ ସଂଶ୍ଳିଷ୍ଟ ପ୍ରାଚୀ କୁଶଭଦ୍ରା ଅଞ୍ଚଳ ଏ ଦିଗରେ ତତ୍ପର ହୋଇ ଉଠିଲା । ପୁରୁଷୋତ୍ତମ କ୍ଷେତ୍ରରେ ଏକ ବିବର୍ତ୍ତିତ ଆଦିବାସୀ ବିଗ୍ରହକୁ ପୁରୁଷୋତ୍ତମ-ବିଷ୍ଣୁ ରୂପରେ ପୂଜା କରିବା ଅପେକ୍ଷା ମାଧବ ରୂପରେ ପୂଜା କରିବାକୁ ସେମାନଙ୍କ ଦ୍ୱାରା ଉଦ୍ୟମ ଆରମ୍ଭ ହେଲା । ପୁରୁଷୋତ୍ତମ କ୍ଷେତ୍ରରେ ମାଧବ-ବିଷ୍ଣୁଙ୍କର ଉପାସନା (ମୁଖ୍ୟବିଗ୍ରହ ଆକାରରେ) ବ୍ରାହ୍ମଣମାନେ ଏବଂ ରାଜଶକ୍ତି ଗ୍ରହଣ କରିପାରି ନଥିଲେ । ସେମାନେ ଏହି କ୍ଷେତ୍ରରେ ପୂର୍ବ ପରିଚିତ ଆଦିବାସୀ ବିଗ୍ରହ ତତ୍ତ୍ୱକୁ ଆର୍ଯ୍ୟ ବିଷ୍ଣୁତତ୍ତ୍ୱ ମଧ୍ୟରେ ଗର୍ଭିତ କରି ପୂଜା କରିବାକୁ ଉଦ୍ୟମ କଲେ । ଏହାଦ୍ୱାରା ଆଦିବାସୀ ଧର୍ମତତ୍ତ୍ୱକୁ ବ୍ରାହ୍ମଣ୍ୟ ଧର୍ମ ତତ୍ତ୍ୱରେ ଗର୍ଭିତ କରାଯାଇ ଉଭୟ ଧର୍ମଧାରାକୁ ପ୍ରାଧାନ୍ୟ ଦିଆଯାଇଥିଲା । ଆଦିବାସୀ ସମ୍ପ୍ରଦାୟ ସେମାନଙ୍କର ବିଗ୍ରହ ଉପାସନାରୁ ବଞ୍ଚିତ ହୋଇ ନଥିଲେ, ଯଦିବା ହିନ୍ଦୁକରଣ ଦ୍ୱାରା ମୂଳ ଆଦିବାସୀ ବିଗ୍ରହର କିଛି ପରିବର୍ତ୍ତନକୁ ସେମାନଙ୍କୁ ଗ୍ରହଣ କରିବାକୁ ପଡ଼ିଥିଲା । ଏହା ଫଳରେ ଓଡ଼ିଶାର ଲୋକମାନଙ୍କର ବିଶେଷତଃ ପ୍ରାଚୀ-କୁଶଭଦ୍ରା ଅଞ୍ଚଳ ଲୋକମାନଙ୍କର (ରାଜଶକ୍ତି/ବ୍ରହ୍ମଣ୍ୟ ଶକ୍ତି ଇତ୍ୟାଦି) ମାଧବଙ୍କୁ ପୁରୁଷୋତ୍ତମ କ୍ଷେତ୍ରରେ ମୁଖ୍ୟଦେବତା ରୂପରେ ପ୍ରତିଷ୍ଠା କରିବାର ଉଦ୍ୟମ ବିଫଳ ହୋଇଥିଲା । ଏହି ବିଫଳ ପ୍ରଚେଷ୍ଟା ପୁରାଣ ଲେଖକମାନଙ୍କ ଦ୍ୱାରା ବ୍ୟବହାର କରାଯାଇ ପୁରାଣରେ ପୁରୁଷୋତ୍ତମ କ୍ଷେତ୍ରରେ ମାଧବ ତତ୍ତ୍ୱର ଅସାରତା ପ୍ରସଙ୍ଗରେ ସୂଚିତ ।

ପୁରୁଷୋତ୍ତମ କ୍ଷେତ୍ରରେ ଏକ ଆଦିବାସୀ ବିଗ୍ରହର ବିବର୍ତ୍ତିତ ରୂପକୁ ବିଷ୍ଣୁ-ପୁରୁଷୋତ୍ତମ ବୋଲି ପୂଜା କରାଯିବାରୁ ଖ୍ରୀଷ୍ଟୀୟ ଏକାଦଶ-ଦ୍ୱାଦଶ ଶତକରେ ଓଡ଼ିଶାରେ ଅନ୍ୟ କୌଣସି ତୀର୍ଥ ସ୍ଥାନରେ ଏପରି ମୂର୍ତ୍ତିର ଆଦର ବା ଉପାସନା କରାଯାଇ ନଥିଲା । ଏହିପରି ମୂର୍ତ୍ତି ଉପାସନା କେବଳ ପୁରୁଷୋତ୍ତମ କ୍ଷେତ୍ରରେ ସୀମିତ

ଥିଲା । ଅନ୍ୟପକ୍ଷରେ ପ୍ରାଚୀଅଞ୍ଚଳ ତଥା ଓଡ଼ିଶାର ଅନ୍ୟ ଧର୍ମକ୍ଷେତ୍ରମାନଙ୍କରେ ମାଧବ ତତ୍ତ୍ୱର ସଂପ୍ରସାରଣ ପାଇଁ ଉଦ୍ୟମ କରାଯାଇଥିଲା । ମନେହୁଏ ପୁରୁଷୋତ୍ତମ କ୍ଷେତ୍ରରେ ପୂଜିତ ହିନ୍ଦୁକରଣ ଦ୍ୱାରା ପରିବର୍ତ୍ତିତ ଆଦିବାସୀ ବିଗ୍ରହ (ଯାହା ପୁରୁଷୋତ୍ତମ ନାମରେ ପରିଚିତ ଥିଲା) ବିରୁଦ୍ଧରେ ମାଧବ ଉପାସନାକୁ ଏହି କାଳରେ ଓଡ଼ିଶାରେ ବିଶେଷ ଗୁରୁତ୍ୱ ଦିଆଯାଇଥିଲା । ପୁରୁଷୋତ୍ତମ କ୍ଷେତ୍ରରେ ପୂଜିତ ବିଗ୍ରହ ବିଷ୍ଣୁମୂର୍ତ୍ତି ତତ୍ତ୍ୱ ସହିତ ମେଳ ଖାଉ ନଥିବାରୁ; କିନ୍ତୁ ମାଧବ ବିଷ୍ଣୁଙ୍କର ଏକ ଜନପ୍ରିୟ ମୂର୍ତ୍ତି ରୂପେ ସମଗ୍ର ଭାରତ ବର୍ଷରେ ପରିଚିତ ଥିବାରୁ ଏହାର ଆଦର ଓଡ଼ିଶାରେ ଥିଲା ।

ପୁରୁଷୋତ୍ତମ କ୍ଷେତ୍ରରେ ମାଧବଙ୍କୁ ମୁଖ୍ୟ ଦେବତା ରୂପେ ପ୍ରତିଷ୍ଠା କରିବାର ଉଦ୍ୟମ ସଫଳ ହୋଇ ନଥିଲେ ମଧ ପ୍ରାଚୀ ତଥା ପୁରୁଷୋତ୍ତମ କ୍ଷେତ୍ରର ପାଖାପାଖି ଅଞ୍ଚଳର ଲୋକମାନେ ନିରୁତ୍ସାହିତ ହୋଇ ନଥିଲେ । ସେମାନେ ମାଧବଙ୍କୁ ଏହି କ୍ଷେତ୍ରରେ ପ୍ରତିଷ୍ଠା କରିବାର ଉଦ୍ୟମ ଅବ୍ୟାହତ ରଖିଥିଲେ । ସେମାନେ ପୁଣି ଦ୍ୱାଦଶ ଶତାବ୍ଦୀରେ ରାଜା ମାଧବଙ୍କ ରାଜତ୍ୱ କାଳରେ ମାଧବଙ୍କୁ ଏହି କ୍ଷେତ୍ରର ମୁଖ୍ୟ ଦେବତା ରୂପେ ସ୍ୱୀକାର କରିବାକୁ ଉଦ୍ୟମ କରିଥିଲେ । ସାରଳା ମହାଭାରତ, ସ୍କନ୍ଦ ପୁରାଣର ପୁରୁଷୋତ୍ତମ ଖଣ୍ଡ, ନୀଳାଦ୍ରି ମହୋଦୟ ଏବଂ ଦେଉଳତୋଳା ପରି ମଧ୍ୟଯୁଗୀୟ ପୌରାଣିକ ଉପାଦାନରେ ପୁରୁଷୋତ୍ତମ କ୍ଷେତ୍ରରେ ମାଧବ ଉପାସନା କରିଥିବା ରାଜା ଗାଲ/ଗାଲମାଧବ ସମ୍ପର୍କରେ ବର୍ଣ୍ଣନା ରହିଛି । (୬କ) ସାରଳା ମହାଭାରତର ମୂଷଳୀ ପର୍ବକୁ ବାଦ ଦେଲେ ଅନ୍ୟ ସମସ୍ତ ସାହିତ୍ୟିକ ଉପାଦାନରେ ଇନ୍ଦ୍ରଦ୍ୟୁମ୍ନ ପୁରୁଷୋତ୍ତମ କ୍ଷେତ୍ରରେ ବୃହଦ୍ ମନ୍ଦିର ନିର୍ମାଣ କରାଇବା କାଳରେ ମନ୍ଦିର ପ୍ରତିଷ୍ଠା ଉତ୍ସବର ପୁରୋଧା ହିସାବରେ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବାକୁ ବ୍ରହ୍ମଲୋକକୁ ଯାତ୍ରା କରିଥିଲେ ବୋଲି ବର୍ଣ୍ଣନା ରହିଛି । ଏହି ଅବସରରେ ଅର୍ଥାତ୍ ପୁରୁଷୋତ୍ତମ କ୍ଷେତ୍ରରେ ଇନ୍ଦ୍ରଦ୍ୟୁମ୍ନଙ୍କର ଅନୁପସ୍ଥିତର ସୁଯୋଗ ନେଇ ରାଜା ଗାଲ/ଗାଲମାଧବ ମାଧବ ଉପାସନା ଏଠାରେ ପ୍ରବର୍ତ୍ତନ କଲେ । ବ୍ରହ୍ମଲୋକରୁ ବ୍ରହ୍ମାଙ୍କ ସହିତ ଇନ୍ଦ୍ରଦ୍ୟୁମ୍ନଙ୍କର ପ୍ରତ୍ୟାବର୍ତ୍ତନ ପରେ ଗାଲ/ଗାଲମାଧବ କ୍ରୋଧାନ୍ୱିତ ହେଲେ; କାରଣ ମନ୍ଦିରଟି ଏହି କାଳରେ ତାଙ୍କର ପ୍ରତ୍ୟକ୍ଷ ଅଧୀନକୁ ଆସିଯାଇଥିଲା । କିନ୍ତୁ ସେ ଯେତେବେଳେ ଇନ୍ଦ୍ରଦ୍ୟୁମ୍ନଙ୍କର ପୁରୁଷୋତ୍ତମ କ୍ଷେତ୍ରରେ ପ୍ରତିଷ୍ଠା ଉତ୍ସବ ପାଇଁ ବ୍ୟାପକ ପ୍ରସ୍ତୁତି ଲକ୍ଷ୍ୟ କଲେ, ସେ ସେହି ପରିସ୍ଥିତିକୁ ଗ୍ରହଣ କରିନେଲେ । ସ୍କନ୍ଦ ପୁରାଣର ପୁରୁଷୋତ୍ତମ ଖଣ୍ଡ ଏବଂ ନୀଳାଦ୍ରି ମହୋଦୟ ଗ୍ରନ୍ଥରେ ଗାଲମାଧବ-ଇନ୍ଦ୍ରଦ୍ୟୁମ୍ନ ବିବାଦ ଏବଂ ସୁସମ୍ପର୍କର ବିବରଣୀ ସ୍ଥାନ ପାଇଛି ।

କିନ୍ତୁ ଦେଉଳ ତୋଳାରେ ଏହି ବିବାଦର ସାମାଜିକ ଦିଗ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଥିବାର ଜଣାଯାଇଛି (୭)। ସାରଳା ଦାସ ଇନ୍ଦ୍ରଦ୍ୟୁମ୍ନ ଗାଲମାଧବଙ୍କ ମଧ୍ୟରେ ବିବାଦର ପ୍ରସଙ୍ଗ ସମ୍ପର୍କରେ ନୀରବ । ଏହି ସମସ୍ତ ସାହିତ୍ୟିକ ଉପାଦାନରେ ବିଭିନ୍ନ ଦୃଷ୍ଟିକୋଣରୁ ସତ୍ୟକୁ ସ୍ୱୀକାର କରାଯାଇଛି ଏବଂ ଆଦିବାସୀ ସମ୍ପ୍ରଦାୟ ଉପାସିତ ପୁରୁଷୋତ୍ତମ କ୍ଷେତ୍ରକୁ ଆର୍ଯ୍ୟାୟନ ହୋଇଥିବା ଏବଂ ପୁରୁଷୋତ୍ତମ ନାମରେ ପରିଚିତ ହୋଇଥିବା ଏକ ଆଦିବାସୀ ବିଗ୍ରହର ପୂଣ୍ୟ ପୀଠ କରିବା ଅପେକ୍ଷା ବିଷ୍ଣୁଙ୍କର ଏକ ପାଷାଣ ବିଗ୍ରହ ନୀଳମାଧବଙ୍କୁ ଏହି ପୀଠରେ ମୁଖ୍ୟଦେବତା ହିସାବରେ ପ୍ରତିଷ୍ଠା କରିବା ପାଇଁ ବିଫଳ ଉଦ୍ୟମକୁ ଉପସ୍ଥାପନ କରିବା ଥିଲା ଏହି ସକଳ ଉପାଦାନରେ ବର୍ଣ୍ଣିତ ଏହି ପ୍ରସଙ୍ଗର ମୂଳ ଲକ୍ଷ୍ୟ । ତେଣୁ ସାରଳା ଦାସ ପ୍ରାକ୍-ମାଧବ କାଳର (ଖ୍ରୀ: ୯ମ-ଦଶମ) ପୁରୁଷୋତ୍ତମ କ୍ଷେତ୍ରରେ ମାଧବ ଉପାସନା ପ୍ରବର୍ତ୍ତନ କରିବା ପାଇଁ ଉଦ୍ୟମ ଏକାଦଶ ଶତକର ଶେଷ ପର୍ଯ୍ୟାୟ ବା ଦ୍ୱାଦଶ ଶତକର ଆଦି ପର୍ଯ୍ୟାୟରେ ରାଜା ମାଧବଙ୍କ ଦ୍ୱାରା ପୁରୁଷୋତ୍ତମ କ୍ଷେତ୍ରରେ ମାଧବଙ୍କ ଉପାସନା ପାଇଁ ଉଦ୍ୟମ ଏକତ୍ରିତ କରି (ସମନ୍ୱିତ କରି) ଦେଇଥିଲେ । ପୁରୁଷୋତ୍ତମ କ୍ଷେତ୍ରରେ ମାଧବ ଉପାସନା ଉପରେ ଗୁରୁତ୍ୱ ଦ୍ୱାଦଶ ଶତକ ପର୍ଯ୍ୟନ୍ତ ଦିଆଯାଇ ନଥିବାର ଅଭ୍ରାନ୍ତ ତଥ୍ୟକୁ ଉପସ୍ଥାପନ କରିବା ଥିଲା ଏହିପରି ଘଟଣାବଳୀକୁ ସମନ୍ୱିତ କରିବାର ମୁଖ୍ୟ ଉଦ୍ଦେଶ୍ୟ । ସାରଳା ମହାଭାରତରେ ଗାଲମାଧବଙ୍କର ମୃତ୍ୟୁପରେ ପୁରୁଷୋତ୍ତମ କ୍ଷେତ୍ରରେ ମାଧବ ଉପାସନା ସମ୍ପର୍କରେ ବିବରଣୀ ନାହିଁ । ଅନ୍ୟ ପକ୍ଷରେ ଏହି ଗ୍ରନ୍ଥ ଗାଲମାଧବ ମୃତ୍ୟୁପରେ ନୀଳଗିରିରେ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ବୃହତ୍ ମନ୍ଦିର ନିର୍ମାଣ କାର୍ଯ୍ୟ ଏବଂ ସେଠାରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏବଂ ସୁଦର୍ଶନ ଏହିପରି ଚତୁର୍ଦ୍ଧା ମୂର୍ତ୍ତି ଉପାସନା ସମ୍ପର୍କରେ ବିବରଣୀ ଦିଏ । ଅନ୍ୟ ଉପାଦାନମାନଙ୍କରେ ନିମ୍ନ ପ୍ରକାରରେ ଏହି ଐତିହାସିକ ଘଟଣାର ବିବରଣୀ ସ୍ଥାନ ପାଇଛି ।

(କ) ପୁରୁଷୋତ୍ତମ କ୍ଷେତ୍ରରେ ମାଧବ ଉପାସନା ପ୍ରବର୍ତ୍ତନ କରିବାର ପ୍ରାରମ୍ଭିକ ଉଦ୍ୟମ ସଫଳ ହୋଇ ପାରିନଥିଲା; କାରଣ ଇନ୍ଦ୍ରଦ୍ୟୁମ୍ନ ମାଳବରୁ ଆସିବା ପରେ ନୀଳମାଧବ ବାଲୁକାରେ ହଜି ଯାଇଥିବାରୁ ତାହାଙ୍କୁ ଆଉ ଦେଖିପାରି ନଥିଲେ । ତାଙ୍କର ମନ୍ଦିରଟି ମାଧବଙ୍କ ପାଇଁ ଉଦ୍ଦିଷ୍ଟ ହୋଇ ନଥିଲା । ଏହା ଦାରୁବିଗ୍ରହ (କାଷ୍ଠ ବିଗ୍ରହ) ଉପାସନା ପାଇଁ ଉଦ୍ଦିଷ୍ଟ ହେଲା ।

(ଖ) ଇନ୍ଦ୍ରଦ୍ୟୁମ୍ନ ବୃହତ୍ ମନ୍ଦିର ନିର୍ମାଣ ଆରମ୍ଭ କଲେ ।

କିନ୍ତୁ ମନ୍ଦିର ନିର୍ମାଣ କାଳରେ ସେ ବ୍ରହ୍ମାଙ୍କୁ ମନ୍ଦିର ପ୍ରତିଷ୍ଠା ଉତ୍ସବରେ ପୁରୋଧା ହିସାବରେ ନିମନ୍ତ୍ରଣ କରିବାକୁ ବ୍ରହ୍ମଲୋକକୁ ଯାତ୍ରା କରିଥିଲେ । ଏହି କାଳରେ ପୁରୁଷୋତ୍ତମ କ୍ଷେତ୍ରରେ ମାଧବ ଉପାସନା ପୂନର୍ବାର ଆରମ୍ଭ ହୋଇଥିଲା । କିନ୍ତୁ ପରିଶେଷରେ ଇନ୍ଦ୍ରଦ୍ୟୁମ୍ନ ବୃହତ୍ ମନ୍ଦିର ନିର୍ମାଣ କାର୍ଯ୍ୟରେ ସଫଳ ହୋଇଥିଲେ ଏବଂ ସେଠାରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏବଂ ସୁଦର୍ଶନଙ୍କର ଦାରୁବିଗ୍ରହ ଅଧିଷ୍ଠିତ କରାଇଥିଲେ । ଏହିପରି ସେଠାରେ ମାଧବ ଉପାସନା ସଫଳ ହୋଇପାରି ନଥିଲା ।

ପୁରୁଷୋତ୍ତମ କ୍ଷେତ୍ରରେ ଗାଲ/ଗାଲମାଧବଙ୍କ ଦ୍ୱାରା ମାଧବ ଉପାସନା ପାଇଁ ହୋଇଥିବା ଉଦ୍ୟମର ଐତିହାସିକ ସତ୍ୟତା ରହିଛି । ପୂରାଣ/ଜନଶ୍ରୁତି ପ୍ରସିଦ୍ଧ ଏହି ଗାଲମାଧବଙ୍କୁ ଶୋଭନେଶ୍ୱର ମନ୍ଦିରର ଶିଳା ଲିପିରେ ଲିଖିତ ରାଜା ବୈଦ୍ୟନାଥଙ୍କର ପିତା ମାଧବଙ୍କ ସହିତ ଚିହ୍ନିତ କରିବାରେ ଅନେକ ଯୁକ୍ତି ରହିଛି (୮) । ଏହି ଶିଳାଲିପିରେ ବର୍ଣ୍ଣିତ ହୋଇଛି ଯେ ବୈଦ୍ୟନାଥ (ମାଧବଙ୍କ ପୁତ୍ର) ଭୁଜଙ୍ଗମ ପୁରୀ ନାମକ ରାଜଧାନୀରେ ଶାସନ କରୁଥିଲେ (୯) । ଏହି ଭୂଜଙ୍ଗମ ପୁରୀକୁ କୁଶଭଦ୍ରା ନଦୀକୂଳର କକୋଦର ପୁର ସହିତ ଚିହ୍ନିତ କରାଯାଇଛି (୧୦) । ରାଜା ମାଧବଙ୍କୁ ପ୍ରାଚୀ ସମିତି ସଙ୍କଳିତ ମାଦଳା ପାଞ୍ଜିର ରାଜ ଚରିତରେ ଥିବା ମାଧବକେଶରୀ ସହିତ ଚିହ୍ନିତ କରାଯାଇପାରେ (୧୧) । ଷ୍ଟାରଲିଂ, ହଣ୍ଟର, ଜଗବନ୍ଧୁ ସିଂହ ପ୍ରଭୃତି ଐତିହାସିକ ମାନେ, କଟକ ରାଜବଂଶାବଳୀ ଏବଂ ଓଡ୍ରଦେଶ ରାଜ ବଂଶାବଳୀର ଲେଖକମାନେ ମଧ୍ୟ ମାଧବକେଶରୀ ନାମ ଉଲ୍ଲେଖ କରିଛନ୍ତି (୧୨) । ଏହି ସମସ୍ତ ଉପାଦାନର ତଥ୍ୟକୁ ଗ୍ରହଣ କଲେ ମନେହୁଏ ଯେ ରାଜା ମାଧବଙ୍କର ପ୍ରାଚୀ-କୁଶଭଦ୍ରା ଅଞ୍ଚଳ, ସାରଙ୍ଗଗଡ଼ ଠାରୁ ପୁରୁଷୋତ୍ତମ କ୍ଷେତ୍ର ମଧ୍ୟରେ ଥିବା ଅଞ୍ଚଳ ଏବଂ ଏପରିକି ପୁରୁଷୋତ୍ତମ କ୍ଷେତ୍ର ଉପରେ ପ୍ରତ୍ୟକ୍ଷ କର୍ତ୍ତୃତ୍ୱ ଥିଲା । ପୁରୁଷୋତ୍ତମ କ୍ଷେତ୍ରରେ ରାଜା ମାଧବ ମାଧବ-ଉପାସନା କରାଇଥିବାର କ୍ଷୀଣ ସୂଚନା ମଧ୍ୟ କେତେକ ଉପାଦାନରେ ସ୍ଥାନପାଇଛି (୧୩) । ମାଦଳାପାଞ୍ଜିରେ ଏହି ରାଜା ମାଧବଙ୍କୁ କେଶରୀ ବଂଶ ତାଲିକାରେ ଗ୍ରହଣ କରାଯାଇଛି (୧୪) । ପ୍ରକୃତରେ ଓଡ଼ିଶାରେ ଗଙ୍ଗବଂଶର ସ୍ଥାପୟିତା ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ ପୂର୍ବରୁ ଅଧିକାଂଶ ରାଜା ମାଦଳାପାଞ୍ଜିରେ କେଶରୀ ବଂଶ ଅନ୍ତର୍ଗତ ବୋଲି ବର୍ଣ୍ଣନା କରାଯାଇଛି । ମାଧବ ସୋମବଂଶୀ ଶାସନର ଶେଷ ପର୍ଯ୍ୟନ୍ତ ଜଣେ ସାମନ୍ତରାଜା ଥିଲେ ବୋଲି ଅନୁମାନ କରାଯାଇପାରେ । ସେ ପ୍ରାଚୀ-କୁଶଭଦ୍ରା ଅଞ୍ଚଳରେ ନିଜର ଶାସନର ପ୍ରାଣକେନ୍ଦ୍ର ସ୍ଥାପନ କରିଥିଲେ ଏବଂ

ତାଙ୍କ ଅଧୀନରେ ପୁରୀ, ଭୁବନେଶ୍ୱର ଅଞ୍ଚଳ ରହିଥିଲା । ମାଦଳାପାଞ୍ଜିର ରାଜଚରିତ ଅନୁସାରେ ସେ କେଶରୀ ବଂଶ ଅନ୍ତର୍ଗତ ହେବା ସ୍ୱାଭାବିକ । ନୀଳାଦ୍ରୀ ମହୋଦୟ ତାଙ୍କୁ ବିରଜା ମଣ୍ଡଳର ରାଜା ବୋଲି ସ୍ୱୀକାର କରେ । କାରଣ ସେ ଥିଲେ ବିରଜା ଅଞ୍ଚଳରେ ଶାସନ କରୁଥିବା ପରବର୍ତ୍ତୀ ସୋମବଂଶୀ ରାଜାମାନଙ୍କର ଅଧୀନସ୍ଥ ସାମନ୍ତ ରାଜା । ସାରଳା ମହାଭାରତର ମୂଷଳୀ ପର୍ବରେ ତାଙ୍କୁ କାଞ୍ଚିଦେଶର ରାଜା ବୋଲି ପ୍ରକାଶ କରାଯାଇଛି । ଏହାର ଅନ୍ୟ ଏକ କାରଣ ଅଛି । ଚୋଡ଼ଗଙ୍ଗଙ୍କ ଉତ୍କଳ ବିଜୟ କାଳରେ ମାଧବ ନିଜ ଶାସିତ ଅଞ୍ଚଳରେ ସ୍ୱାଧୀନ ଶାସକ ରୂପେ ନିଜକୁ ପ୍ରକାଶ କରିଥିବେ ଏବଂ ସେ ଚୋଡ଼ଗଙ୍ଗଙ୍କୁ ସମର୍ଥନ କରି ସୋମବଂଶୀ କେଶରୀ କ୍ଷମତା ବିରୁଦ୍ଧରେ ମୁଣ୍ଡଟେକିଥିବେ । ମାଦଳାପାଞ୍ଜିରେ ଚୋଡ଼ଗଙ୍ଗ କର୍ଣ୍ଣାଟ ଦେଶରୁ ଆସିଥିବା କଥା ପ୍ରକାଶ ପାଇପାରିଲା ଏବଂ ଯେହେତୁ ରାଜା ମାଧବ ଚୋଡ଼ଗଙ୍ଗଙ୍କୁ ଉତ୍କଳ ବିଜୟ କାଳରେ ସମର୍ଥନ ଜଣାଇଥିଲେ, ସାରଳାଦାସ ତାଙ୍କୁ ମଧ୍ୟ କାଞ୍ଚିଦେଶ ରାଜା ବୋଲି ପ୍ରକାଶ କରିଥିଲେ (୨୫) । କାରଣ କାଞ୍ଚି ମଧ୍ୟ କର୍ଣ୍ଣାଟ ଦେଶ ଦିଗରେ ଅବସ୍ଥିତ । ଯଦିବା ମାଧବ ଓଡ଼ିଶାର ଅଧିବାସୀ ଥିଲେ, ତଥାପି ଜନଶ୍ରୁତିରେ ତାଙ୍କ ସ୍ଥାନ ସମ୍ପର୍କରେ ବିଭ୍ରାନ୍ତି ରହିଗଲା ।

ପ୍ରାଚୀ-କୁଶଭଦ୍ରା ଅଞ୍ଚଳରେ ଶାସନ କରୁଥିବା ମାଧବଙ୍କୁ ଜନଶ୍ରୁତି/ପୁରାଣ ଚର୍ଚ୍ଚିତ ମାଧବଙ୍କ ସହିତ ଚିହ୍ନିତ କରିବା ପରେ ତାଙ୍କର ଗାଲ ଉପାଧି ଏବଂ ପୁରୁଷୋତ୍ତମ କ୍ଷେତ୍ରରେ ମାଧବ ଉପାସନା ପ୍ରବର୍ତ୍ତନ ପ୍ରସଙ୍ଗ ଉପରେ ଆଲୋଚନା କରାଯାଇପାରେ । ପୂର୍ବ ଆଲୋଚନା ଅନୁସାରେ ଆର୍ଯ୍ୟକରଣ ଦ୍ୱାରା ଆଦିବାସୀ ବିଗ୍ରହରୁ ପରିବର୍ତ୍ତିତ ହୋଇ ପୁରୁଷୋତ୍ତମ ନାମରେ ପୂଜିତ ବିଗ୍ରହ ଉତ୍କଳର ସମୁଦ୍ର କୂଳରେ ପୁରୁଷୋତ୍ତମ କ୍ଷେତ୍ରରେ ଉପାସିତ ହେଲେ, ଯଦିବା ଓଡ଼ିଶାରେ ଏହି ସ୍ଥାନରେ ମାଧବ ଉପାସନା ପାଇଁ ଉଦ୍ୟମ କରାଯାଇଥିଲା । ପୁରୁଷୋତ୍ତମଙ୍କର ପ୍ରଥମ ମନ୍ଦିର ସମୁଦ୍ର କୂଳର ଏକ ସ୍ଥାନରେ ଥିଲା ଏବଂ ଏହି ସ୍ଥାନଟି ଚୋଡ଼ଗଙ୍ଗଙ୍କ ମନ୍ଦିର ନିର୍ମାଣ ପାଇଁ ନିର୍ବାଚିତ ସ୍ଥାନ ଠାରୁ ସ୍ୱତନ୍ତ୍ର ଥିଲା । ସମ୍ଭବତଃ ଏକାଦଶ ଶତକର ମଧ୍ୟଭାଗ ମଧ୍ୟରେ ସୋମବଂଶୀ ନୃପତି ଦ୍ୱିତୀୟ ଯଯାତି ଚଣ୍ଡୀହର ପ୍ରଥମେ ଦ୍ୱିତୀୟ ସ୍ଥାନରେ ଅର୍ଥାତ୍ ବର୍ତ୍ତମାନର ବୃହତ୍ ମନ୍ଦିର ଥିବା ସ୍ଥାନରେ ଏକ ମନ୍ଦିରର କିଛି ଅଂଶ ନିର୍ମାଣ କରାଇଥିଲେ । (ପରେ ଚୋଡ଼ଗଙ୍ଗଙ୍କ ରାଜତ୍ୱ କାଳରେ ଏହି ଅସମ୍ପୂର୍ଣ୍ଣ ମନ୍ଦିରକୁ ଭୂତଳଶାୟୀ କରାଯାଇ ବୃହତ୍ ମନ୍ଦିର ନିର୍ମାର କରାଗଲା) (୧୭) । ଯଯାତିଙ୍କର ଅଳ୍ପକାଳ ଶାସନ ଯୋଗୁଁ ମନ୍ଦିର

ନିର୍ମାଣ ସମ୍ପୂର୍ଣ୍ଣ ହୋଇପାରି ନଥିଲା ଏବଂ ପରେ ପରେ ଅନ୍ୟ ସୋମବଂଶୀ ରାଜାମାନେ ଏଥିପ୍ରତି ଉଦାସୀନ ରହିଯିବାରୁ ଏହି ସ୍ଥାନଟିରେ ପୁରୁଷୋତ୍ତମ ଉପାସନା କରାଯାଇ ନଥିଲା । ସମ୍ଭବତଃ ଏକାଦଶ ଶତକର ଶେଷଦଶନ୍ଧିରେ ରାଜା ମାଧବ ଏହି ପୁରୁଷୋତ୍ତମ କ୍ଷେତ୍ର ଉପରେ କର୍ତ୍ତୃତ୍ୱ ବିସ୍ତାର କରିଥିଲେ । ଏହି କାଳରେ ସେ ପୁରୁଷୋତ୍ତମ କ୍ଷେତ୍ରରେ ସମୁଦ୍ର କୂଳରେ ଉପାସିତ ଆଦିବାସୀ ବିଗ୍ରହରୁ ହିନ୍ଦୁ ବିଗ୍ରହରେ ରୂପାନ୍ତରିତ (ଆର୍ଯ୍ୟକରଣ ଦ୍ୱାରା) ପୁରୁଷୋତ୍ତମ ବିଗ୍ରହ ଉପାସନାକୁ ବନ୍ଦ କରିବାକୁ ଉଦ୍ୟମ କରିଥିଲେ । ପୁରୁଷୋତ୍ତମ କ୍ଷେତ୍ରରେ ଅବ୍ରାହ୍ମଣ ଉପାସକମାନେ ସେତେବେଳେ ଏହି ମାଧବ ଉପାସନାକୁ ସେଠାରେ ଗ୍ରହଣ କରି ନଥିଲେ; କାରଣ ମାଧବ ଉପାସନା ଦ୍ୱାରା ସେମାନେ ସେବା ପୂଜାରୁ ବଞ୍ଚିତ ହୋଇପଡ଼ିବେ । ଏପରି ମଧ୍ୟ କୁହାଯାଇପାରେ ଯେ ରାଜା ମାଧବ ଏହି ସମସ୍ତ ଅବ୍ରାହ୍ମଣ ପୂଜକମାନଙ୍କୁ କ୍ଷେତ୍ରରୁ ବିତାଡ଼ନ କରିବାକୁ ଉଦ୍ୟମ କରିଥିଲେ ଯାହା ସଫଳ ହୋଇ ପାରିନଥିଲା । ସମ୍ଭବତଃ ଏହି କାଳରେ ବିଶିଷ୍ଟାଦ୍ୱୈତପନ୍ଥୀ ରାମାନୁଜ ପୁରୁଷୋତ୍ତମ କ୍ଷେତ୍ର ପର୍ଯ୍ୟଟନ କରିଥିଲେ ଏବଂ ସେ ମଧ୍ୟ ଏହି ବୈଷ୍ଣବ ପୀଠରେ ସଂସ୍କାର କାର୍ଯ୍ୟ କରାଇ ପାରି ନଥିଲେ (୧୮) । ତାଙ୍କ ସମ୍ପର୍କିତ ପରମ୍ପରା ଅନୁସାରେ ସେ ଏହି ଅଞ୍ଚଳର ରାଜାଙ୍କର ସମର୍ଥନ ନେଇ ପୁରୁଷୋତ୍ତମ କ୍ଷେତ୍ରରେ ସଂସ୍କାର ପାଇଁ ଉଦ୍ୟମ କରିଥିଲେ (୧୯) । ସମ୍ଭବତଃ ଏହି ରାଜା ପ୍ରାଚୀ-କୁଶଭଦ୍ରା ଅଞ୍ଚଳ ରାଜା ମାଧବ ହୋଇଥାଇ ପାରନ୍ତି । ଯେତେବେଳେ ପୁରୁଷୋତ୍ତମ କ୍ଷେତ୍ରରେ ଏହି ଅଂଶରେ ମାଧବ ଉପାସନା ଗୃହୀତ ହୋଇପାରିଲା ନାହିଁ, ରାଜା ମାଧବ ପୁରୁଷୋତ୍ତମ କ୍ଷେତ୍ରରେ ପରିଭ୍ରମଣ କରି ଅନ୍ୟ ଏକ ଭିନ୍ନସ୍ଥାନ ମାଧବ ଉପାସନା ପାଇଁ ନିର୍ବାଚନ କରିଥିଲେ । ତାଙ୍କର ପୁରୁଷୋତ୍ତମ କ୍ଷେତ୍ର ପର୍ଯ୍ୟଟନ କାଳରେ ସେ ଦ୍ୱିତୀୟ ଯଯାତିଙ୍କ ଦ୍ୱାରା ନର୍ମିତ ଅସମ୍ପୂର୍ଣ୍ଣ ପୁରୁଷୋତ୍ତମ ମନ୍ଦିରଟିକୁ ଦେଖିପାରିଥିଲେ । ଏହି ଅସମ୍ପୂର୍ଣ୍ଣ ମନ୍ଦିରଟି ସେତେବେଳେ ବାଲୁକାଚ୍ଛନ୍ନ ହୋଇଯାଇଥିବ ବୋଲି ଅନୁମାନ କରାଯାଇପାରେ (୨୦) । ଏହା ଜଣାଇଦିଏ ଯେ ମାଧବଙ୍କ ପୂର୍ବରୁ ଓଡ଼ିଶାର ରାଜାମାନେ ଏହି ମନ୍ଦିରକୁ ସମ୍ପୂର୍ଣ୍ଣ ଉପେକ୍ଷା କରିଥିଲେ । ଯଦିବା ରାଜା ମାଧବ ଏହି ସ୍ଥାନରେ ପୁରୁଷୋତ୍ତମ ବିଷ୍ଣୁଙ୍କର ଏକ ପାଷାଣ ବିଗ୍ରହ (ମାଧବ) ଉପାସନା ଆରମ୍ଭ କଲେ, ପୁରୁଷୋତ୍ତମ କ୍ଷେତ୍ରରେ ଅନ୍ୟ କୋଣରେ ଅବ୍ରାହ୍ମଣ ପୂଜକମାନଙ୍କ ଦ୍ୱାରା ଉପାସିତ ଆଦିବାସୀ ବିଗ୍ରହରୁ ବିବର୍ତ୍ତିତ ପୁରୁଷୋତ୍ତମ ବିଗ୍ରହ ଉପାସନାକୁ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ । ସାରଳା ମହାଭାରତର ମୂଷଳୀ

ପର୍ବରେ ଅବ୍ରାହ୍ମଣ ପୂଜକ ମାନଙ୍କୁ ପ୍ରତିନିଧିତ୍ୱ କରୁଥିବା ଜାରା ଶବର ଗାଲମାଧବ ବିବାଦ ଏବଂ ଦେବତା ମାଧବଙ୍କର ଏହି ବିବାଦରେ ହସ୍ତକ୍ଷେପ ଏହି ପ୍ରସଙ୍ଗରେ ଏହି ତଥ୍ୟଟି ସ୍ଥାନିତ (୨୧)।

ପୁରୁଷୋତ୍ତମ କ୍ଷେତ୍ରରେ ରାଜା ମାଧବଙ୍କ ଦ୍ୱାରା ପ୍ରବର୍ତ୍ତିତ ମାଧବ ଉପାସନା ଚିରସ୍ଥାୟୀ ହୋଇପାରି ନଥିଲା; କାରଣ ଦ୍ୱାଦଶ ଶତକର ପ୍ରାରମ୍ଭିକ ଦଶନ୍ଧି ମାନଙ୍କରେ ଗଙ୍ଗରାଜା ଚୋଡ଼ଗଙ୍ଗ ମାଧବ ଉପାସିତ ସ୍ଥାନରେ (ଅର୍ଥାତ୍ ପୁରାତନ ଅସମ୍ପୂର୍ଣ୍ଣ ପୁରୁଷୋତ୍ତମ ମନ୍ଦିରରେ) ପୁରୁଷୋତ୍ତମ-ବିଷ୍ଣୁଙ୍କ ପାଇଁ ବୃହଦ୍ ମନ୍ଦିର ନିର୍ମାଣ କରାଇଥିଲେ (୨୨)। ଏହା ଦ୍ୱାରା ପ୍ରଥମେ ରାଜା ମାଧବ କ୍ରୋଧାନ୍ୱିତ ହୋଇଥିଲେ। କାରଣ ଗଙ୍ଗରାଜାଙ୍କର ଏପରି ପଦକ୍ଷେପ ଦ୍ୱାରା ମାଧବ ଉପାସନା ପୁରୁଷୋତ୍ତମ କ୍ଷେତ୍ରରେ ବନ୍ଦ ହୋଇ ଯାଇଥିଲା। ସେ ହୁଏତ ପ୍ରଥମେ ଚୋଡ଼ଗଙ୍ଗଙ୍କର ଏପରି କାର୍ଯ୍ୟକଳାପକୁ ଦେଖି ତାଙ୍କ କ୍ଷମତା ବିରୁଦ୍ଧରେ ସ୍ୱର ଉଠାଇବାକୁ ଉଦ୍ୟମ କରିଥିବେ; କିନ୍ତୁ ଚୋଡ଼ଗଙ୍ଗଙ୍କ ପରି ବୀର ନିକଟରେ ସେ ମୁଣ୍ଡ ନୁଆଁଇ ଦେଇଥିବେ। ଚୋଡ଼ଗଙ୍ଗ ମାଧବ ଉପାସିତ ସୋମବଂଶୀ ରାଜତ୍ୱ କାଳର ପୁରାତନ ମନ୍ଦିରଟିକୁ ଭାଙ୍ଗିଦେଇ ନୂତନ ମନ୍ଦିର ନିର୍ମାଣ କରାଇଥିଲେ। ସମ୍ଭବତଃ ଏହା ପରେ ମାଧବ ଉପାସନା ପାଇଁ ଏହି କ୍ଷେତ୍ରରେ ଏକ କୋଣରେ କିଛି ବ୍ୟବସ୍ଥା କରାଯାଇଥିଲା, ଯାହା ବର୍ତ୍ତମାନ ମଧ୍ୟ ରହିଛି। ଚୋଡ଼ଗଙ୍ଗ ପ୍ରଥମେ ଏହି କ୍ଷେତ୍ରକୁ ପ୍ରବେଶ କରିବା ପରେ ରାଜା ମାଧବ ସମ୍ଭବତଃ ମାଧବ ଉପାସନା କରିଦେଇଥିବାରୁ ଏହି କ୍ଷେତ୍ରର ଅଧିପତି ସେ ନିଜେ ବୋଲି ମିଥ୍ୟାଦାବୀ କରିଥିଲେ। କିନ୍ତୁ ପରେ ଲୋକମାନଙ୍କ ଦ୍ୱାରା କିମ୍ବା ପୁରୁଷୋତ୍ତମ କ୍ଷେତ୍ରର ଅନ୍ୟ ପାଖରେ ଥିବା ଆଦିବାସୀ ବିଗ୍ରହରୁ ରୂପାନ୍ତରିତ ପୁରୁଷୋତ୍ତମ ବିଗ୍ରହର ଉପାସକ ଅବ୍ରାହ୍ମଣ ସେବକମାନଙ୍କ ଦ୍ୱାରା ରାଜା ମାଧବ ପୁରୁଷୋତ୍ତମ କ୍ଷେତ୍ରରେ ଅସମ୍ପୂର୍ଣ୍ଣ ସୋମବଂଶୀ ମନ୍ଦିରଟିକୁ ଅଧିକାର କରି ନିଜ ସ୍ୱାର୍ଥ ପାଇଁ (ଅର୍ଥାତ୍ ମାଧବ ଉପାସନା ପାଇଁ) ଏହାକୁ ନିଜର କ୍ଷେତ୍ର ଏବଂ ନିଜେ ମନ୍ଦିରର ନିର୍ମାତା ବୋଲି ମିଥ୍ୟାଦାବୀ କରିଥିବାର ମତ ଚୋଡ଼ଗଙ୍ଗଙ୍କ ନିକଟରେ ପ୍ରକାଶ କରାଯାଇଥିଲା। ସେଥିପାଇଁ ତାହାଙ୍କୁ ଗାଲମାଧବ (ମିଥ୍ୟା ମାଧବ) ବୋଲି ପ୍ରକାଶ କରାଯାଇଥିଲା। ଯେତେବେଳେ ପୁରୁଷୋତ୍ତମ କ୍ଷେତ୍ରକୁ ଆଦିବାସୀ ବିଗ୍ରହରୁ ବିବର୍ତ୍ତିତ ବିଷ୍ଣୁ-ପୁରୁଷୋତ୍ତମ ଉପାସନାର କେନ୍ଦ୍ରସ୍ଥାନ ରୂପେ ପ୍ରତିଷ୍ଠା କରାଇବା ପାଇଁ ଚୋଡ଼ଗଙ୍ଗଙ୍କର ଉଦ୍ୟମ ବିଷୟ ଅବ୍ରାହ୍ମଣ ସେବକମାନେ ଜାଣିଲେ, ସେମାନେ ଆନନ୍ଦିତ ହେଲେ। କିନ୍ତୁ

ଆରମ୍ଭରେ ଯେତେବେଳେ ସେମାନେ ରାଜ୍ୟ ମାଧବଙ୍କର ଏହି କ୍ଷେତ୍ର ଉପରେ ମିଥ୍ୟା ଅଧିକାର ବିଷୟ ଜାଣିବାକୁ ପାଇଲେ (ଅର୍ଥାତ୍ ରାଜା ନିଜ ସ୍ୱାର୍ଥ ବା ମାଧବ ଉପାସନା ପାଇଁ ଏପରି ଅଧିକାର ଦାବି କଲେ) ସେମାନେ ଚୋଡ଼ଗଙ୍ଗଙ୍କୁ ସମର୍ଥନ କଲେ ଏବଂ ରାଜା ବାଧବଙ୍କୁ ଗାଲମାଧବ/ମିଥ୍ୟା ମାଧବ ବୋଲି ପ୍ରକାଶ/ପ୍ରଚାର କଲେ । ଏହି ଉପାଧି ଉପରେ ମୋର ଅନ୍ୟ ଏକ ଅନୁମାନ ରହିଛି । ରାଜା ମାଧବ ଏବଂ ଦେବତା ମାଧବ (ଯାହାଙ୍କୁ ରାଜା ପୂଜା କରୁଥିଲେ) ମଧ୍ୟରେ ପାର୍ଥକ୍ୟ ଦର୍ଶାଇ ଦେବା ପାଇଁ ଲୋକମାନେ ରାଜାଙ୍କୁ ଗାଲମାଧବ ବୋଲି କହିଚାଲିଲେ । କାରଣ ଦେବତା ମାଧବ ଥିଲେ ପ୍ରକୃତ ମାଧବ । ରାଜା ଥିଲେ ଗାଲମାଧବ/ଅପ୍ରକୃତ ମାଧବ । କିନ୍ତୁ, ସାରଳା ମହାଭାରତ ମୂଷଳୀପର୍ବ ବର୍ଣ୍ଣିତ ଜାରା ଶବର ପ୍ରତିନିଧିତ୍ୱ କରୁଥିବା ଅବ୍ରାହ୍ମଣ ସେବକ ଗାଲମାଧବ ବିବାଦ ଏବଂ ଅବ୍ରାହ୍ମଣ ସେବକମାନଙ୍କର ବିଜୟ ପ୍ରସଙ୍ଗକୁ ବିବେଚନାକୁ ନେଲେ ସିଦ୍ଧାନ୍ତ ନେବାକୁ ହେବ ଯେ ଗାଲମାଧବ ନାମଟି ପୁରୁଷୋତ୍ତମ କ୍ଷେତ୍ରରେ ଅବ୍ରାହ୍ମଣ ସେବକମାନଙ୍କ ଦ୍ୱାରା ସୃଷ୍ଟ । ଏହିପରି ରାଜା ମାଧବ ଗାଲମାଧବ ରୂପେ ପରିଚିତ ହେଲେ । ଏହି ନାମ ଏବଂ ଏହି ପ୍ରସଙ୍ଗ କ୍ରମେ ଜନଶ୍ରୁତି ମଧ୍ୟରେ ରହିଯିବାରୁ ମଧ୍ୟଯୁଗୀୟ ପୁରାଣ ଏବଂ ସାହିତ୍ୟ ଗ୍ରନ୍ଥମାନଙ୍କରେ ଜଗନ୍ନାଥ ତତ୍ତ୍ୱ ସମ୍ପର୍କିତ ବିବରଣୀରେ ସ୍ଥାନ ପାଇଗଲା।

---

## ପ୍ରସଙ୍ଗ ନିର୍ଦ୍ଦେଶ


୧. ଉତ୍କଳଖଣ୍ଡ, ସ୍କନ୍ଦ ପୁରାଣ, ଭେଙ୍କଟେଶ୍ୱର ପ୍ରେସ, ବମ୍ବେ ।
ମୂଷଳୀ ପର୍ବ, ସାରଳା ମହାଭାରତ, ସାଂସ୍କୃତିକ ବ୍ୟାପାର ବିଭାଗ, ଭୁବନେଶ୍ୱର, ପୃ-୬୪-୧୦୫ ।
ନୀଳାଦ୍ରି ମହୋଦୟ (ସମ୍ପାଦକ- ଶ୍ରୀଧର ମହାପାତ୍ର ଶର୍ମା), ୧୯୮୪, ଗ୍ରନ୍ଥ ମନ୍ଦିର, କଟକ ।

୨. ଉତ୍କଳଖଣ୍ଡ, ସ୍କନ୍ଦ ପୁରାଣ, ଅଧ୍ୟାୟ ସପ୍ତମ ଠାରୁ ଦ୍ରଷ୍ଟବ୍ୟ ।

୩. ମୂଷଳୀ ପର୍ବ, ପୃ-୬୪-୮୭

୪. Tripathy, G.C. " Jagannatha : The Ageless Deity of the Hindus", in " The Cult of Jagannatha and the Regional Tradition of Orissa" (CJRTO).
1978, P. 478-79.

୫. Stietencron, H.v., CJRTO, chapter-1, p.21
ଦାଶ, ଗଗନେନ୍ଦ୍ର ନାଥ, ''ଜନଶ୍ରୁତି ଓ ସାମାଜିକ ଇତିହାସ : ଦେଉଳ ତୋଳାରେ ଲଳିତା ଚରିତ୍ର ସୃଷ୍ଟିର ମୂଳକଥା, ଝଙ୍କାର, ଜୁଲାଇ, ୧୯୮୨, ପୃ-୩୩୯

୬. Wilson, H.H., The Vishnu Purana : A system of Hindu Mythology and Tradition. Third Edition, Calcutta, 1961, p.91
ବିଷ୍ଣୁ ପୁରାଣରେ ପୁରୁଷୋତ୍ତମ ସମୁଦ୍ର ମଧ୍ୟରେ ଅବସ୍ଥାନ କରନ୍ତି ବୋଲି ପ୍ରକାଶ କରାଯାଇଛି ।
(କ) ପୁରୁଷୋତ୍ତମ ଖଣ୍ଡ, ସ୍କନ୍ଦ ପୁରାଣ, ଅଧ୍ୟାୟ-୨୬, ଭେଙ୍କଟେଶ୍ୱର ପ୍ରେସ, ବମ୍ବେ ।
ମୂଷଳୀ ପର୍ବ, ପୃ-୭୪-୮୭ ।
ନୀଳାଦ୍ରି ମହୋଦୟ, ପଞ୍ଚମ ଅଧ୍ୟାୟ ।
ଦେଉଳ ତୋଳା (ଧର୍ମଗ୍ରନ୍ଥ ଷ୍ଟୋର, ନୂତନ ସଂସ୍କରଣ) ପୃ-୧୫-୨୮ ।

୭. ଶିଶୁକୃଷ୍ଣ ଦାସଙ୍କ ଦେଉଳ ତୋଳାରେ ଇନ୍ଦ୍ରଦ୍ୟୁମ୍ନ ଗାଲମାଧବ ବିବାଦ ମଧ୍ୟରେ ଯେଉଁ କୁର୍ମ ପ୍ରସଙ୍ଗର ଅବତାରଣା କରାଯାଇଛି, ତାହା ଜଗନ୍ନାଥଙ୍କ ବୃହତ ମନ୍ଦିର ନିର୍ମାଣରେ ଶିଳ୍ପୀ/ଶ୍ରମିକମାନଙ୍କୁ ଶୋଷଣ କରି ରାଜଶକ୍ତିର କାର୍ଯ୍ୟ ହାସଲ ପ୍ରସଙ୍ଗକୁ ବୁଝାଇଥାଏ ।
ଦାଶ, କୈଳାସଚନ୍ଦ୍ର, ''ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାନରେ ଓଡ଼ିଶାର ସାମାଜିକ ଅବସ୍ଥାର ଚିତ୍ର'', ଅକ୍ଷପାଦ, ଦ୍ୱିତୀୟ ବର୍ଷ, ତୃତୀୟ ସଂଖ୍ୟା, ୧୯୮୯, ପୃ-୧୭୫-୧୮୩ ।
ଅନ୍ୟ ସାମାଜିକ ଦିଗର ଆଲୋଚନା ପାଇଁ ଦ୍ରଷ୍ଟବ୍ୟ
ଦାଶ, ଗଗନେନ୍ଦ୍ର ନାଥ, ଝଙ୍କାର, ଜୁଲାଇ, ୧୯୮୨ ।

୮. ଶୋଭନେଶ୍ୱର ମନ୍ଦିର ଶିଳାଲିପି, Inscriptions of Orissa Vol.III, part.II, No. 280

୯. ତତ୍ରୈବ ।

୧୦. ତତ୍ରୈବ, ପୃ-୩୪୮ ।

୧୧. ମାଦଳାପାଞ୍ଜି (ସଂ-ଆର୍ତ୍ତବଲ୍ଲଭ ମହାନ୍ତି), ୧୯୬୯, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର, ପୃ-୧୫ ।

୧୨. Stirling, A; "An Account, Geographical, Statistical and Historical of Orissa proper or Cuttack, Reprint, 1904, part.II, p.70.
Hunter, W.W., Orissa, vol.I, 1872, p.186.
Singh, Jagabandhu, ପ୍ରାଚୀନ ଉତ୍କଳ, ପ୍ରଥମ ଖଣ୍ଡ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର, ୧୯୮୨, ପୃ-୨୬୫ ।
ଓଡ୍ରଦେଶ ରାଜବଂଶାବଳୀ, Institute of Orissan Culture, Bhubaneswar, ୧୯୮୩, ପୃ-୧୩ ।
କଟକ ରାଜବଂଶାବଳୀ (ସମ୍ପାଦକ- ଗୟାଚରଣ ତ୍ରିପାଠୀ ଏବଂ ହର୍‌ମାନ୍ କୁଲ୍‌କେ) ପ୍ରଥମ ଭାଗ, ଆଲହାବାଦ, ୧୯୮୭, ପୃ-୧୬ ।

୧୩. କଟକ ରାଜବଂଶାବଳୀ, ପୃ-୧୬ ।
ଓଡ୍ରଦେଶ ରାଜବଂଶାବଳୀ, ପୃ-୧୩
ପ୍ରାଚୀନ ଉତ୍କଳ, ପ୍ରଥମଭାଗ, ପୃ-୨୬୫

ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସଙ୍କଳିତ ମାଦଳାପାଞ୍ଜିରେ ମାଧବକେଶରୀ ନାମ ଉଲ୍ଲେଖ ରହିଛି । କିନ୍ତୁ ଏହି ପାଞ୍ଜିରେ ବରାହକେଶରୀ ସାରଙ୍ଗଗଡ଼ ନିର୍ମାଣ କରିଥିବାର ସୂଚନା ରହିଛି । କିନ୍ତୁ ପୂର୍ବ ସୂଚିତ ଅନ୍ୟ ଉପାଦାନଗୁଡ଼ିକରେ ମାଧବ କେଶରୀ ସାରଙ୍ଗଗଡ଼ ନିର୍ମାଣ କରିଥିବା କଥା ପ୍ରକାଶ କରାଯାଇଛି । କଟକ ରାଜବଂଶାବଳୀ ଏବଂ ଓଡ୍ରଦେଶ ରାଜବଂଶାବଳୀରେ ମାଧବ ପୁରୁଷୋତ୍ତମ କ୍ଷେତ୍ରରେ ଶ୍ୱେତଗଙ୍ଗାଠାରେ ମତ୍ସ୍ୟ ମାଧବ ନାମକ ଏକ ଶୈବମନ୍ଦିର ନିର୍ମାଣ କରିଥିବାର ସୂଚନା ରହିଛି । ଏହା ମାଧବଙ୍କ ପୁରୁଷୋତ୍ତମ କ୍ଷେତ୍ର ସହିତ ସମ୍ପର୍କର ଏକ ପ୍ରମାଣ ।

୧୪. ମାଦଳାପାଞ୍ଜି, ୧୯୬୯, ପୃ-୧୫ ।

୧୫. ମାଦଳାପାଞ୍ଜି, ୧୯୬୯, ପୃ-୨୩ ।
ମୂଷଳୀ ପର୍ବ, ପୃ-୬୯ ।

୧୬. Stietencron, H.v. "The date of the Jagannatha Temple: Literary sources reconsidered", in "Sidelights on History and Culture of Orissa", (edited by M.N. Das), Vidyapuri, Cuttack, 1977, p. 518-19; CJRTO, Chapter-1 Dash, Kailash Chandra, Orissa Historical Research Journal, Vol. XXXII, Nos.III and IV, p. 65-66.
ଦାସ, ଗୋବା ତାମ୍ରଲେଖ, Epigraphia Indica, Vol.XXXI, p.255.
ଦାଶ, କୈଳାସଚନ୍ଦ୍ର, ଶ୍ରୀ ପୁରୁଷୋତ୍ତମ- ଜଗନ୍ନାଥ ମନ୍ଦିରର ନିର୍ମାଣ କାଳ ଓ ନିର୍ମାତା, "ଶ୍ରୀମନ୍ଦିର: ଶ୍ରୀ ଜଗନ୍ନାଥ" (ସଂକଳନ- ମନୋରଞ୍ଜନ ସିଂହାରୀ), ପୁରୀ, ଜଗନ୍ନାଥ ମନ୍ଦିର, ୧୯୮୯, ପୃ ୪-୭ ।

୧୭. ମାଦଳାପାଞ୍ଜିର ରାଜଭୋଗ ଚରିତରେ ବର୍ଣ୍ଣିତ ହୋଇଛି ଯେ ଅନଙ୍ଗ ଭୀମଙ୍କ କାଳରେ ଯଯାତିକେଶରୀଙ୍କ ନିର୍ମିତ ମନ୍ଦିରଟିକୁ ଭାଙ୍ଗି ଦିଆଯାଇଥିଲା ଏବଂ ବୃହତ ମନ୍ଦିର ନିର୍ମାଣ କରାଯାଇଥିଲା- "ମାଦଳା ପାଞ୍ଜି" ୧୯୬୯, ପୃ-୩୦ ।
ରାଜଭୋଗ ଚରିତର ଲେଖକ ଚୋଡ଼ଗଙ୍ଗଙ୍କୁ ଅନଙ୍ଗଭୀମ ବୋଲି ଭୁଲରେ ଗ୍ରହଣ କରି ନେଇଥିଲେ । କାରଣ ୧୬ ଶତାବ୍ଦୀ ପରେ ରଚିତ ଏହି ରାଜଭୋଗ ଚରିତ ରଚନା କାଳରେ ଓଡ଼ିଶାର ଜନଶ୍ରୁତିରେ ଚୋଡ଼ଗଙ୍ଗଙ୍କୁ ପୁରୁଷୋତ୍ତମ ମନ୍ଦିରର ନିର୍ମାତା ରୂପେ ଗ୍ରହଣ କରାଯାଇନଥିଲା । ଶିଶୁ କୃଷ୍ଣ ଦାସଙ୍କ ଦେଉଳ ତୋଳା (ସପ୍ତଦଶ- ଅଷ୍ଟାଦଶ ଶତକର ରଚନା)ରେ ଏହି ପ୍ରସଙ୍ଗଟି ବର୍ଣ୍ଣିତ ହୋଇଛି:
"ଶଙ୍ଖନାଭି ମଣ୍ଡଳେ ଦେଉଳ ତୋଳାଇଲା
ସାଠିଏ ହାତ ଦେଉଳ ପାତାଳେ ପୋତିଲା ।
ବିଶାଶହେ ହାତ ଦେଉଳ ଉଚ୍ଚ କଲା ।"
ଦାଶ, କୈଳାସଚନ୍ଦ୍ର, "ଶ୍ରୀ ପୁରୁଷୋତ୍ତମ- ଜଗନ୍ନାଥ ମନ୍ଦିରର ନିର୍ମାଣ କାଳ ଓ ନିର୍ମାତା" "ଶ୍ରୀମନ୍ଦିର: ଶ୍ରୀ ଜଗନ୍ନାଥ", ପୃ-୮-୧୧ ।

୧୮. Dash, G.N., "The Evolution of the Priestly Power: the Gangavamsa period", CJRTO, Chapter-IX, p.157-160.

୧୯. Ibid.

୨୦. ଦେଉଳ ତୋଳା, ପୃ- ୧୫ ।

୨୧. ମୃଷଳୀ ପର୍ବ, ପୃ-୮୧-୮୩ ।

୨୨. ଚୋଡ଼ଗଙ୍ଗଙ୍କ ଦ୍ୱାରା ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭିକ ଦଶନ୍ଧିମାନଙ୍କରେ ବୃହତ୍ ଜଗନ୍ନାଥ ମନ୍ଦିର ନିର୍ମାଣ ପ୍ରସଙ୍ଗ ପାଇଁ;

ଦାଶ, କୈଳାସଚନ୍ଦ୍ର;

(କ) "Gangeswar- Chodaganga and the Temple of Purusottama-Jagannatha", Orissa Historical Research Journal, Vol.XXXII, Nos.III and IV. p.76-79.

(ଖ) ଶ୍ରୀ ପୁରୁଷୋତ୍ତମ- ଜଗନ୍ନାଥ ମନ୍ଦିରର ନିର୍ମାଣ କାଳ ଏବଂ ନିର୍ମାତା'', ''ଶ୍ରୀମନ୍ଦିର: ଶ୍ରୀ ଜଗନ୍ନାଥ'' (ସଂକଳନ- ମନୋରଞ୍ଜନ ସିଂହାରୀ, ପୁରୀ), ୧୯୮୯, ପୃ-୧୧-୧୯ ।



# ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାନରେ ଓଡ଼ିଶାର ସାମାଜିକ ଅବସ୍ଥାର ଚିତ୍ର

ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାନ ଜଗନ୍ନାଥ ତତ୍ତ୍ୱର ପ୍ରାରମ୍ଭିକ ଇତିହାସ ଚର୍ଚ୍ଚାର ଏକ ମୌଳିକ ଦିଗ । ଏହି ଆଖ୍ୟାନ ସମ୍ଭବତଃ ସ୍କନ୍ଦ ପୁରାଣର ପୁରୁଷୋତ୍ତମ ଖଣ୍ଡରେ ପ୍ରଥମେ ଗର୍ଭିତ କରାଯାଇଥିଲା ଏବଂ ପରେ ସାରଳା ଦାସଙ୍କ ରଚିତ ମହାଭାରତର ମୂଷଳୀ ପର୍ବରେ ଏହାର ଅଂଶ ପରିବର୍ତ୍ତନ କରାଯାଇ ପ୍ରକାଶ କରାଯାଇଥିଲା । କିନ୍ତୁ ମଧ୍ୟଯୁଗର ଶେଷ ପର୍ଯ୍ୟାୟରେ ରଚିତ ଶିଶୁ କୃଷ୍ଣଦାସଙ୍କର ଦେଉଳ ତୋଳାରେ ଆହୁରି କିଛି ପରିବର୍ତ୍ତନ କରାଯାଇ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାନକୁ ଗ୍ରହଣ କରାଯାଇଥିଲା । ସମଗ୍ର ମଧ୍ୟଯୁଗୀୟ ଓଡ଼ିଶାରେ ଏହି ଆଖ୍ୟାନର ବିଭିନ୍ନ ପରିବର୍ତ୍ତନ/ପରିବର୍ଦ୍ଧନ ଦ୍ୱାରା ସାମାଜିକ ବ୍ୟବସ୍ଥାର ଅସଲ ରୂପ ପ୍ରକାଶ ପାଇଥିଲା । ରାଜଶକ୍ତି/ସାମନ୍ତ ଶକ୍ତିର ଅଯଥା କ୍ଷମତା ବିସ୍ତାରକୁ ବିରୋଧ ଏବଂ ଶ୍ରମିକ/ଶିଳ୍ପୀକୁ ଅପରିସୀମ କଷ୍ଟଦେଇ ରାଜଶକ୍ତି/ସାମନ୍ତଶକ୍ତିର ସାମାଜିକ କ୍ଷେତ୍ରରେ ଯଶଲାଭ କରିବା ପ୍ରସଙ୍ଗର ସମାଲୋଚନା କରିବା ଥିଲା ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଏହି ପରିବର୍ତ୍ତନ/ପରିବର୍ଦ୍ଧନର ମୁଖ୍ୟ ଉଦ୍ଦେଶ୍ୟ । ଶ୍ରମିକ/ଶିଳ୍ପୀକୁ ରାଜଶକ୍ତି/ସମାଜର ଉଚ୍ଚ ଶ୍ରେଣୀର ଲୋକମାନେ ସେମାନଙ୍କର ସୁବିଧା ପାଇଁ ବ୍ୟବହାର କରିଥିବା ଦୃଷ୍ଟାନ୍ତ କେବଳ ମଧ୍ୟଯୁଗୀୟ ଓଡ଼ିଶାର ସାମାଜିକ ଜୀବନରେ ନଥିଲା, ତାହା ସର୍ବଭାରତୀୟ ସାମାଜିକ ଚିନ୍ତାଧାରାର ଏକ ମୌଳିକ ଦିଗ ବୋଲି ନିକଟରେ ଐତିହାସିକମାନେ ସିଦ୍ଧାନ୍ତ ଗ୍ରହଣ କରିଛନ୍ତି । (୧) କିନ୍ତୁ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଏହି ଚିନ୍ତାଧାରାର ପ୍ରତିଫଳନ ବରଂ ତାହାର ବାସ୍ତବ ରୂପ ଜଗନ୍ନାଥ ତତ୍ତ୍ୱର ବିସ୍ତାରିତ ଆଲୋଚନା ମଧ୍ୟରେ ପ୍ରକାଶ ପାଇଛି । ଶତାବ୍ଦୀ

ଶତାବ୍ଦୀ ଧରି ରାଜକୀୟ/ସାମନ୍ତବାଦୀ ଚିନ୍ତାଧାରା ଦ୍ୱାରା ପରିଚାଳିତ ଜଗନ୍ନାଥ ତତ୍ତ୍ୱରେ ସାମାଜିକ ଜୀବନର ଏହି ବେଦନାପୂର୍ଣ୍ଣ ଭାବଟିକୁ କବିମାନେ ପ୍ରକାଶ କରି ସାମାଜିକ ଚିନ୍ତାଧାରାରେ ବୈପ୍ଳବିକ ପରିବର୍ତ୍ତନ ଦାବୀ କରିଛନ୍ତି ।

ସ୍କନ୍ଦ ପୁରାଣର ପୁରୁଷୋତ୍ତମ ଖଣ୍ଡରେ ବର୍ଣ୍ଣିତ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାନ ଖ୍ରୀଷ୍ଟୀୟ ତ୍ରୟୋଦଶ ଚତୁର୍ଦ୍ଦଶ ଶତାବ୍ଦୀ ବେଳର ବୋଲି ସିଦ୍ଧାନ୍ତ ନିଆଯାଇଛି । ବର୍ତ୍ତମାନ ଜ୍ଞାନ ଦୃଷ୍ଟିରୁ ଏହି ପୁରାଣଖଣ୍ଡ ସର୍ବ-ପ୍ରଥମେ ଇନ୍ଦ୍ରଦ୍ୟୁମ୍ନ ସମ୍ପର୍କିତ ଜନଶ୍ରୁତିକୁ ବର୍ଣ୍ଣନା କରିଥିବା କଥା ଗ୍ରହଣ କରାଯାଇପାରେ । ଏଥିରେ ବର୍ଣ୍ଣିତ ହୋଇଛି ଯେ ମାଳବାଧିପତି ଇନ୍ଦ୍ରଦ୍ୟୁମ୍ନ ଶବର ବିଶ୍ୱାବସୁ ଉପାସିତ ନୀଳଗିରିର ନୀଳମାଧବ କ୍ଷେତ୍ରରେ ବୃହତ୍ ମନ୍ଦିର ନିର୍ମାଣ କଲେ । ମନ୍ଦିର ନିର୍ମାଣ କାଳରେ ସେ ବ୍ରହ୍ମଲୋକକୁ ଯାଇ ମନ୍ଦିର ପ୍ରତିଷ୍ଠା ଉତ୍ସବରେ ବ୍ରହ୍ମାଙ୍କୁ ପୁରୋଧା ହିସାବରେ ନିମନ୍ତ୍ରଣ କଲେ । କିନ୍ତୁ ବ୍ରହ୍ମାଙ୍କ ସହିତ ନୀଳଗିରିରେ ପ୍ରବେଶ କଲାବେଳକୁ ତାଙ୍କ ମନ୍ଦିରଟି "ଗାଳ" ରାଜାଙ୍କ ଅଧୀନରେ ଥିଲା । ସେ ସେଠାରେ ନୀଳମାଧବ ଉପାସନା କରିବାକୁ ଉଦ୍ୟମ କରିଥିଲେ । ଇନ୍ଦ୍ରଦ୍ୟୁମ୍ନଙ୍କର ମନ୍ଦିର ପ୍ରତିଷ୍ଠାର ବ୍ୟାପକ କାର୍ଯ୍ୟକ୍ରମ ଦେଖି ସେ ପ୍ରଥମେ କ୍ରୋଧାନ୍ୱିତ ହେଲେ । କିନ୍ତୁ ପରେ ପରେ ସେ ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟରେ କ୍ଷମା ମାଗି ନେଇଥିଲେ । ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାନର ଏହି ଅଂଶଟିରେ ବୃହତ ଜଗନ୍ନାଥ ମନ୍ଦିର ନିର୍ମାଣରେ ରାଜଶକ୍ତି/ସାମନ୍ତଶକ୍ତିର ଭୂମିକାର ବର୍ଣ୍ଣନା ରହିଛି । କିନ୍ତୁ ସାରଳା ମହାଭାରତର ମୂଷଳୀ ପର୍ବରେ ଏହି ଆଖ୍ୟାନର କିଛି ପରିବର୍ତ୍ତନ ଲକ୍ଷ୍ୟ କରାଯାଇ ପାରେ । ଇନ୍ଦ୍ରଦ୍ୟୁମ୍ନ ଓ ଗାଲମାଧବ ଜଗନ୍ନାଥ ମନ୍ଦିର ନିର୍ମାଣ କାର୍ଯ୍ୟରେ ଜଡ଼ିତ ଥିଲେ । କିନ୍ତୁ ସାରଳା ଦାସ ନୀଳଗିରିରେ ଏହି ଦୁଇଜଣ ରାଜାଙ୍କ ମଧ୍ୟରେ ବିବାଦର କଥା ବର୍ଣ୍ଣନା କରି ନାହାନ୍ତି । ଅନ୍ୟ ପକ୍ଷରେ ସର୍ବ-ପ୍ରଥମ ଗାଲ ମାଧବ ଓ ପରେ ଇନ୍ଦ୍ରଦ୍ୟୁମ୍ନ ମନ୍ଦିର ନିର୍ମାଣ କରିବାର ଉଦ୍ୟମ ସମ୍ପର୍କରେ ସ୍ୱତନ୍ତ୍ର ଅଧ୍ୟାୟମାନଙ୍କରେ ବର୍ଣ୍ଣନା କରିଛନ୍ତି । ଉଭୟ ସ୍କନ୍ଦ ପୁରାଣର ପୁରୁଷୋତ୍ତମ ଖଣ୍ଡ ଓ ସାରଳା ମହାଭାରତର ମୂଷଳୀ ପର୍ବରେ ପୁରୁଷୋତ୍ତମ କ୍ଷେତ୍ରର ଅଗ୍ରଗତିରେ ରାଜଶକ୍ତି/ସାମନ୍ତ ଶକ୍ତିର ଭୂମିକାର ଅବତାରଣା କରାଯାଇଛି । କିନ୍ତୁ ପୁରୁଷୋତ୍ତମ ଖଣ୍ଡରେ ବ୍ରାହ୍ମଣ/ସାମନ୍ତ ଶକ୍ତି ବ୍ୟତୀତ ଅନ୍ୟ ସାମାଜିକ ଶ୍ରେଣୀମାନଙ୍କର ପୁରୁଷୋତ୍ତମ କ୍ଷେତ୍ରରେ ଅଗ୍ରଗତି ପାଇଁ ଅବଦାନର ସୂଚନା ଦିଆଯାଇ ନାହିଁ । ଏଥିରେ କେବଳ ସାମନ୍ତବାଦୀ/ବ୍ରାହ୍ମଣ ଭାବଧାରାର ପ୍ରତିଫଳନ ଦେଖିବାକୁ ମିଳେ । କିନ୍ତୁ ଜଗନ୍ନାଥ ତତ୍ତ୍ୱ ସମ୍ପର୍କିତ ଏହି ସାମନ୍ତବାଦୀ ଭାବଧାରାକୁ ସାରଳାଦାସ ଅନେକାଂଶରେ

ସମର୍ଥନ କରି ଅନ୍ୟ ସାମାଜିକ ଶ୍ରେଣୀଗୁଡ଼ିକର ଏ ଦିଗରେ ବଳିଷ୍ଠ ଅବଦାନକୁ ଆଲୋକକୁ ଆଣିବାକୁ ଉଦ୍ୟମ କରିଛନ୍ତି । ଗାଲମାଧବଙ୍କର ଆଦିବାସୀ ଉପାସିତ ଧର୍ମକ୍ଷେତ୍ରରେ ଅଯଥା ହସ୍ତକ୍ଷେପ ଏବଂ ଦାରୁ ବିଗ୍ରହ ଉଠାଇବା ପ୍ରସଙ୍ଗରେ ସେ ରାଜଶକ୍ତି/ସାମନ୍ତଶକ୍ତିକୁ ବହୁତ ତଳକୁ ନେଇ ଯାଇଛନ୍ତି । ସେହି ପ୍ରସଙ୍ଗଟିକୁ କବି ବର୍ଣ୍ଣନା କରିଛନ୍ତି :

ମାଧବ ବୋଇଲେ ରାଜା ତୁ ମନ୍ଦକୃତ୍ୟ କଲୁ
ଶବର ପୁତ୍ରନ୍ତ ମୋର କିମ୍ପାଇ ମାଇଲୁ ।
ତାହାଙ୍କର ଉପରେ ବଂଶ ମୋତେ କରିଥିଲେ ପୂଜା
ତେଣୁକରି ଭୟଟି କଲା ଯମରାଜା ।

ମମ ଭଗତଂକୁ କଲୁ ଯେ ହିଂସା
ଆହୋ ଗାଲବ ରାଜା ତୋର ନ ରହିବେ ବଂଶ ।

ଆହେ ଇନ୍ଦ୍ରଦ୍ୟୁମ୍ନ ସେ ନୋହେ ଚନ୍ଦନ ଦାରୁ
ଆମ୍ଭର ପିଣ୍ଡ ଅଟଇ ମହାଗରୁ ।
ସମରାଷ୍ଟଲାଗିଲେ ନୁଆରିବୁ ଏହାକୁ ଟାଳି
ଜାରା ଶବର ବସୁ ବ୍ରାହ୍ମଣ ପାରନ୍ତି ଯେ ତୋଳି ।

ହାସ୍ୟ ପରିହାସେ ଇଚ୍ଛକ ଭାବମତି
ଶବର ବ୍ରାହ୍ମଣ ଯେ ଅନେକ ପୀରତି ।
ବ୍ରାହ୍ମଣ ଆଡ଼େ ତଡ଼ଇ ଶବର ଆଡ଼େ ଉଠଇ
ଶ୍ରୀକୃଷ୍ଣ ଆଜ୍ଞାରେ ସେ ଉଚ୍ଚ କନିଷ୍ଠଇ । (୨)

ସେ ମଧ୍ୟ ଜଗନ୍ନାଥଙ୍କର ଆଦିବାସୀ ମୂଳକୁ ପ୍ରକାଶ କରିବା ପାଇଁ ତାଙ୍କୁ ପତିତପାବନ ବୋଲି ବର୍ଣ୍ଣନା କରିଛନ୍ତି । କିନ୍ତୁ ପୁରୁଷୋତ୍ତମ ଖଣ୍ଡରେ ଏହି ମୂଳଟିକୁ ଲୁଚାଇ ଦେବା ପାଇଁ ତାଙ୍କୁ ''ପରମ ପାବନ'' ବୋଲି ବର୍ଣ୍ଣନା କରାଯାଇଛି । (୩) ସାରଳାଦାସ ପୁରୁଷୋତ୍ତମ କ୍ଷେତ୍ରର ଅଗ୍ରଗତି ପାଇଁ ଓଡ଼ିଶା ସମାଜର ''ନିମ୍ନଶ୍ରେଣୀ''ର ଲୋକମାନଙ୍କର ଅବଦାନକୁ ଆଲୋକକୁ ଆଣିବାକୁ ଉଦ୍ୟମ କରିଛନ୍ତି ଏବଂ ମହାଭାରତର ମୂଷଳୀ ପର୍ବରେ ରାଜଶକ୍ତି/ସାମନ୍ତ ଶକ୍ତିର ନିମ୍ନ ସୋପାନର ଲୋକମାନଙ୍କ ଉପରେ ଅଯଥା କ୍ଷମତା ବିସ୍ତାର ଓ ଶୋଷଣ ନୀତି ପ୍ରୟୋଗ

ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ବିଶେଷତଃ ଆଦିବାସୀ ଓ ନିମ୍ନ ସୋପାନର ଲୋକମାନଙ୍କର ଧର୍ମଧାରାକୁ ସେମାନଙ୍କର ଉଦ୍ୟମ ମାଧ୍ୟମରେ ସାମନ୍ତ ଶକ୍ତିର ନିଜସ୍ୱ କରିବାର ଉଦ୍ୟମକୁ ସେ ଆଦୌ ଗ୍ରହଣ କରି ନାହାନ୍ତି ।

ସାରଳା ଦାସଙ୍କର ସମୟକାଳ ମଧ୍ୟଯୁଗର ଶେଷ ପର୍ଯ୍ୟାୟର ଆରମ୍ଭ ଓ ଏହି କାଳରେ ସାମନ୍ତଶକ୍ତି/ରାଜଶକ୍ତି ସମାଜରେ ନିଜର ସୁଖ ସୁବିଧା ପାଇଁ ସେମାନଙ୍କ ଦ୍ୱାରା ସୂଚିତ ନିମ୍ନ ସୋପାନର ଲୋକମାନଙ୍କୁ ଶୋଷଣ କରୁଥିଲେ । ତଥାପି କବି ମହାଶୟ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ଲୋକମାନଙ୍କର ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିର ନିର୍ମାଣ କାର୍ଯ୍ୟରେ ଅବଦାନକୁ ଉପସ୍ଥାପନ କରିପାରିନାହାନ୍ତି । ସେମାନଙ୍କର ଉଦ୍ୟମ / ଶ୍ରମ ବିନା ଏହି ବୃହଦ୍ ମନ୍ଦିର ମୁଣ୍ଡଟେକି ଉଠିପାରି ନଥାନ୍ତା ଏବଂ ରାଜଶକ୍ତିର ପ୍ରବଳ ପୃଷ୍ଠପୋଷକତା ସତ୍ତ୍ୱେ ଜଗନ୍ନାଥ ତତ୍ତ୍ୱ ଆଦୃତ ହୋଇପାରି ନଥାନ୍ତା । କବି ସାରଳା ଦାସ ମଧ୍ୟ ସାମନ୍ତବାଦୀ ପରିବେଶରୁ ମୁକ୍ତିଲାଭ କରିପାରି ନଥିବାରୁ ସାମନ୍ତ / ରାଜଶକ୍ତି ସମାଜର ନିମ୍ନ ସୋପାନର ଲୋକମାନଙ୍କୁ ଶୋଷଣ କରିଥିବାର ମର୍ମ ବିଦାରକ ତଥ୍ୟ ତାଙ୍କ ମହାଭାରତରେ ସ୍ଥାନ ପାଇପାରି ନଥିଲା । ଜଗନ୍ନାଥ ତତ୍ତ୍ୱର ସର୍ବଭାରତୀୟ ସମାଜ ଏବଂ ଧର୍ମ କ୍ଷେତ୍ରରେ ଚିରନ୍ତନ ସ୍ଥିତି ପାଇଁ ଶ୍ରମିକ / ଶିଳ୍ପୀର ସଫଳ ଭୂମିକା ଥିଲା । ସେମାନଙ୍କର ନିଃସ୍ୱାର୍ଥପର ଉଦ୍ୟମ ଫଳରେ ଏହି ବୃହଦ୍ ମନ୍ଦିର ମୁଣ୍ଡଟେକି ଉଠିଥିଲା ଏବଂ ପରେ ବ୍ୟାପକ ସେବାପୂଜାର ବ୍ୟବସ୍ଥା ହେବା ଦ୍ୱାରା ସର୍ବ-ଭାରତୀୟ ସ୍ତରରେ ସାଧୁ ସନ୍ଥ ତଥା ଧର୍ମପ୍ରିୟ ଲୋକମାନେ ଏହି ତତ୍ତ୍ୱର ମହତ୍ତ୍ୱକୁ ଉପଲବ୍ଧି କରିପାରିଲେ ।

ଖ୍ରୀଷ୍ଟୀୟ ସପ୍ତଦଶ-ଅଷ୍ଟାଦଶ ଶତକରେ ଏହି ଶ୍ରେଣୀର ଅବଦାନକୁ ସାହିତ୍ୟରେ ଉପସ୍ଥାପନ କରାଯାଇଥିଲା । ସେମାନଙ୍କର ସୁଖ ସୁବିଧାକୁ ଅପହରଣ କରି ଶୋଷଣ ନୀତି ଦ୍ୱାରା ବୃହଦ୍ ଜଗନ୍ନାଥ ମନ୍ଦିର ରାଜଶକ୍ତି ନିର୍ମାଣ କରାଇଥିବାର ପ୍ରସଙ୍ଗକୁ ଦେଉଳତୋଳା ନାମକ ଉପ-ପୁରାଣ ଖଣ୍ଡରେ ଶିଶୁ କୃଷ୍ଣ ଦାସ ସ୍ଥାନ ଦେଇଥିଲେ । (୪) ସ୍କନ୍ଦ ପୁରାଣର ଉତ୍କଳଖଣ୍ଡ (ପୁରୁଷୋତ୍ତମ ଖଣ୍ଡ)ରେ ବର୍ଣ୍ଣନା କରାଯାଇଛି ଯେ ମହାରାଜା ଇନ୍ଦ୍ରଦ୍ୟୁମ୍ନ ପଥର ସଂଗ୍ରହ ପାଇଁ ସମସ୍ତ ଧନ ବ୍ୟୟ କରିଥିଲେ ଏବଂ ପଥର ସଂଗ୍ରାହକ ମାନଙ୍କୁ ଅମାପ ଧନ ଦ୍ୱାରା ତୁଷ୍ଟ କରିଥିଲେ । ପ୍ରସଙ୍ଗଟି ପୁରୁଷୋତ୍ତମ ଖଣ୍ଡ ବିଂଶ ଅଧ୍ୟାୟରେ ଏହିପରି ବର୍ଣ୍ଣନା କରାଯାଇଛି :

ତତଃ ସ କୋଟିଶୋ ବିତ୍ତଂ ଦଦୌ ପାଷାଣ-ଦାରକେ ॥

ଆହୁତୌ ବହୁଦେଶେଭ୍ୟୋ ଦୃଷଦାଂ ପାର୍ଥିବୋତ୍ତମଃ ।।
ଭବାଚେଦଂ ମୁଦାଯୁକ୍ତଃ ସଭାୟାଂ ପୃଥିବୀଶ୍ୱରଃ ।।
ଅଷ୍ଟାଦଶଭ୍ୟୋ ଦ୍ୱିପେଭ୍ୟୋ ଯତ୍ନୟା ପୌରୁଷାର୍ଜିତମ୍ ।
ତତ୍‌ସର୍ବ ଜଗଦୀଶସ୍ୟ ପ୍ରାସାଦାୟାପବର୍ଜିତମ୍ ।
ଜୈତ୍ରଯାତ୍ରା ପ୍ରସଙ୍ଗେନ ଶ୍ରମୋ ଲବ୍‌ଧସ୍ତୁ ଯୋ ମୟା ।।
ସକଳଅସ୍ତୁ ସ ମେ ବିଷ୍ଣୋଃ ପ୍ରାସାଦାୟାର୍ଥଯୋଗତଃ ।। (୫)

କିନ୍ତୁ ରାଜଶକ୍ତିର ନିର୍ମାଣ କାର୍ଯ୍ୟରେ ଶୋଷଣ ନୀତିକୁ ଲୁଚାଇ ଦେବାପାଇଁ ପୁରୁଷୋତ୍ତମ ଖଣ୍ଡରେ ଏହିପରି ମହାନୁଭବତାର ଚିତ୍ର ପ୍ରଦାନ କରାଯାଇଛି । ଏଠାରେ ସ୍ମରଣ କରିବାର କଥା ହେଉଛି - ଉତ୍କଳ ଖଣ୍ଡରେ ବର୍ଣ୍ଣିତ ଜଗନ୍ନାଥ ତତ୍ତ୍ୱ ଆଲୋଚନାରେ କେବଳ ସାମନ୍ତବାଦୀ ଚିନ୍ତାଧାରାକୁ ଗୁରୁତ୍ୱ ଦିଆଯାଇଛି ଏବଂ ଏହା ସେହି ଶ୍ରେଣୀ ସମର୍ଥିତ ବ୍ୟକ୍ତି ବିଶେଷଙ୍କର ରଚନା ।

ଶିଶୁ କୃଷ୍ଣ ଦାସ ସାରଳା ମହାଭାରତ ରଚନାର ଅନ୍ତତଃ ୨୦୦/୩୦୦ ବର୍ଷ ପରେ ଦେଉଳ ତୋଳା ରଚନା କରିଥିଲେ । ଏଥିରେ ସ୍କନ୍ଦ ପୁରାଣାନ୍ତର୍ଗତ ପୁରୁଷୋତ୍ତମ ଖଣ୍ଡ ବର୍ଣ୍ଣିତ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାନର ଏକ ପରିମାର୍ଜିତ ବିବରଣୀ ଉପସ୍ଥାପନ କରାଯାଇଛି । ଏଥିରେ ସାମାଜିକ ବ୍ୟବସ୍ଥାର ଏକ ବାସ୍ତବ ଚିତ୍ର ସ୍ଥାନୀତ । ଅନ୍ତତଃ ଶତାବ୍ଦୀ ଶତାବ୍ଦୀ ବ୍ୟାପି ଶିଳ୍ପୀ/ଶ୍ରମିକମାନଙ୍କୁ ରାଜଶକ୍ତି/ସାମନ୍ତ ଶକ୍ତି ଶୋଷଣକରି ନିଜର କୀର୍ତ୍ତି ସ୍ଥାପନ କରିଥିବାର ଏକ କୌତୁହଳ ବର୍ଣ୍ଣନା ଏହି ରଚନାରେ ସ୍ଥାନ ପାଇଛି । ଏଥିରେ ବର୍ଣ୍ଣିତ ହୋଇଛି ଯେ ଇନ୍ଦ୍ରଦ୍ୟୁମ୍ନ ବୃହଦ୍ ଜଗନ୍ନାଥ ମନ୍ଦିର ନିର୍ମାଣ କରି ବ୍ରହ୍ମଲୋକକୁ ଯାଇ ବ୍ରହ୍ମାଙ୍କୁ ମନ୍ଦିର ପ୍ରତିଷ୍ଠା ପାଇଁ ନିମନ୍ତ୍ରଣ କଲେ । ବ୍ରହ୍ମାଙ୍କୁ ସଙ୍ଗରେ ଆଣି ପୁରୁଷୋତ୍ତମ କ୍ଷେତ୍ରରେ ପ୍ରବେଶ କରିବା ବେଳକୁ ତାଙ୍କ ନିର୍ମିତ ମନ୍ଦିରଟି ରାଜା ଗାଲଙ୍କ ଅଧୀନକୁ ଆସି ଯାଇଥିଲା । ଗାଲମାଧବ ଏହି ମନ୍ଦିର ନିର୍ମାଣ କରିଛି ବୋଲି ଦାବୀ କଲା । ଏଥିରେ ଇନ୍ଦ୍ରଦ୍ୟୁମ୍ନ ବ୍ୟଥିତ ଏବଂ ବିସ୍ମିତ ହେଲେ । ତାଙ୍କର ଦୁଇ ପ୍ରକାର ସାକ୍ଷୀଥିଲେ-କଳ୍ପବଟର ଭୂଷଣ୍ଡ କାକ ଏବଂ ତାଙ୍କ (ଇନ୍ଦ୍ରଦ୍ୟୁମ୍ନ) ପୁଷ୍କରିଣୀର କୂର୍ମମାନ । କାକ ସର୍ବ-ପ୍ରଥମେ ବ୍ରହ୍ମାଙ୍କୁ ଜଣାଇଦେଲା ଯେ ଇନ୍ଦ୍ରଦ୍ୟୁମ୍ନ ହିଁ ଏହି ମନ୍ଦିରର ନିର୍ମାତା । ଏହି ସମ୍ବାଦ ଗାଲମାଧବ ଗ୍ରହଣ କରିପାରିଲା ନାହିଁ । ତେଣୁ ବ୍ରହ୍ମା ଓ ଇନ୍ଦ୍ରଦ୍ୟୁମ୍ନ କୂର୍ମମାନଙ୍କ ପାଖକୁ ଯାଇଥିଲେ । କୂର୍ମମାନେ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀର କୂଳରେ ଖରା ଖାଉଥିଲେ । ସେମାନେ ଇନ୍ଦ୍ରଦ୍ୟୁମ୍ନଙ୍କ କାଳରେ ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିର

ନିର୍ମାଣରେ ଶ୍ରମିକ ହିସାବରେ ପଥର ବୋହିଥିଲେ । ସେହି ପ୍ରସଙ୍ଗକୁ କବି ନିମ୍ନ ପ୍ରକାରରେ ପ୍ରକାଶ କରିଛନ୍ତି ।

ଇନ୍ଦ୍ରଦ୍ୟୁମ୍ନରେ ବହୁ କୂର୍ମମାନ ଥାଇ
ବଡ଼ ଦେଉଳକୁ ସେ ପଥରଛନ୍ତି ବହି ।

ସେମାନେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଦେଖିବା ମାତ୍ରେ ଭୟ ପାଇ ପୁଷ୍କରିଣୀ ମଧ୍ୟକୁ ଡେଇଁ ପଡ଼ିଲେ । ବ୍ରହ୍ମା ସେମାନଙ୍କୁ ଅପେକ୍ଷା କରିବାକୁ ଅନୁରୋଧ କରିଥିଲେ । କୂର୍ମମାନେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଭୟ କରନ୍ତି ବୋଲି କହିଲେ । ବ୍ରହ୍ମା ଇନ୍ଦ୍ରଦ୍ୟୁମ୍ନଙ୍କୁ ଭୟ କରିବାର କାରଣ ପଚାରିବାରୁ କୂର୍ମମାନେ ଉତ୍ତର ଦେଲେ ଯେ ଇନ୍ଦ୍ରଦ୍ୟୁମ୍ନ ସେମାନଙ୍କୁ ବହୁତ ଶାସ୍ତି ଦେଇଥିଲେ । ସେମାନଙ୍କର ଜ୍ଞାତିକୁଟୁମ୍ବମାନେ ବଡ଼ଦେଉଳକୁ ପଥର ବୋହି ବୋହି ମରି ଯାଇଥିଲେ । ଏହି କଥାଟି ସ୍ମରଣ ମାତ୍ରେ ସେମାନେ ଦୁଃଖ ପାଆନ୍ତି । ପ୍ରସଙ୍ଗଟିକୁ ଅତି ଚମତ୍କାର ଭାବରେ କବି ଉପସ୍ଥାନ କରିଛନ୍ତି :

କୂର୍ମମାନେ ବୋଲୁଛନ୍ତି ବ୍ରହ୍ମା ମୁଖ ଚାହିଁ
ଇନ୍ଦ୍ରଦ୍ୟୁମ୍ନକୁ ସଙ୍ଗେ ଆଣିଛ ଗୋସାଇଁ
ତାହା ଡରେ ପଳାଉଛୁ ନ ପାରିବୁ ରହି
ବ୍ରହ୍ମାଏ ବୋଇଲେ ଏ ତୁମ୍ଭର କିସ କଲା
କୂର୍ମମାନେ ବୋଇଲେ ଏ କେତେ ଶାସ୍ତି ଦେଲା
ଆମ୍ଭ ଲକ୍ଷେ କୁଟୁମ୍ବ ଯେ ଏହାଯୋଗୁଁ ମଲେ
ବଡ଼ ଦେଉଳକୁ ସେ ପଥର ବୁହାଇଲେ
ନିତି ନିତି ଗଲୁ ଦେବ ହେଉଅଛି ଜ୍ୱାଳା
ତାହାକୁ ଦେଖିଣ ଆମ୍ଭେ ହେଲୁ ମତି ଭୋଳା
ଦେଉଳ ଗଢ଼ାକୁ ଆମ୍ଭେ ବହିଛୁ ପଥର
ସ୍ୱରୂପ କହିଲୁ ଆମ୍ଭେ ଶୁଣ ବେଦବର

କୂର୍ମମାନଙ୍କ ମୁଖର ଏହି ଶାଣିତ, ହୃଦୟ ବିଦାରକ ବାଣୀରେ ଅତୀତରେ ରାଜଶକ୍ତି/ସାମନ୍ତଶକ୍ତିର ଶିଳ୍ପୀ/ଶ୍ରମିକ ଶୋଷଣ ନୀତି ଦ୍ୱାରା ବୃହଦ୍ ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଥିବାର ଏକାନ୍ତ ନିର୍ଭରଯୋଗ୍ୟ ତଥ୍ୟ ପ୍ରକାଶ ପାଇଛି । ସମଗ୍ର ମଧ୍ୟଯୁଗୀୟ ଓଡ଼ିଆ ସମାଜରେ ଥିବା ପୀଡ଼ା/ବାଧ୍ୟତାମୂଳକ ସାମନ୍ତ ସେବା (Involuntary Labour) ଏଥିରୁ ସୂଚିତ ହୋଇଥାଏ । ଦେଉଳ ତୋଳାରେ କବି କୂର୍ମମାନଙ୍କୁ

ଅତୀତର ଶ୍ରମିକମାନଙ୍କର ବିକୃତ ଅବତାର ବୋଲି ପ୍ରକାଶ କରିଛନ୍ତି ଏବଂ କିପରି ରାଜା ସେହି ଶ୍ରମିକମାନଙ୍କୁ ବିନା ପୁରସ୍କାରରେ ମନ୍ଦିର ନିର୍ମାଣ କରିବା ପାଇଁ ନିର୍ଦ୍ଦେଶ ଦେଇ ନିଜକୁ ଯଶସ୍ୱୀ ପୁରୁଷ ରୂପେ ଇତିହାସର କଳଙ୍କିତ ପୃଷ୍ଠାରେ ଅବତାରଣା କରିଥିଲେ ତାହାର ଏକ ନିର୍ଭରଯୋଗ୍ୟ ବିବରଣୀ ସେ ପ୍ରଦାନ କରିଛନ୍ତି । ଏଥିରେ ଧର୍ମଧାରାର ପ୍ରସାର ନାମରେ ରାଜଶକ୍ତିର ଶୋଷଣ ନୀତିର ଶାଣିତ ବିବରଣୀ ସ୍ଥାନ ପାଇଛି ।

ମଧ୍ୟଯୁଗୀୟ ଓଡ଼ିଶାର ବିଭିନ୍ନ ରାଜବଂଶର ତାମ୍ରଫଳକ ବର୍ଣ୍ଣିତ ବିବରଣୀରେ ସମାଜର ପୀଡା (ବାଧ୍ୟତାମୂଳକ ସାମନ୍ତ ସେବା / ବେଠୀ ବେଗାରୀ) ଏକ ମୁଖ୍ୟ ଦିଗ ରୂପେ ଗୃହୀତ ହୋଇଥିବାର ପ୍ରମାଣ ରହିଛି । ରାଜଶକ୍ତିର ପୀଡା, ବାଧା ଓ ଉପଦ୍ରବ ପ୍ରଭୃତି ଶବ୍ଦଗୁଡ଼ିକ ସାମନ୍ତ ପ୍ରତି ବ୍ୟବହାର ହେଉନଥିଲା । ଯେତେବେଳେ ରାଜଶକ୍ତି ସାମନ୍ତବର୍ଗଙ୍କୁ କୌଣସି ଗ୍ରାମ ଦାନ କରୁଥିଲେ, ତାହାର ପ୍ରମାଣ ବହନ କରୁଥିବା ତାମ୍ରଲିପିରେ ସେ ସାମନ୍ତ ଉପରେ କୌଣସି ବାଧା ରଖିବାର ବିବରଣୀ ସ୍ଥାନ ଦେଉନଥିଲେ । କିନ୍ତୁ ସାମନ୍ତର ପ୍ରଜା ସହିତ ସମ୍ପର୍କ ରାଜଶକ୍ତିର ନିୟନ୍ତ୍ରଣ ବାହାରେ ଥିଲା । ସାମନ୍ତ ପ୍ରଜାକୁ ବିଭିନ୍ନ ଉଦ୍ଦେଶ୍ୟରେ ବ୍ୟବହାର କରି ନିଜର ସୁବିଧା ହାସଲ କରୁଥିଲା । ଏହାଦ୍ୱାରା ସାମନ୍ତର ରାଜଶକ୍ତି ସହିତ ତିକ୍ତ ସମ୍ପର୍କ ରହି ନଥିଲା । ବରଂ ରାଜଶକ୍ତିକୁ ଅଧିକରୁ ଅଧିକ ସୁଖ ଯୋଗାଇ ଦେବା ପାଇଁ ସାମନ୍ତ ବିନା ମୂଲ୍ୟରେ ତାହାର ପ୍ରଜାକୁ ସେବା କରିବାକୁ ପଠାଇ ଦେଉଥିଲା । ଓଡ଼ିଶାର ସଂଖ୍ୟାଧିକ ମନ୍ଦିର, ସେ ସବୁରେ ଥିବା ଉଚ୍ଚକୋଟୀର ଭାସ୍କର୍ଯ୍ୟ ଏବଂ ତାମ୍ର ଲେଖାଗୁଡ଼ିକରେ ବର୍ଣ୍ଣିତ ସାମନ୍ତମାନଙ୍କର ପ୍ରଜା ମାଧ୍ୟମରେ ସୁଖ/ଯଶ ଲାଭ କରିବାର ପ୍ରମାଣିକ ବିବରଣୀରୁ ସ୍ପଷ୍ଟ ଜଣାଯାଏ ଯେ ମଧ୍ୟ ଯୁଗୀୟ ଓଡ଼ିଶାରେ ଉର୍ଦ୍ଧ୍ୱସ୍ତରର ଲୋକମାନେ ନିଜର ସକଳ ସୁଖ ସୁବିଧା ନିମନ୍ତେ ବିଶେଷତଃ ଆପଣାର ଗୌରବ ପାଇଁ ପ୍ରାସାଦ ଓ ମନ୍ଦିର ନିର୍ମାଣ ପ୍ରକଳ୍ପରେ ନିମ୍ନସ୍ତରର ଲୋକମାନଙ୍କୁ ବିନା ପୁରସ୍କାରରେ ଖଟାଇ ପାରୁଥିଲେ । ଯେଉଁ ମନ୍ଦିରଗୁଡ଼ିକ ସେମାନଙ୍କର ଶ୍ରମରୁ ମୁଣ୍ଡଟେକି ଉଠିଲା ସେଥିରେ ସାମନ୍ତ / ରାଜଶକ୍ତିର ଗୌରବ / ଗାରିମାମୟ କୀର୍ତ୍ତିର ବର୍ଣ୍ଣନା ସ୍ଥାନ ପାଇଲା । ଅଥଚ ସେହି ଶିଳ୍ପୀ / ଶ୍ରମିକର ମହାନ ଅବଦାନର ସାମାନ୍ୟ ଚିହ୍ନ ମଧ୍ୟ ରହିପାରି ନଥିଲା । ଶିଶୁ କୃଷ୍ଣ ଦାସଙ୍କ ଦେଉଳ ତୋଳାରେ ସେହି ଯୁଗାନ୍ତକାରୀ ଚିନ୍ତାର ସ୍ୱାକ୍ଷର ରହିଛି । ଯେଉଁ ଶିଳ୍ପୀ / ଶ୍ରମିକମାନେ ବେଦନାଭରା ଜୀବନରେ ଉତ୍ତୁଙ୍ଗ ଜଗନ୍ନାଥ ମନ୍ଦିର ନିର୍ମାଣ କରାଇଗଲେ, ସେମାନଙ୍କର

ଦୟନୀୟ ଅବସ୍ଥାର ଚିତ୍ର ଅତି ଜୀବନ୍ତ ଭାବରେ ଏଥିରେ ପ୍ରକାଶିତ । ଶିଶୁ କୃଷ୍ଣଦାସ ଖୁବ୍ ସମ୍ଭବତଃ ଏକ ମାନବିକତା ଭରା, ସାମ୍ୟବାଦୀ ସମାଜର ସ୍ୱପ୍ନ ମଧ୍ୟଯୁଗର ଏହି କାଳରେ ଦେଖି ପାରିଥିଲେ । କବି ଏହି ମଧ୍ୟଯୁଗୀୟ ସାମନ୍ତବାଦୀ ସମାଜର ଦୂଷିତ ଚିତ୍ର ପରିବେଷଣ କରିବା ସଙ୍ଗେ ସଙ୍ଗେ ସିଦ୍ଧାନ୍ତ ଗ୍ରହଣ କରିଛନ୍ତି ଯେ ରାଜା ଏପରି ବାଧତାମୂଳକ ସେବାକୁ ଉତ୍ସାହିତ କରୁଥିବାରୁ ତାଙ୍କପରେ ତାଙ୍କ ବଂଶରେ ଆଉ କେହି ରହିବେ ନାହିଁ, ଅର୍ଥାତ୍ ରାଜଶକ୍ତିର ଏହି ଅତ୍ୟାଚାରୀ ଚିନ୍ତାର ଶେଷ ହେବା ଉଚିତ୍ । ଏହି ପ୍ରସଙ୍ଗଟିକୁ କବି ନିମ୍ନ ପ୍ରକାରରେ ପ୍ରକାଶ କରିଛନ୍ତି :

ତୁମ୍ଭେ ଯେବେ ବର ଦେବ ମାଗୁଅଛି ମୁହିଁ
ମୋହର ବଂଶରେ କେହି ନଥିବେ ଗୋସାଇଁ
ଠାକୁର ବୋଇଲେ ଏହା ମାଗୁ କାହିଁପାଇଁ
ତୋତେ ଘେନି ଯୁଗ ରାଜ୍ୟ କରୁଥିବି ମୁହିଁ
ଇନ୍ଦ୍ରଦ୍ୟୁମ୍ନ ବୋଲେ ମୋର ତେଣେ କାର୍ଯ୍ୟ ନାହିଁ
ସବୁଦିନେ କୀରତି ମୋହରି ଥିବ ରହି
ପୁତ୍ର ନାତି ବୋଲିବେ ଯେ ଦେଉଳ ଆମ୍ଭର
ଆମ୍ଭର ବୋଇଲେ ଧର୍ମ ଯିବ ଯେ ମୋହର

ସ୍କନ୍ଦ ପୁରାଣ ଅନ୍ତର୍ଗତ ପୁରୁଷୋତ୍ତମ ଖଣ୍ଡରେ ଥିବା ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାନରେ ଏହି ପ୍ରସଙ୍ଗଟି ସ୍ଥାନ ପାଇ ନାହିଁ । ସର୍ବ-ପ୍ରଥମେ ଏହା ଜୟାନନ୍ଦଙ୍କ ରଚିତ ''ଚୈତନ୍ୟ ମଙ୍ଗଳ'' ନାମକ ଏକ ଜୀବନୀ ଗ୍ରନ୍ଥରେ ଉପସ୍ଥାପିତ ହୋଇଛି । ଡକ୍ଟର ଗଗନେନ୍ଦ୍ର ନାଥ ଦାଶ ପ୍ରସଙ୍ଗଟିକୁ ଗ୍ରହଣ କରି ଅନ୍ୟ ଏକ ଦୃଷ୍ଟିରୁ ଏକ ଚମତ୍କାର ବ୍ୟାଖ୍ୟା ଦେଇଛନ୍ତି :

"This request by Indradyumna though often cited as the supreme self-sacrifice on the part of Indradyumna has in fact, been carefully put in his mouth by the priests who sought to prevent the interference of Prataparudra in the affairs of Jagannath cult declaring it as immoral and against the express wish of Indradyumna I, the founder of the cult." (୬)

ପ୍ରତାପରୁଦ୍ର ଗଜପତି ଜଗନ୍ନାଥ ପୀଠରେ ନିଜର କ୍ଷମତା ବିସ୍ତାର କରିଥିବା କଥାରେ ସତ୍ୟତା ଥାଇପାରେ । କିନ୍ତୁ କେବଳ ଏହିପରି ଏକ କାରଣରୁ ଏହି ପ୍ରସଙ୍ଗଟି ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାରେ ପ୍ରବେଶ କରାଯାଇଥିଲା ବୋଲି କହିବା ଦ୍ୱାରା ସମ୍ପୂର୍ଣ୍ଣ ସତ୍ୟର

ସ୍ୱରୂପ ଉଦ୍‌ଘାଟିତ ହୋଇପାରିବ ନାହିଁ । ଅନ୍ୟ ପକ୍ଷରେ ଶତାବ୍ଦୀ ଶତାବ୍ଦୀ ଧରି ଶିଳ୍ପୀ/ଶ୍ରମିକକୁ ରାଜଶକ୍ତି ଶୋଷଣ କରୁଥିବାରୁ ଶିଶୁ କୃଷ୍ଣ ଦାସ ଏପରି ଉଦ୍ୟମରୁ ରାଜଶକ୍ତିର ନିବୃତ୍ତି ପାଇଁ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାନରେ କୂର୍ମ ପ୍ରସଙ୍ଗର ବିବରଣୀରେ ଏପରି ବିଷୟର ଅବତାରଣା କରିଥିବା ସମ୍ଭବ । ଶିଶୁ କୃଷ୍ଣଦାସ ଓ ଜୟାନନ୍ଦଙ୍କର ବହୁ ପୂର୍ବରୁ ସାରଳାଦାସ ମଧ ରାଜଶକ୍ତି/ସାମନ୍ତ ଶକ୍ତିର ପ୍ରାଧାନ୍ୟକୁ ଖର୍ବ କରିବା ପାଇଁ ଗାଲମାଧବ ନୀଳମାଧବଙ୍କୁ ପାଇବା ପାଇଁ ଶବରମାନଙ୍କୁ ଦଣ୍ଡ ଦେବା ପ୍ରସଙ୍ଗରେ ସ୍ୱର ଉତ୍ତୋଳନ କରିଛନ୍ତି :

"ମମଭଗନ୍ତଙ୍କୁ କଲୁ ଯେ ଝିଂଘାସ/ଆହୋ ଗାଲବରାଜା ତୋର ନ ରହିବ ବଂଶ" ।

ଅନ୍ତତଃ ସାରଳା ଦାସଙ୍କ କାଳରୁ ରାଜଶକ୍ତି/ସାମନ୍ତଶକ୍ତିର ଧର୍ମକ୍ଷେତ୍ର ଗୁଡ଼ିକରେ ଅଯଥା କ୍ଷମତାବିସ୍ତାର ଓ ଯଶଲାଭ ପାଇଁ ଶ୍ରମିକ/ଶିଳ୍ପୀମାନଙ୍କର ଅପବ୍ୟବହାର ଓ ଶୋଷଣ ବିରୁଦ୍ଧରେ ସ୍ୱର ଆରମ୍ଭ କରାଯାଇଥିଲା ଓ ତାହା ଅଷ୍ଟାଦଶ ଶତାବ୍ଦୀ ବେଳକୁ ଦେଉଳତୋଳା ପରି ଗ୍ରନ୍ଥରେ ବିଶେଷଭାବରେ ପ୍ରକାଶ କରାଯାଇଥିଲା ।

### ପ୍ରସଙ୍ଗ ନିର୍ଦ୍ଦେଶ


୧. Rai, G.K. "Involuntary Labour in Ancient India," Chaitanya Publishing House, Allahabad, 1981., Yadava, B.N.S., "Problem of the inter action between Socio-economic classes in the early mediaeval comlex," Indian Historical Review, Vol. III, No. I, P. 43-58

୨. (ମୂଷଳୀ ପର୍ବ, ଓଡ଼ିଶା ସାଂସ୍କୃତିକ ବିଭାଗ ଦ୍ୱାରା ପ୍ରକାଶିତ "ସାରଳା ମହାଭାରତ")

୩. ଏ ସମ୍ପର୍କରେ ବିସ୍ତାରିତ ଆଲୋଚନା ମୋର ପ୍ରବନ୍ଧ "ପତିତପାବନ ଜଗନ୍ନାଥ", ଫାଲଗୁନି, ୬ଷ୍ଠ ବର୍ଷ, ୭୨ତମ ସଂଖ୍ୟା, ୧୯୮୯, ଜାନୁୟାରୀ-ମାର୍ଚ୍ଚ ପୃ ୯୭-୧୦୦ରେ କରାଯାଇଛି)

୪. ଦାଶ, କୈଳାସ ଚନ୍ଦ୍ର "Gangeswar-Chodaganga and the temple of Purusottama-jagannatha, Orissa Historical Research Journal, Vol. XXXII, Nos. III and IV. P. 78-79)

୫. ସ୍କନ୍ଦ ପୁରାଣ, ଉତ୍କଳ ଖଣ୍ଡ ୨୦ ଅଧ୍ୟାୟ, ଶ୍ଳୋକ - ୪୬-୪୮

୬. Dash, G.N., "The Evolution of the Priestly Power : The Suryavamsa period, in, "The cult of Jagannath and the Regional Tradition of Orissa," edited by Eschmann, Kulke and Tripathy, Delhi, 1978, P. 220.




# ଇନ୍ଦ୍ରଦ୍ୟୁମ୍ନ

ଗଙ୍ଗବଂଶୀ ସମ୍ରାଟମାନଙ୍କର ଅଭିଲେଖ (ତାମ୍ରଫଳକ) ମାନଙ୍କରେ ଓଡ଼ିଶାରେ ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗଦେବଙ୍କୁ ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିରର ନିର୍ମାତା ହିସାବରେ ଗ୍ରହଣ କରି ନିଆଯାଇଥିଲେ ମଧ୍ୟ ପୁରାଣମାନଙ୍କରେ ତଥା ଓଡ଼ିଶାର ବିଭିନ୍ନ ପରମ୍ପରାରେ ମାଳବାଧିପତି ଇନ୍ଦ୍ରଦ୍ୟୁମ୍ନଙ୍କୁ ନିର୍ଦ୍ଦିଷ୍ଟ ଭାବରେ ଏହି ମନ୍ଦିରର ନିର୍ମାତା ତଥା ବିଗ୍ରହ ପ୍ରତିଷ୍ଠାତା ହିସାବରେ ବର୍ଣ୍ଣନା କରାଯାଇଛି । (୧) କିନ୍ତୁ କୌଣସି ମଧ୍ୟଯୁଗୀୟ ପରମ୍ପରାରେ (ସାହିତ୍ୟିକ ଉପାଦାନରେ) ଚୋଡ଼ଗଙ୍ଗ ଇନ୍ଦ୍ରଦ୍ୟୁମ୍ନ ବୋଲି ପରିଚିତ ହୋଇପାରି ନାହାନ୍ତି । ଏହା ଫଳରେ ଗବେଷକ ଓ ପାଠକ ( ଭକ୍ତ ଓ ତୀର୍ଥଯାତ୍ରୀ) ଜଗନ୍ନାଥ ମନ୍ଦିର ନିର୍ମାଣ ସମ୍ପର୍କରେ କିଛି ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଥାଆନ୍ତି । ଗବେଷକ ଚୋଡ଼ଗଙ୍ଗ ଦେବଙ୍କୁ ଜଗନ୍ନାଥ ମନ୍ଦିରର ନିର୍ମାତା ହିସାବରେ ଗ୍ରହଣ କରିନେଲାବେଳେ ଭକ୍ତ/ସେବକ/ତୀର୍ଥଯାତ୍ରୀ ଇନ୍ଦ୍ରଦ୍ୟୁମ୍ନଙ୍କର ଏହି ଅବଦାନ ଗାଥାରେ ବିହ୍ୱଳ ହୋଇଯାଆନ୍ତି । ଏଣୁ ଏହି ଆଲୋଚନାରେ ଇନ୍ଦ୍ରଦ୍ୟୁମ୍ନଙ୍କୁ କାହିଁକି ଓ କିପରି ଜଗନ୍ନାଥ ମନ୍ଦିର ନିର୍ମାଣ ପ୍ରକଳ୍ପ ସହିତ ଜଡ଼ିତ କରାଗଲା, ତାହାର ଏକ ବିଶ୍ଳେଷଣାତ୍ମକ ବିବରଣୀ ସ୍ଥାନ ଦିଆଯାଇଛି ।

ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗ ମହାଭାରତ (ସଂସ୍କୃତ)ଠାରୁ ଆରମ୍ଭ କରି କେତେକ ପୁରାଣମାନଙ୍କରେ ସୂଚିତ ହୋଇଥିଲେ ମଧ୍ୟ ସ୍କନ୍ଦପୁରାଣାନ୍ତର୍ଗତ ଉତ୍କଳଖଣ୍ଡ, ବ୍ରହ୍ମପୁରାଣାନ୍ତର୍ଗତ ପୁରୁଷୋତ୍ତମ ଖଣ୍ଡ, କପିଳ ସଂହିତା, ନୀଳାଦ୍ରି ମହୋଦୟ ପ୍ରଭୃତିରେ ତାଙ୍କୁ ଜଗନ୍ନାଥ ମନ୍ଦିର ନିର୍ମାଣ ପ୍ରକଳ୍ପ ସହିତ ସମ୍ପୂର୍ଣ୍ଣ ଭାବରେ ସଂଶ୍ଳିଷ୍ଟ କରାଯାଇଛି । (୨) ସ୍କନ୍ଦପୁରାଣାନ୍ତର୍ଗତ ପୁରୁଷୋତ୍ତମ ଖଣ୍ଡରେ ଏହି ପ୍ରସଙ୍ଗଟିର ଯେପରି ବ୍ୟାପକ ଆଲୋଚନା କରାଯାଇଛି, ଏହା ପୂର୍ବେ ରଚିତ ପୁରାଣମାନଙ୍କରେ ସେପରି ଭାବରେ

ଆଲୋଚନା କରାଯାଇନାହିଁ । ଏହାପରେ ରଚନା କରାଯାଇଥିବା ସମସ୍ତ ଅନ୍ୟାନ୍ୟ ପୁରାଣମାନଙ୍କର ପୁରୁଷୋତ୍ତମ ଖଣ୍ଡମାନଙ୍କରେ ତଥା ଓଡ଼ିଆ ସାହିତ୍ୟରେ ଏହି ଇନ୍ଦ୍ରଦ୍ୟୁମ୍ନଙ୍କୁ ଶ୍ରୀମନ୍ଦିର ନିର୍ମାତା ହିସାବରେ ଗ୍ରହଣ କରାଯାଇଛି । କେବଳ ପଦ୍ମପୁରାଣରେ ପୁରୁଷୋତ୍ତମ ପୀଠ ସମ୍ପର୍କିତ ଆଲୋଚନାରେ ଇନ୍ଦ୍ରଦ୍ୟୁମ୍ନ ପରିବର୍ତ୍ତେ ରତ୍ନଗ୍ରୀବ ନାମକୁ ଗ୍ରହଣ କରାଯାଇଛି । (୩) ସ୍କନ୍ଦପୁରାଣର ପୁରୁଷୋତ୍ତମ ଖଣ୍ଡର ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗ ଏହା ପୂର୍ବରୁ ରଚିତ ହୋଇଥିବା ପୁରାଣମାନଙ୍କରୁ ଗୃହୀତ ହୋଇଥିଲେ ମଧ କେତେକ ନୂତନ ତଥ୍ୟର ଅପୂର୍ବ ସମାବେଶ ଫଳରେ ଶ୍ରୀ ଜଗନ୍ନାଥ ମନ୍ଦିରର ନିର୍ମାଣ ଓ ବିଗ୍ରହ ପ୍ରତିଷ୍ଠାର ଏକ ମନୋଜ୍ଞ ଇତିହାସ ଏଥିରେ ଉପସ୍ଥାପିତ । (୪)

ସ୍କନ୍ଦପୁରାଣର ବିଭିନ୍ନ ଖଣ୍ଡଗୁଡ଼ିକ ଯେଉଁ ସମୟରେ ରଚନା କରାଯାଇଥାଉ ନା କାହିଁକି ଏହାର ଉତ୍କଳଖଣ୍ଡ (ପୁରୁଷୋତ୍ତମ କ୍ଷେତ୍ର ମହାତ୍ମ୍ୟ ସମ୍ପର୍କିତ) ଗଙ୍ଗେଶ୍ୱର-ଚୋଡ଼ଗଙ୍ଗଙ୍କ ରାଜତ୍ୱର ଅବସାନର ଯଥେଷ୍ଟ ପରେ ଏବଂ ଦ୍ୱିତୀୟ ନରସିଂହଦେବ (ଖ୍ରୀ. ୧୨୭୮- ୧୩୦୫) ରାଜତ୍ୱର ଶେଷ ପୂର୍ବରୁ ରଚିତ ହୋଇଥିବାର ଅନୁମାନ କରାଯାଇପାରେ । ଏଥିରେ ବର୍ଣ୍ଣିତ ହୋଇଥିବା ପ୍ରସଙ୍ଗରେ ସମ୍ପୂର୍ଣ୍ଣ ବୃହଦ୍ ଜଗନ୍ନାଥ ମନ୍ଦିର ନିର୍ମାଣ, ବିଗ୍ରହମାନଙ୍କର ପ୍ରତିଷ୍ଠା ଏବଂ ବ୍ୟାପକ ସେବାପୂଜାର ବିବରଣୀ, ବିଭିନ୍ନ ଯାତ୍ରା (ଯଥା- ଗୁଣ୍ଡିଚା ବା ରଥଯାତ୍ରା)ର ଉଲ୍ଲେଖ ଥିବାରୁ ଏହାର ରଚନା ଗଙ୍ଗବଂଶୀ ସମ୍ରାଟମାନଙ୍କର ରାଜତ୍ୱ କାଳରେ ହିଁ ସମ୍ଭବ ହୋଇଥିଲା । (୫) ଗଙ୍ଗବଂଶୀ ସମ୍ରାଟମାନଙ୍କର ଶିଳାଲିପି ଓ ତାମ୍ରଫଳକଗୁଡ଼ିକରେ ଶ୍ରୀ ଜଗନ୍ନାଥ ମନ୍ଦିରର ବ୍ୟାପକ ସେବାର ବିବରଣୀ ରହିଛି । କିନ୍ତୁ ଏହି ପୁରାଣଖଣ୍ଡ ଅନୁସାରେ ଇନ୍ଦ୍ରଦ୍ୟୁମ୍ନ ହିଁ ଶ୍ରୀମନ୍ଦିରର ନିର୍ମାତା ।

ପୁରୁଷୋତ୍ତମ ଖଣ୍ଡର ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗର ଆଲୋଚନାରୁ ତଥା ଶ୍ରୀ ପୁରୁଷୋତ୍ତମ ମନ୍ଦିର ସମ୍ପର୍କିତ ସକଳ ଅଭିଲେଖୀୟ ବିବରଣୀରୁ ସ୍ପଷ୍ଟ ଜଣାଯାଏ ଯେ ଇନ୍ଦ୍ରଦ୍ୟୁମ୍ନ ଜଣେ ପରିଚିତ ଇତିହାସ ଚିହ୍ନିତ ବ୍ୟକ୍ତି ନୁହଁନ୍ତି ।

ବିଭିନ୍ନ ସମୟରେ ଇନ୍ଦ୍ରଦ୍ୟୁମ୍ନଙ୍କର ଐତିହାସିକ ପ୍ରାମାଣିକତା ପାଇଁ ଆଲୋଚକମାନେ ଏହି ନାମ ସହିତ ମେଳ ଖାଉଥିବା ଇତିହାସ ଓ କିମ୍ବଦନ୍ତୀ ପ୍ରସିଦ୍ଧ ରାଜାମାନଙ୍କୁ ଆଲୋଚନାର ପରିସରକୁ ଆଣିବାକୁ ଚେଷ୍ଟା କରିଥିଲେ ମଧ ପ୍ରକୃତ ସତ୍ୟର ସ୍ୱରୂପ ଆବିଷ୍କାର କରିପାରି ନାହାନ୍ତି । (୬) ଇନ୍ଦ୍ରଦ୍ୟୁମ୍ନ ଇନ୍ଦ୍ରଦମନ, ଇନ୍ଦ୍ରବଳ

ବା ଇନ୍ଦ୍ରଭୂତି ହୋଇନପାରନ୍ତି । ଏମାନଙ୍କୁ ନାମ ଦୃଷ୍ଟିକୋଣରୁ ଇନ୍ଦ୍ରଦ୍ୟୁମ୍ନ ସହିତ ସଂଯୋଜନା କରିବା ପୂର୍ବରୁ ପୁରୁଷୋତ୍ତମ ଖଣ୍ଡର ଅନ୍ୟାନ୍ୟ ପ୍ରସଙ୍ଗ ତଥା ଏହି ରାଜାମାନଙ୍କର କାର୍ଯ୍ୟାବଳୀକୁ ମିଳାଇଦେବା ଏକାନ୍ତ ଆବଶ୍ୟକ । କିନ୍ତୁ ସେପରି ସଂଯୋଜନା ସଫଳ ହୋଇପାରିଛି କି ?

ଇନ୍ଦ୍ରଦ୍ୟୁମ୍ନଙ୍କର ଐତିହାସିକତା ଉପରେ ଆଲୋଚନା କରିବାକୁ ଯାଇ ସ୍ୱର୍ଗତ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମତପ୍ରଦାନ କରନ୍ତି-

Indradyumna who prominently figures in all the legends as the builder of the first temple of Jagannatha, still remains a legendary person and his historicity has not yet been established. Had it been possible to prove his historicity, it would have been possible to throw some light on the early history of the shrine. (୭)

ପୁରାଣ ବର୍ଣ୍ଣିତ ଇନ୍ଦ୍ରଦ୍ୟୁମ୍ନଙ୍କର ଐତିହାସିକ ପ୍ରାମାଣିକତାର ଅନ୍ୱେଷଣ ଏଯାବତ୍ ଏକ ବୃଥା ପ୍ରଚେଷ୍ଟା ହୋଇ ରହିଛି । ଡକ୍ଟର କାହ୍ନୁ ଚରଣ ମିଶ୍ର ଏ ସମ୍ପର୍କରେ ଏକ ସୂଚନା ଦେଇ କହନ୍ତି:

The explanation offered by the author of Daru- Brahma Gita appears to be more plausible. He says that Indradyumna is not a particular person but a hereditary title. That is why Yayati is styled as Indradyumna II and Ramachandra Deva of Bhoi dynasty was given the title Abhinava Indradyumna, for both of them reinstalled the deities in the temple. (୮)

ଡକ୍ଟର ମିଶ୍ର ସତ୍ୟର ନିକଟବର୍ତ୍ତୀ ହେବାକୁ ଉଦ୍ୟମ କରିଛନ୍ତି; ତାଙ୍କର ଆଲୋଚନାରେ ପ୍ରଥମ ଇନ୍ଦ୍ରଦ୍ୟୁମ୍ନ ଉପାଧିର ମୂଳକଥାର ସୂଚନା ନାହିଁ ।

ତେବେ ଏଠାରେ ଏତିକି କୁହାଯାଇପାରେ, ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିରର ନିର୍ମାଣ ଓ ତହିଁରେ ବିଗ୍ରହମାନଙ୍କର ପ୍ରତିଷ୍ଠା ପାଇଁ ବିଭିନ୍ନ ପର୍ଯ୍ୟାୟରେ ରାଜଶକ୍ତିର ଭୂମିକାକୁ ପ୍ରକାଶ କରିବା ପାଇଁ ଇନ୍ଦ୍ରଦ୍ୟୁମ୍ନଙ୍କୁ ଏକ ନିର୍ଭୁଲ ସଂକେତ ରୂପେ ଗ୍ରହଣ କରାଯାଇଛି ।

ସେଥିପାଇଁ ଜର୍ମାନୀ ଐତିହାସିକ ଷ୍ଟିଟେନ୍‌କ୍ରୋନ (H.v. Stietencron R. Geibଙ୍କ ଆଲୋଚନାକୁ କେତେକାଂଶରେ ସମର୍ଥନ କରି ମତପ୍ରଦାନ କରିଛନ୍ତି:

The Indradyumna legend while patently describing in its different portions the achievements of all the three rulers combined into one mythical person plays with four stages of development

which are projected into the past, but none of which belongs to pre-Yayati period. (୯)

କିନ୍ତୁ ପ୍ରଶ୍ନ ହେଉଛି, ଯଦି ଇନ୍ଦ୍ରଦ୍ୟୁମ୍ନ ଏହି ରାଜଶକ୍ତିର ସଂକେତ ସ୍ୱରୂପ, ତେବେ କାହିଁକି ଓ କିପରି ଏହି ନାମକୁ ଅଧିକାଂଶ ପୁରାଣକାର ଗ୍ରହଣ କରି ନେଇଥିଲେ ? ପୁରାଣ ଖଣ୍ଡରେ ଏ ପ୍ରସଙ୍ଗ ଆସିବା ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରରେ ବା ଓଡ଼ିଶାରେ ଇନ୍ଦ୍ରଦ୍ୟୁମ୍ନ ସମ୍ପର୍କରେ ଜନଶ୍ରୁତି ଥିଲା କି ? କିମ୍ବା ପୁରାଣରେ ସୂଚିତ ହେବା ପରେ ଏପରି ଜନଶ୍ରୁତି ସୃଷ୍ଟି କରାଗଲା ବିଭିନ୍ନ ଉଦ୍ଦେଶ୍ୟ ନେଇ ? ଏସବୁ ସମ୍ପର୍କରେ ବର୍ତ୍ତମାନ ଜ୍ଞାନଦୃଷ୍ଟିରୁ କେତେକ ସମ୍ଭାବ୍ୟ ସିଦ୍ଧାନ୍ତ ନିଆଯାଇଛି ।

ସ୍କନ୍ଦପୁରାଣର ପୁରୁଷୋତ୍ତମ ମହାତ୍ମ୍ୟ ରଚିତ ହେବା ପୂର୍ବରୁ ବିଭିନ୍ନ ପୁରାଣମାନଙ୍କରେ ଇନ୍ଦ୍ରଦ୍ୟୁମ୍ନ ନାମର ଆଭାସ ମିଳେ । ମହାଭାରତର ବନପର୍ବର ୧୯୮ ଅଧ୍ୟାୟରେ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାନର ବର୍ଣ୍ଣନା ରହିଛି । ପାଣ୍ଡବମାନଙ୍କର ତଥା ଋଷିମାନଙ୍କର ପ୍ରଶ୍ନର ଉତ୍ତରରେ ମାର୍କଣ୍ଡେୟ ମୁନି ତାଙ୍କଠାରୁ ଆହୁରି ପ୍ରାଚୀନତର ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ବୋଲି ସୂଚନା ଦେଇଥିଲେ । ସେ ଇନ୍ଦ୍ରଦ୍ୟୁମ୍ନ ସହସ୍ରବାର ଯଜ୍ଞ କରିଥିଲେ ଏବଂ ସେତେବେଳର ଦାନ ସକାଶେ ଅଣାଯାଇଥିବା ଗୋରୁଙ୍କ ଖୁରା ବାଜି ଯେଉଁ ପୁଷ୍କରିଣୀ ତିଆରି ହୋଇଯାଇଥିଲା, ତାହାକୁ ମହାଭାରତ ରଚନା କାଳରେ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ନାମରେ ନାମିତ କରାଯାଇଥିଲା । (୧୦)

ଏହି ପ୍ରସଙ୍ଗରେ ଇନ୍ଦ୍ରଦ୍ୟୁମ୍ନ ନାମ ଅତିପ୍ରାଚୀନ ବୋଲି ଆଭାସ ମିଳେ । ସେ ପୁଣି ମାର୍କଣ୍ଡେୟ ମୁନିଙ୍କଠାରୁ ପୁରାତନ । ଏଥିରୁ ସ୍ପଷ୍ଟ ମନେ ହୁଏ ଯେ ମହାଭାରତ ରଚନା କାଳର ଇନ୍ଦ୍ରଦ୍ୟୁମ୍ନ ଅତି ପ୍ରାଚୀନ ସମ୍ରାଟ ଥିଲେ । ପରବର୍ତ୍ତୀ ସମସ୍ତ ପୁରାଣ ଇନ୍ଦ୍ରଦ୍ୟୁମ୍ନ ଆଭାସ ମହାଭାରତରୁ ସଂଗ୍ରହ କରିଛନ୍ତି ବୋଲି ଅନୁମାନ କରାଯାଇପାରେ । ଡକ୍ଟର ବେଣୀ ମାଧବ ପାଢ଼ୀଙ୍କ ଆଲୋଚନା ଅନୁସାରେ କୁହାଯାଇପାରେ ଯେ ଯଦିଚ ମହାଭାରତୀୟ ବନପର୍ବର ୧୯୮ ଅଧ୍ୟାୟ ବର୍ଣ୍ଣିତ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟାନ ଓ ମହାବେଦୀ ପ୍ରସଙ୍ଗର କୌଣସି ସମ୍ପର୍କ ନାହିଁ, ତଥାପି ସ୍କନ୍ଦପୁରାଣରେ ଇନ୍ଦ୍ରଦ୍ୟୁମ୍ନ ଚରିତକୁ ମହାବେଦୀ ସହିତ ଯୋଡ଼ି ଦିଆଯାଇଛି । (୧୧) ଡକ୍ଟର ବେଣୀ ମାଧବ ପାଢ଼ୀଙ୍କ ଆଲୋଚନା ଯଥାର୍ଥ ହୋଇଥିଲେ ମଧ୍ୟ ସେ ଏପରି ସଂଯୋଜନା ମୂଳରେ ଥିବା ରହସ୍ୟର ସ୍ୱରୂପ ଉଦ୍‌ଘାଟନ କରିପାରି ନାହାନ୍ତି । ମହାଭାରତର ମହାବେଦୀ ଓ ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗ ସହିତ ସ୍କନ୍ଦ ପୁରାଣାନ୍ତର୍ଗତ ପୁରୁଷୋତ୍ତମ ଖଣ୍ଡର ଇନ୍ଦ୍ରଦ୍ୟୁମ୍ନଙ୍କର କି

ସମ୍ପର୍କ ଥିଲା, ଏହାର ଆଲୋଚନା ସେ କରିନାହାନ୍ତି ।

ମହାଭାରତରେ ବର୍ଣ୍ଣିତ ମହାବେଦୀ ସହିତ ପୁରୁଷୋତ୍ତମ ଖଣ୍ଡର ଇନ୍ଦ୍ରଦ୍ୟୁମ୍ନଙ୍କୁ ସଂପୃକ୍ତ କରାଇବାର ମୂଳ ରହସ୍ୟ ହେଉଛି ମାର୍କଣ୍ଡେୟ ମୁନିଙ୍କ ସହିତ ଇନ୍ଦ୍ରଦ୍ୟୁମ୍ନଙ୍କ ଆଲୋଚନା ପ୍ରସଙ୍ଗ, ମହାଭାରତରେ ମାର୍କଣ୍ଡେୟ ମୁନିଙ୍କୁ ପାଣ୍ଡବ ଓ ଋଷିମାନେ ପ୍ରଶ୍ନ ଛଳରେ ତାଙ୍କଠାରୁ ଅଧିକ ପ୍ରାଚୀନତର ବ୍ୟକ୍ତିଙ୍କୁ ଜାଣିବା ପାଇଁ ଇଚ୍ଛା କରିଥିଲେ । ସେହି ପ୍ରସଙ୍ଗରେ ଇନ୍ଦ୍ରଦ୍ୟୁମ୍ନ ରାଜର୍ଷିଙ୍କ ଅବତାରଣା । ଏପରି ଆଲୋଚନା ମହାଭାରତରେ ପୁରୀଧାମର ନିର୍ମାତାଙ୍କ ସହିତ ସଂଯୋଜନା କରିବା ଉଦ୍ଦେଶ୍ୟରେ ଉପସ୍ଥାପନ କରାଯାଇ ନଥିଲା । ବ୍ୟକ୍ତିବିଶେଷମାନଙ୍କର ପ୍ରାଚୀନତା ଓ ମହତ୍ୱର ପ୍ରତିପାଦନ ମହାଭାରତର ମୂଳ ଲକ୍ଷ୍ୟ ଥିଲା । ମାତ୍ର ପୁରୁଷୋତ୍ତମ ମହାତ୍ମ୍ୟର ପ୍ରଣେତା ଓଡ଼ିଶାର ପୁରୀ ଉପକୂଳରେ ମାର୍କଣ୍ଡେଶ୍ୱରଙ୍କର ମନ୍ଦିର ଦେଖିଥିଲେ । ମହାଭାରତର ମାର୍କଣ୍ଡେୟ ମୁନିଙ୍କର ଏହା ଏକ ପୀଠ ରୂପେ ଗ୍ରହଣ କରିନେଇ ତାଙ୍କ ସହିତ ଇନ୍ଦ୍ରଦ୍ୟୁମ୍ନଙ୍କର ଆଲୋଚନାରୁ ପୁରୀ ମନ୍ଦିର ନିର୍ମାଣ କାର୍ଯ୍ୟ ସହିତ ଇନ୍ଦ୍ରଦ୍ୟୁମ୍ନଙ୍କୁ ସଂଶ୍ଳିଷ୍ଟ କରି ଦିଆଯାଇଛି । ମହାଭାରତରେ ଇନ୍ଦ୍ରଦ୍ୟୁମ୍ନ ମାର୍କଣ୍ଡେୟଙ୍କ ଠାରୁ ପ୍ରାଚୀନ । ସେ ରାଜର୍ଷି, ସହସ୍ର ଯଜ୍ଞାନୁଷ୍ଠାନକାରୀ । ପୁରୁଷୋତ୍ତମ ମହାତ୍ମ୍ୟ ପ୍ରଣେତାଙ୍କ ଦୃଷ୍ଟିରେ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ (ଯାହା ପୁରୁଷୋତ୍ତମ କ୍ଷେତ୍ରରେ ବିଦ୍ୟମାନ) ମାର୍କଣ୍ଡେୟ ପୀଠଠାରୁ ମଧ୍ୟ ପ୍ରାଚୀନତର । ପୁଣି ମାର୍କଣ୍ଡେଶ୍ୱର ମନ୍ଦିର ନିକଟରେ ଜଗନ୍ନାଥ ମନ୍ଦିର ଥିବାରୁ ଇନ୍ଦ୍ରଦ୍ୟୁମ୍ନ ଏହି ଧାମର ନିର୍ମାତା ହୋଇପାରିବା ଅଧିକ ଯୁକ୍ତିଯୁକ୍ତ ପୁରାଣକାରଙ୍କୁ ମନେ ହୋଇଛି । ଏହି ସଂଯୋଜନା କଳ୍ପନା ବଳରେ ସମ୍ଭବ ହୋଇପାରିଛି ।

ପୁରୁଷୋତ୍ତମ ଖଣ୍ଡର ପ୍ରଣେତା ଯେଉଁ ସମୟରେ ଏହି ପୁରାଣ ରଚନା କରିଥିଲେ, ସେତେବେଳକୁ ବିଭିନ୍ନ ରାଜାମାନେ ଏହି ଧାମର ଅଗ୍ରଗତି ପାଇଁ ପ୍ରବଳ ଉଦ୍ୟମ କରିସାରିଥିଲେ । କୌଣସି ନିର୍ଦ୍ଦିଷ୍ଟ ରାଜା ଏହି ମନ୍ଦିର ନିର୍ମାଣ କରିଥିବା କଥା ଜନମତ ସ୍ୱୀକାର କରିନଥିଲା । ଗଙ୍ଗେଶ୍ୱର ଚୋଡ଼ଗଙ୍ଗ ଯଦିବା ଶ୍ରୀ ପୁରୁଷୋତ୍ତମଙ୍କ ପାଇଁ ଉତ୍ତୁଙ୍ଗ ମନ୍ଦିର ନିର୍ମାଣ କରିଥିଲେ, ତାଙ୍କ ରାଜତ୍ୱ ପୂର୍ବରୁ ମଧ୍ୟ ଏକ କ୍ଷୁଦ୍ର ମନ୍ଦିର ଶ୍ରୀ ପୁରୁଷୋତ୍ତମଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । (୧୨) ପୁଣି ଚୋଡ଼ଗଙ୍ଗ ଏହି ବୃହତ୍ ମନ୍ଦିର ନିର୍ମାଣ କରିଥିଲେ ମଧ୍ୟ ଓଡ଼ିଶାର ଜନଶ୍ରୁତି ଏ ସମ୍ପର୍କରେ ନିରବ ଥିଲା । (୧୩) ମନ୍ଦିରର ନାଟମଣ୍ଡପ ଓ ଭୋଗମଣ୍ଡପ ପରବର୍ତ୍ତୀ କାଳରେ ନିର୍ମିତ ହୋଇଥିଲା । ଗଙ୍ଗବଂଶୀ ତାମ୍ରଫଳକମାନଙ୍କରେ ଚୋଡ଼ଗଙ୍ଗଙ୍କୁ ବିଷ୍ଣୁ-ପୁରୁଷୋତ୍ତମ ଧାମର

ପ୍ରାସାଦର ନିର୍ମାତା ବୋଲି ବର୍ଣ୍ଣନା କରାଯାଇଥିଲେ ମଧ୍ୟ ପ୍ରକୃତ ଐତିହାସିକ ଦୃଷ୍ଟିକୋଣରୁ ଧାମର ପୃଷ୍ଠପୋଷକତା ଜଣେ ରାଜାଙ୍କ ଦ୍ୱାରା ହୋଇନଥିଲା । ଜଗନ୍ନାଥ ମନ୍ଦିରର ପୂର୍ଣ୍ଣାଙ୍ଗ ରୂପ ପାଇଁ ତଥା ମୂର୍ତ୍ତିତତ୍ତ୍ୱର ସମ୍ପୂର୍ଣ୍ଣ ବିକାଶ ପାଇଁ ବିଭିନ୍ନ ସାମାଜିକ ତଥା ରାଜନୈତିକ ଗୋଷ୍ଠୀ ଦ୍ୱାରା ଯେଉଁ ଉଦ୍ୟମ କରାଯାଇଥିଲା, ରାଜଶକ୍ତିର ସେଥିରେ ସକ୍ରିୟ ଭୂମିକା ଥିଲା । ରାଜଶକ୍ତିର ଭୂମିକା ଗୋଟିଏ ଇତିହାସ ପରିଚିତ ନାମରେ ପ୍ରକାଶ କଲେ ସତ୍ୟର ଅପଳାପ ହେବ ବୋଲି କୁହାଯାଇପାରେ, ସେଥିପାଇଁ ପୁରାଣ ବନ୍ଦିତ ଏକ ସମ୍ରାଟଙ୍କୁ ରାଜଶକ୍ତିର ଏକ ଅପୂର୍ବ ସଙ୍କେତ ରୂପେ ଗ୍ରହଣ କରାଯାଇଛି । ଯଦି ପୁରୁଷୋତ୍ତମ ଧାମରେ ମାର୍କଣ୍ଡେଶ୍ୱର ମନ୍ଦିର ନଥାନ୍ତା, ପୁଣି ଇନ୍ଦ୍ରଦ୍ୟୁମ୍ନଙ୍କ ନାମ ମହାଭାରତରେ ଏହି ପ୍ରସଙ୍ଗରେ ଉଲ୍ଲେଖ ହୋଇନଥାନ୍ତା, ତେବେ ପୁରୁଷୋତ୍ତମ ମହାତ୍ମ୍ୟର ପ୍ରଣେତା ଇନ୍ଦ୍ରଦ୍ୟୁମ୍ନଙ୍କୁ ରାଜଶକ୍ତିର ସଂକେତ ରୂପେ ଗ୍ରହଣ କରିବାକୁ ସମର୍ଥ ହୋଇନଥାନ୍ତେ । ଇନ୍ଦ୍ରଦ୍ୟୁମ୍ନ ମହାଭାରତ ବର୍ଣ୍ଣିତ ମାର୍କଣ୍ଡେୟ ମୁନିଙ୍କଠାରୁ ଅତିପ୍ରାଚୀନ । ସ୍ୱୟମ୍ଭୁ ମନୁଙ୍କ ପଞ୍ଚମବଂଶ, ସହସ୍ର ଯଜ୍ଞାନୁଷ୍ଠାନକାରୀ, ଜନକଲ୍ୟାଣକାରୀ ଅନାଦି ଅନନ୍ତ କାଳର ରାଜର୍ଷି ଓ ପୁରୀ ପୁରୁଷୋତ୍ତମ ମନ୍ଦିର ନିର୍ମାଣ ପ୍ରସଙ୍ଗରେ ରାଜଶକ୍ତି ଭୂମିକାର ଏକ ନିର୍ଭୁଲ ସଂକେତ ।

ଏହି ଇନ୍ଦ୍ରଦ୍ୟୁମ୍ନଙ୍କୁ ଶ୍ରୀ ପୁରୁଷୋତ୍ତମଧାମର ନିର୍ମାତା ହିସାବରେ ଗ୍ରହଣ କରିନେଇ ପୁରାଣକାର କେତୋଟି କଥା ପ୍ରକାଶ କରିଛନ୍ତି;

(କ) ଶ୍ରୀ ପୁରୁଷୋତ୍ତମ- ଜଗନ୍ନାଥ ମନ୍ଦିରର ନିର୍ମାତା ଉତ୍କଳର କୌଣସି ଆଞ୍ଚଳିକ ରାଜା ନୁହଁନ୍ତି ।

(ଖ) ଉତ୍କଳ ବାହାରର ସାର୍ବଭୌମ ସମ୍ରାଟମାନଙ୍କର ରାଜନୈତିକ ତଥା ଧର୍ମଗତ ଅଭିସନ୍ଧିରୁ ଜନ୍ମନେଇଛି ଏହି ବିଶାଳ ମନ୍ଦିର ।

(ଗ) ଏହି ନିର୍ମାତାଙ୍କ ମୂଳସ୍ଥାନ ଅବନ୍ତୀ ବା ମାଳବ ବୋଲି ଗ୍ରହଣ କରି ପୁରୁଷୋତ୍ତମପୀଠ ଆଞ୍ଚଳିକ ସ୍ତରରୁ ସର୍ବଭାରତୀୟ ଖ୍ୟାତିସମ୍ପନ୍ନ ଧର୍ମପୀଠ ବୋଲି ପରିଚିତ କରାଯାଇଛି । କାରଣ ନିର୍ମାତା ଇନ୍ଦ୍ରଦ୍ୟୁମ୍ନ ଇତିହାସ ଓ ପୁରାଣବନ୍ଦିତ ଶ୍ରେଷ୍ଠ ସର୍ବଭାରତୀୟ ନରପତି ।

ପ୍ରଥମ ପର୍ଯ୍ୟାୟରେ ବୃହଦ୍ ମନ୍ଦିର ନିର୍ମାଣ ଓ ଦେବଦେବୀଙ୍କର ପୁରୁଷୋତ୍ତମ କ୍ଷେତ୍ରରେ ବ୍ୟାପକ ସେବାପୂଜା ବ୍ୟବସ୍ଥା ପରେ ଏହି କ୍ଷେତ୍ରର ଇତିହାସ ଲେଖିବାର ଆବଶ୍ୟକତା ଅନୁଭବ କରାଯାଇଥିବ । ଏହି କାର୍ଯ୍ୟ ଓଡ଼ିଶାର ବିଶେଷତଃ

ପୁରୁଷୋତ୍ତମକ୍ଷେତ୍ର ସହିତ ଜଡ଼ିତ କୌଣସି ବ୍ରାହ୍ମଣ ଦ୍ୱାରା ସମ୍ଭବ ହୋଇଥିବ । ଏହା ହୁଏତ ସେତେବେଳେ ପୁରୁଷୋତ୍ତମକ୍ଷେତ୍ର ମହାତ୍ମ୍ୟରୂପ ନେଇଥିବ । ପରବର୍ତ୍ତୀ କାଳରେ ସେଥିରୁ ଉପାଦାନ ସଂଗ୍ରହ କରାଯାଇ ପୁରାଣଖଣ୍ଡମାନଙ୍କରେ ପୁରୁଷୋତ୍ତମକ୍ଷେତ୍ର ସମ୍ପର୍କିତ ବିବରଣୀ ଗର୍ଭିତ କରାଯାଇଥିବ । ଏପରିକି ପୁରୁଷୋତ୍ତମ କ୍ଷେତ୍ର ସମ୍ପର୍କିତ ପ୍ରାରମ୍ଭିକ ବିବରଣୀ ମନ୍ଦିରର ବ୍ରାହ୍ମଣ ଓ ଅବ୍ରାହ୍ମଣ ପୂଜକ/ ସେବକମାନଙ୍କର ସହଯୋଗରେ ପ୍ରସ୍ତୁତ କରାଯାଇଥିବ । ଏହାର କାରଣ ଏପରି କ୍ଷେତ୍ର- ମହାତ୍ମ୍ୟ ଓଡ଼ିଶା ବାହାରର ବା ପୁରୀର ବିଶିଷ୍ଟ ପଣ୍ଡିତମାନଙ୍କୁ ଜଣା ନଥିବା ବ୍ୟକ୍ତିମାନଙ୍କ ଦ୍ୱାରା ପ୍ରସ୍ତୁତ ହୋଇନପାରେ; ଏପରି ହେଲେ ଏହାକୁ ପ୍ରଚାର କରିବାକୁ ମନ୍ଦିରର ସେବକ/ପୂଜକମାନେ କୁଣ୍ଠିତ ହୋଇଯିବେ । ଏପରି ଏକ କ୍ଷେତ୍ର ମହାତ୍ମ୍ୟ ଥିଲା କି ନାହିଁ, ସେ ସମ୍ପର୍କରେ ନିର୍ଭରଯୋଗ୍ୟ ବିବରଣୀ ଦିଆଯାଇପାରିବ ନାହିଁ । ତେବେ ପୁରାଣଖଣ୍ଡ ଗର୍ଭିତ ପୁରୁଷୋମକ୍ଷେତ୍ର ଇତିହାସର ମୂଳ ଉପାଦାନ ପୁରୀର ବିଭିନ୍ନ ଗୋଷ୍ଠୀ (ସେବକ, ପୂଜକ ଓ ଭକ୍ତ/ ପଣ୍ଡିତ) ସକ୍ରିୟ ସହଯୋଗରେ ସଂଗୃହୀତ । ଏଣୁ ସ୍କନ୍ଦ ପୁରାଣାନ୍ତର୍ଗତ ପୁରୁଷୋତ୍ତମକ୍ଷେତ୍ର ମହାତ୍ମ୍ୟ ରଚନା ପୂର୍ବେ ବା ପରେ ଇନ୍ଦ୍ରଦ୍ୟୁମ୍ନ ଜନଶ୍ରୁତି 'ବ୍ୟାପକ ଭାବରେ ଗୃହୀତ ହେଲା- ସେ ସମ୍ପର୍କରେ ଅଧିକ ଗବେଷଣା ଆବଶ୍ୟକ ।

ଇନ୍ଦ୍ରଦ୍ୟୁମ୍ନ ବୃହତ ଜଗନ୍ନାଥ ମନ୍ଦିରର ନିର୍ମାତା ବୋଲି ଜନମାନସରେ ଧାରଣା ସୃଷ୍ଟି କରିବାରେ ସ୍କନ୍ଦପୁରାଣର ପୁରୁଷୋତ୍ତମ ଖଣ୍ଡ,ବ୍ରହ୍ମପୁରାଣର ପୁରୁଷୋତ୍ତମ ଖଣ୍ଡ, ସାରଳା ମହାଭାରତର ମୂଷଳୀ ପର୍ବ, କପିଳ ସଂହିତା, ନୀଳାଦ୍ରି ମହୋଦୟ ଏବଂ ଦେଉଳତୋଳାର ଭୂମିକାକୁ ଅସ୍ୱୀକାର କରାଯାଇନପାରେ । ଆବୁଲ-ଫାଜଲଙ୍କର ଆଇନ-ଇ ଆକବରୀ ଓ ମାଦଳାପାଞ୍ଜିର ରାଜଭୋଗ ମଧ୍ୟ ଏସବୁ ଉପାଦାନରୁ ତଥ୍ୟ ସଂଗ୍ରହ କରିଥିଲେ । ଯଦିବା ସୋମବଂଶୀ ସମ୍ରାଟ ଯଯାତି ଓ ଗଙ୍ଗବଂଶୀ ରାଜାମାନେ ମନ୍ଦିର ନିର୍ମାଣ କରିଥିଲେ ବୋଲି ମାଦଳାପାଞ୍ଜିରେ ସୂଚନା ଦିଆଯାଇଛି, ତଥାପି ଇନ୍ଦ୍ରଦ୍ୟୁମ୍ନ ଇତିହାସ ପୂର୍ବବର୍ତ୍ତୀ ମାଳବାଧିପତି ସର୍ବପ୍ରଥମେ ଏହି ଧାମର ଅଗ୍ରଗତି ପାଇଁ ଚେଷ୍ଟିତ ଥିଲେ ବୋଲି ସ୍ୱୀକାର କରାଯାଇଥିଲା । ପୁଣି ଖୋର୍ଦ୍ଧାର ଭୋଇବଂଶୀ ରାଜା ରାମଚନ୍ଦ୍ରଦେବଙ୍କୁ ଅଭିନବ ଇନ୍ଦ୍ରଦ୍ୟୁମ୍ନ ବୋଲି ଅଭିହିତ କରି ମାଦଳାପାଞ୍ଜିକାର ପୌରାଣିକ ଇନ୍ଦ୍ରଦ୍ୟୁମ୍ନଙ୍କୁ କେଶରୀ ଓ ଗଙ୍ଗରାଜାମାନଙ୍କ ରାଜତ୍ୱର ଯଥେଷ୍ଟ ପୂର୍ବରୁ ଶ୍ରୀ ପୁରୁଷୋତ୍ତମ ଧାମର ନିର୍ମାତା ବୋଲି ଗ୍ରହଣ କରି ନେଇଥିଲେ । ଜନଧାରଣାରେ

ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗ ପ୍ରତିଷ୍ଠା ହୋଇଥିଲା ।

ସ୍କନ୍ଦପୁରାଣ ଅନ୍ତର୍ଗତ ପୁରୁଷୋତ୍ତମ ଖଣ୍ଡର ରଚନା ପରେ ପରେ ଆଞ୍ଚଳିକ ଚିନ୍ତାଧାରାରେ ଏହି ମନ୍ଦିରର ନିର୍ମାତା ହିସାବରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ପ୍ରତିଷ୍ଠା କରାଇଦେବାରେ ସେତେବେଳର ମନ୍ଦିର ସେବକ/ ପୂଜକମାନଙ୍କର ମୁଖ୍ୟ ଭୂମିକା ଥିଲା । ଯଦିବା ରାଜବଂଶ ଏହି ନବ ପୁରାଣର ପ୍ରସଙ୍ଗଟିକୁ ଜାଣିଥିଲେ, ପରବର୍ତ୍ତୀ ରାଜାମାନଙ୍କର ପ୍ରକୃତ ମନ୍ଦିର ନିର୍ମାତା ହିସାବରେ କାହାକୁ ଗ୍ରହଣ କରିବା ନେଇ ବାଦବିବାଦକୁ ଏଡ଼ାଇବା ପାଇଁ ଏପରି ବ୍ୟକ୍ତିତ୍ୱର ଉଲ୍ଲେଖରେ ସେମାନଙ୍କର ଇଙ୍ଗିତ ଥିବା ଅଧିକ ଯୁକ୍ତିଯୁକ୍ତ ମନେହୁଏ । ଏହାଫଳରେ ପୁରାଣ ପ୍ରସିଦ୍ଧ ସମ୍ରାଟ ଇନ୍ଦ୍ରଦ୍ୟୁମ୍ନ ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିରର ନିର୍ମାତା ହିସାବରେ ପରିଚିତ ହେଲେ ଏବଂ ଐତିହାସିକ ସମ୍ରାଟଗଣ (ଯେଉଁମାନଙ୍କର ପ୍ରକୃତ ଅବଦାନରେ ଏହି ମନ୍ଦିର ମୁଣ୍ଡ ଟେକିଉଠିଥିଲା) ଏହି ଇନ୍ଦ୍ରଦ୍ୟୁମ୍ନ ନାମ ଭିତରେ ଆତ୍ମଗୋପନ କରିଥିଲେ ।

ଇନ୍ଦ୍ରଦ୍ୟୁମ୍ନ କିମ୍ବଦନ୍ତୀ ମାଧ୍ୟମରେ ଶ୍ରୀ ଜଗନ୍ନାଥ ମନ୍ଦିର ନିର୍ମାଣ ପ୍ରସଙ୍ଗରେ ରାଜଶକ୍ତିର ଭୂମିକାର ଆଭାସ ଦିଆଯାଇଛି । ଅବଶ୍ୟ ଆଦିମ/ଶବର ସେବକ, ବ୍ରାହ୍ମଣ ସେବକ ତଥା ରାଜସେବକ ତିନୋଟି ମୌଳିକ ଶକ୍ତି ବିଭିନ୍ନ ସମୟରେ ଏହି ମନ୍ଦିରର ନିର୍ମାଣ ଓ ଉନ୍ନତିରେ ସକ୍ରିୟ ଭୂମିକା ଗ୍ରହଣ କରିଛନ୍ତି । ବିଶ୍ୱାବସୁ, ଅଣଆର୍ଯ୍ୟ ଶକ୍ତିର ସଂକେତ, ବିଦ୍ୟାପତି (ବ୍ରାହ୍ମଣ) ଆର୍ଯ୍ୟଶକ୍ତିର ସଂକେତ ଓ ସର୍ବୋପରି ଇନ୍ଦ୍ରଦ୍ୟୁମ୍ନ ରାଜଶକ୍ତିର ସଂକେତ । ଗୋଟିଏ ଶକ୍ତି ଅନ୍ୟ ଶକ୍ତି ଉପରେ ପ୍ରାଧାନ୍ୟ ବିସ୍ତାର କରି ଶ୍ରୀମନ୍ଦିରର ଅଧିକ ଉନ୍ନତି କରିବା ପ୍ରସଙ୍ଗ ସେହି ଶକ୍ତିର ପ୍ରତିନିଧିମାନେ ହିଁ ଦାବି କରିଛନ୍ତି । ମାତ୍ର ତିନୋଟି ଶକ୍ତିର ଅପୂର୍ବ ଉଦ୍ୟମରେ ଶ୍ରୀ ପୁରୁଷୋତ୍ତମ- ଜଗନ୍ନାଥ ଧାମ ବିଶ୍ୱରେ ପ୍ରସିଦ୍ଧ ହୋଇଯାଇଛି ।

---

## ପ୍ରସଙ୍ଗ ନିର୍ଦ୍ଦେଶ


୧. Epigraphia Indica, Vol. XXXI, P- 255, Verse- 29

ଚକ୍ରବର୍ତ୍ତୀ, ମନମୋହନ "The date of the Jagannath temple in Puri", Journal of Asiatic Society of Bengal, Vol. LXVII, (1898), p-318-31

ମହାପାତ୍ର, କେଦାରନାଥ, "Antiquity of Jagannatha- Puri as a place of pilgrimage", Orissa Historical Research Journal (ଏହାପରେ ସର୍ବତ୍ର ସୂଚିତ OHRJ), Vol. III, No.1 (1954), p.13

୨. ବିଭିନ୍ନ ସଂସ୍କୃତ ଗ୍ରନ୍ଥମାନଙ୍କରେ (ସଂସ୍କୃତ ମହାଭାରତଠାରୁ ଆରମ୍ଭ କରି ) ଇନ୍ଦ୍ରଦ୍ୟୁମ୍ନ ନାମର ଉଲ୍ଲେଖ ରହିଛି । ଏ ସମ୍ପର୍କରେ ଏକ ବିସ୍ତାରିତ ଆଲୋଚନା ପାଇଁ ଦ୍ରଷ୍ଟବ୍ୟ; Puranic Encyclopaedia, edited by Vettam Mani, Motilal Banarsi Dass Delhi, 1975, p. 328-329.
ମିଶ୍ର, କାହ୍ନୁ ଚରଣ "The cult of Jagannath, 1984, p. 73-80.
ମହାପାତ୍ର, ଗୋପୀନାଥ The land of Vishnu, A study on Jagannath Cult, Delhi, 1979, p. 19-25.

୩. ମିଶ୍ର, କାହ୍ନୁ ଚରଣ, ପୂର୍ବୋକ୍ତ ପୁସ୍ତକ, ପୃ- ୭୫-୭୬ ।

୪. ସ୍କନ୍ଦପୁରାଣ (ପୁରୁଷୋତ୍ତମ କ୍ଷେତ୍ର ମହାତ୍ମ୍ୟ), ଭେଙ୍କଟେଶ୍ୱର ପ୍ରେସ, ବମ୍ବେ ।

୫. ପୁରୁଷୋତ୍ତମ ଖଣ୍ଡରେ ଭୁବନେଶ୍ୱରସ୍ଥ ବିନ୍ଦୁସାଗର ନିକଟରେ ବାସୁଦେବ ପୂଜା ସମ୍ପର୍କରେ ସୂଚନା ରହିଛି । ପୁରୁଷୋତ୍ତମ ଖଣ୍ଡ, ଦ୍ୱାଦଶ ଅଧ୍ୟାୟ; "ବିନ୍ଦୁ ତୀର୍ଥେ ନୃପଃ ସ୍ନାତ୍ୱା ତୀରସ୍ଥାନମ୍ ପୁରୁଷୋତ୍ତମମ୍..." ଏହା ବାସ୍ତବରେ ଅନନ୍ତ ବାସୁଦେବ ମନ୍ଦିରର ସୂଚନା ଆଣେ ଏବଂ ଏହି ମନ୍ଦିରର ନିର୍ମାଣ କାଳ ଖ୍ରୀ: ୧୨୭୮ । ଏଥିରୁ ପୁରୁଷୋତ୍ତମ ଖଣ୍ଡ (ସ୍କନ୍ଦପୁରାଣ)ର ରଚନା ଖ୍ରୀ: ୧୨୭୮ ପରେ ହୋଇଥିବ ବୋଲି କୁହାଯାଇପାରେ । ଅନନ୍ତ ବାସୁଦେବ ମନ୍ଦିର ଶିଳାଲିପି (Inscriptions of Orissa, compiled by S.N. Rajaguru, Vol.IV, Part-1, No. 136) ଗୟାଚରଣ ତ୍ରିପାଠୀ ମଧ୍ୟ ଏହି ଖଣ୍ଡରରଚନା କାଳକୁ ଖ୍ରୀ: ୧୩୦୦ ବୋଲି ଗ୍ରହଣ କରିଛନ୍ତି ।
Tripathy, G.C., "On the Concept of Purusottama in the Agamas", "The Cult of Jagannatha and the Regional Tradition of Orissa.
(ଏହାପରେ ସର୍ବତ୍ର ସୂଚିତ (CJRTO), chapter-II, 1978/86, Manohar Publications, Delhi.
Stietencron, H.v., "The date of the Jagannatha temple, Literary sources reconsidered", Sidelights of History and culture of Orissa, Vidyapuri, Cuttack, 1977, p-531, footnote 35.
Hazra, R.C., Studies in the Puranic Records on Hindu rites and Customs, The University of Dacca, 1940. P. 165.

୬. ମିଶ୍ର, କାହ୍ନୁ ଚରଣ, ପୂର୍ବୋକ୍ତ ପୁସ୍ତକ, ପୃ- ୮୩-୮୪ ।
"All these identifications donot get any support of authentic historical evidence, partial similarity in names cannot lead us to any definite conclusion", p.83.
ମହାପାତ୍ର, ଗୋପୀନାଥ, ପୂର୍ବୋକ୍ତ ପୁସ୍ତକ, ପୃ- ୨୯-୩୨ ।

ମହାପାତ୍ର ଇନ୍ଦ୍ରଦ୍ୟୁମ୍ନଙ୍କୁ ଜଗନ୍ନାଥ ମନ୍ଦିରର ନିର୍ମାତା ହିସାବରେ ଗ୍ରହଣ କରିଛନ୍ତି; ଯଦିବା ଇନ୍ଦ୍ରଦ୍ୟୁମ୍ନଙ୍କର ଐତିହାସିକ ସ୍ଥିତି ଉପରେ ତାଙ୍କର ଆଲୋଚନା ସନ୍ତୋଷଜନକ ହୋଇନାହିଁ । ବରଂ ଇନ୍ଦ୍ରଦ୍ୟୁମ୍ନଙ୍କର ସ୍ଥିତିକୁ ଗ୍ରହଣ କରି ତାଙ୍କର ଐତିହାସିକତାକୁ ସେ ଏଡ଼ାଇ ଦେଇଛନ୍ତି ।

୭. ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର, History of Orissa, Hindu period, 1981, p.387.

୮. ମିଶ୍ର, କାହ୍ନୁ ଚରଣ, ପୂର୍ବୋକ୍ତ ପୁସ୍ତକ, ପୃ- ୮୩-୮୪ ।

୯. Die Indradyumna Legende, Ein Beitrag Zur Geschichte des Jagannatha Kultes, Wiesbaden, 1975, CJRTO, p. 67.

୧୦. ମିଶ୍ର, କାହ୍ନୁ ଚରଣ, ପୂର୍ବୋକ୍ତ ପୁସ୍ତକ, ପୃ - ୭୩.
ପାଢ଼ୀ, ବେଣୀମାଧବ, ଦାରୁଦେବତା, ୧୯୭୫, ପୃ-୨୦

୧୧. ଦାରୁଦେବତା, ପୃ-୧୦

୧୨. ଦାଶ, କୈଳାସ ଚନ୍ଦ୍ର, "Nila Madhava and Gala Madhava: A study of a legend on the early phase of the Jagannatha Cult", The Journal of the Asiatic Society, Calcutta, Vol.XXXIII, Nos.1 and 2, 1991, p.93-94.

୧୨. ଦାଶ, କୈଳାସ ଚନ୍ଦ୍ର, Legend, History and culture of India, Calcutta, 1997, Chapter.1



# ମାର୍କଣ୍ଡେଶ୍ୱର ଶିଳାଲିପି

ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥ କ୍ଷେତ୍ରର ଚତୁଃପାର୍ଶ୍ୱରେ ଥିବା ଅଷ୍ଟଶମ୍ଭୁ ପୀଠ ମଧ୍ୟରେ ମାର୍କଣ୍ଡେଶ୍ୱର ଏକ ସ୍ୱତନ୍ତ୍ର ସ୍ଥାନ ଦାବି କରେ । (୧) ଏହି ମନ୍ଦିର ଗଙ୍ଗବଂଶୀ ସମ୍ରାଟ ଚୋଡ଼ଗଙ୍ଗ ଦେବ ବିଶାଳ ଜଗନ୍ନାଥ ମନ୍ଦିର ନିର୍ମାଣ କରିବାର ଶତାଧିକ ବର୍ଷ ପୂର୍ବରୁ ଶୈବପୀଠ ଭାବରେ ଖ୍ୟାତିଲାଭ କରିଥିଲା । ଏହି ମନ୍ଦିରର କାନ୍ଥରେ ଥିବାଗଙ୍ଗବଂଶ ସମ୍ରାଟମାନଙ୍କ ରାଜତ୍ୱକାଳର କେତେକ ଲିପି ଓଡ଼ିଶାର ରାଜନୈତିକ ଓ ସାଂସ୍କୃତିକ ଇତିହାସ ସଂକଳନ ବା ପୁନଃମୂଲ୍ୟାୟନ ପାଇଁ ଗୁରୁତ୍ୱପୂର୍ଣ୍ଣ ପ୍ରାମାଣିକ ଉପାଦାନରୂପେ ଗ୍ରହଣ କରାଯାଇଛି । (୨) ଏହି ଆଲୋଚନାରେ ସେହି ମନ୍ଦିରର ଏକ ଗୁରୁତ୍ୱପୂର୍ଣ୍ଣ ଶିଳାଲିପିର ବିଶ୍ଳେଷଣ ତଥା ତାହାର ଐତିହାସିକ ବୈଶିଷ୍ଟ୍ୟର ସୂଚନା ସ୍ଥାନୀତ ।

ଆଲୋଚ୍ୟ ଲିପିଟିର ପାଠୋଦ୍ଧାର କରିଥିଲେ ସ୍ୱର୍ଗତଃ ସୂର୍ଯ୍ୟନାରାୟଣ ଦାଶ, ସତ୍ୟନାରାୟଣ ରାଜଗୁରୁ ଓ ଦିନେଶଚନ୍ଦ୍ର ସରକାର । (୩) ସୂର୍ଯ୍ୟନାରାୟଣ ଦାଶ ମନ୍ଦିରରେ ଏହି ଲିପିଥିବା କଥା ୧୯୫୩ ମସିହା ସେପ୍ଟେମ୍ବର ମାସରେ ଓଡ଼ିଶାର ଦୈନିକ ସମ୍ବାଦପତ୍ର ମାନଙ୍କରେ ପ୍ରକାଶ କରିଥିଲେ । ସେତେବେଳେ କାନ୍ଥରେ ବହୁତ ଚୂନ ଲିପି ଦିଆଯାଇଥିବାରୁ ଲିପିଗୁଡ଼ିକ ବାହାରକୁ ସ୍ପଷ୍ଟ ଦିଶୁନଥିଲା । ଚୂନ ଛାଡ଼ିଯାଇଥିବା ସ୍ଥାନମାନଙ୍କରେ କେତେକ ଲିପିର ଅଂଶଦେଖିପାରି ଦାଶ ସେବାୟତଙ୍କୁ ଅନୁରୋଧ କରି କେତେକ ସ୍ଥାନରୁ ପୁରୁଣା ଚୂନ ଛଡ଼ାଇ ଲିପିର ଛାପ ନେଇଥିଲେ । ତେଣୁ ତାଙ୍କର ପାଠ ଶୁଦ୍ଧ ହୋଇ ପାରିନଥିଲା ।

ସତ୍ୟନାରାୟଣ ରାଜଗୁରୁ ମଧ୍ୟ ଏହି ଅସୁବିଧାର ସମ୍ମୁଖୀନ ହୋଇଥିବେ, ଯଦିବା ଏ ଦିଗରେ ତାଙ୍କର ଅସୁବିଧା ସେ ପ୍ରକାଶ କରିନାହାନ୍ତି; ତେବେ

ସୂର୍ଯ୍ୟନାରାୟଣ ଦାଶଙ୍କ ଲିପିରପାଠ ପରି ତାଙ୍କର ପାଠ ମଧ୍ୟ ପ୍ରମାଦପୂର୍ଣ୍ଣ । ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗର ଉଦ୍ୟମରେ ମଧ୍ୟ ଲିପିର ପାଠୋଦ୍ଧାର କରାଯାଇଥିଲା । ଲିପିତତ୍ତ୍ୱବିତ୍ ଦିନେଶ ଚନ୍ଦ୍ର ସରକାର ଏହାର ଏକ ବିବରଣୀ ପ୍ରଦାନ କରିଥିଲେ । (୪) ଏହି ଲେଖକ ମଧ୍ୟ ସରକାର ମହାଶୟଙ୍କ ଲିପିକୁ ଦେଖିବା ପରେ ମାର୍କଣ୍ଡେଶ୍ୱର ମନ୍ଦିରକୁ ଯାଇ ସେହି ଲିପିଟିର ପାଠୋଦ୍ଧାର କରିଥିଲେ । ସରକାରଙ୍କ ପଠିତ ଲିପିଟି ସହିତ ମନ୍ଦିର ଲିପିଟି ପ୍ରାୟ ମିଳିଯାଉଛି । ଲିପିଟିର ଲମ୍ବ ଦୁଇ ଫୁଟ ଆଠ ଇଞ୍ଚ, ଓସାର ଏକ ଫୁଟ ଏକ ଇଞ୍ଚ । ଲିପିଟି ମନ୍ଦିରର ଦ୍ୱିତୀୟ ଦ୍ୱାରର ଦକ୍ଷିଣ କାନ୍ଥରେ (ମୂଳ ମନ୍ଦିରର ଦ୍ୱାର ମୁହଁ ଆଗ କାନ୍ଥରେ) ରହିଛି । ଦିନେଶ ଚନ୍ଦ୍ର ସରକାରଙ୍କ ପଠିତ ଲିପିର ବିବରଣୀ ନିମ୍ନରେ ଆଲୋଚନା ପାଇଁ ଦିଆଗଲା ।

।। ସିଦ୍ଧମ୍ ।। ସମ୍ବତ୍ ୩୭ ଶ୍ରୀ ଚୋଡ଼ଗଙ୍ଗଦେବସ୍ୟ ପ୍ରବର୍ଦ୍ଧମାନ ବିଜୟରାଜ୍ୟେ ଶ୍ରୀ ମାର୍କଣ୍ଡେଶ୍ୱରଦେବସ୍ୟ ଯାବତ୍ ଚନ୍ଦ୍ରାର୍କ (୦) ପ୍ରବର୍ତ୍ତମାନାମଖଣ୍ଡଦ୍ୱିପ ଶ୍ରୀ ପୁରୁଷୋତ୍ତମଦେବ ଅଙ୍ଗଭୋଗ ନିରଲୋ ଗ୍ରାମ ବାସ୍ତବ୍ୟ ସାଧୁ (ଧୁ) ଭି (ଭୀ)ମଦେବ ଏବଂ ରୁଦେବଂ ହରି ଏକ ଛାୟାଦ୍ୱିପ ସୁନା ଗୃହୀତଂ (।) ଇଦାନିଂ ସାଧୁ ଭୀମଦେବସ୍ୟ ପୁତ ନାନେନ ବିଶୁଧିଃ (ବିସୁଧ) କ୍ରିୟତେ (।) ମାର୍କଣ୍ଡେଶ୍ୱର ଦେବ ପୂଜାହାରୀ ହରିଃ ଏବଂ ବନ୍ଧୁ ଏବଂ କୋଟ୍ଟିଣେଶ୍ୱର (?) (୫) ଦେବସ୍ୟ ପୂଜାହାରୀ ବାସୁ ଏସାଂ (ଷାଂ) ତି (ଭି)-ର୍ଜନା ଏକା ଛାୟା (।) କି (କୀ) ବନ୍ତ ସ୍ରେ (ଶ୍ରେ)ଷ୍ଠ ଦ୍ୱିପସୁନା ଗୃହିତଂ (।) ମାର୍କଣ୍ଡେଶ୍ୱର (ଦେ) ବସ୍ୟ ପ୍ରତିମାସେ ଦ୍ୱିପା ଉପଯୋଗେ ତୈଲ୍ୟ (ଲଂ) ଦା (ଦ୍ୱେ) ଶତେ (।) ଏତଦର୍ଥେ ସାକ୍ଷି (କ୍ଷୀ) (ତା) ମୁଦ୍ରହସ୍ତ ଦେବଧର ଏବଂ ନୀଳକମୁଣ୍ଡଃ ପସା (ଶା) ପାଲକ ଶ୍ରୀଧର ଏବଂ ନାରାୟଣ ସାମ୍ମବାଜି ମହାଦେବଃ ଦେବମେଣ୍ଡିଃ ଶ୍ରୀ କରଣ ହରି (୫)।।

ଲିପିଟିର ରଚନାକାଳ ସୂର୍ଯ୍ୟନାରାୟଣ ଦାଶ ଓ ଦିନେଶଚନ୍ଦ୍ର ସରକାର ଚୋଡ଼ଗଙ୍ଗଙ୍କ ରାଜତ୍ୱର ୩୭ ଅଙ୍କ ବୋଲି ସ୍ଥିର କରିଥିଲେ । (୬) କିନ୍ତୁ ସତ୍ୟନାରାୟଣ ରାଜଗୁରୁ ଏହାର ସମୟ ଚୋଡ଼ଗଙ୍ଗଙ୍କ ରାଜତ୍ୱର ୫୭ ଅଙ୍କ ବୋଲି ସ୍ଥିର କରିଥିଲେ । (୭) ପ୍ରକୃତରେ ଲିପିର ଆଦ୍ୟରେ ଥିବା ଦୁଇଟି ଅଙ୍କ ମଧ୍ୟରୁ ପ୍ରଥମଟି ପାଞ୍ଚ ପରି ଦିଶେ । ସରକାର ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରରେ ଥିବା ଚୋଡ଼ଗଙ୍ଗଙ୍କ ରାଜତ୍ୱର ୩୭ ଅଙ୍କ (ଶକାବ୍ଦ ୧୦୩୬)ର ଏକ ଲିପିରେ ଥିବା ସଂଖ୍ୟା ଦୁଇଟିକୁ ଦେଖି ଏହି ସଂଖ୍ୟା ସମ୍ପର୍କରେ ଏପରି ସିଦ୍ଧାନ୍ତ ଗ୍ରହଣ କରିଥିଲେ । (୮) ଲିଙ୍ଗରାଜ ମନ୍ଦିରର

ଲିପିରେ ଥିବା ସଂଖ୍ୟାଟି ମଧ୍ୟ ପାଞ୍ଚପରି ଦେଖାଯାଏ । କିନ୍ତୁ ପାଞ୍ଚ ସହିତ ସାମଞ୍ଜସ୍ୟ ରହିଛି ବୋଲି ଏହି ଲିପିର ସମୟ ୫୭ ଅଙ୍କ ହୋଇପାରିବ ନାହିଁ । କାରଣ ଏଥିରେ ଚୋଡ଼ଗଙ୍ଗଙ୍କ ରାଜତ୍ୱର ସେହି ଅଙ୍କଟି ଶକାବ୍ଦ ୧୦୩୬ରେ ପଡ଼ିଥିଲା । (୯) ଏଣୁ ଏହି ଶିଳାଲେଖର ଭିତ୍ତିରେ ମାର୍କଣ୍ଡେଶ୍ୱର ଲିପିର ସମୟ କାଳ ଚୋଡ଼ଗଙ୍ଗଙ୍କ ରାଜତ୍ୱର ୩୭ ଅଙ୍କ ବୋଲି ସେ ସ୍ଥିର କରିଥିଲେ । ରାଜଗୁରୁ ମହାଶୟ ଲିପିଟିର ସମୟ ଚୋଡ଼ଗଙ୍ଗଙ୍କ ରାଜତ୍ୱର ୫୭ ଅଙ୍କ ବୋଲି କହିବା ସଙ୍ଗେ ସଙ୍ଗେ ଏହି ଅଙ୍କଟିର ଆରମ୍ଭ ସେପ୍ଟେମ୍ବର ମାସ ୧୧୩୧ ଖ୍ରୀଷ୍ଟାବ୍ଦ ବୋଲି ସ୍ଥିର କରି ନେଇଥିଲେ । (୧୦) କିନ୍ତୁ ୧୧୩୧ ଖ୍ରୀଷ୍ଟାବ୍ଦଠାରୁ ଏବଂ ୧୧୩୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଚୋଡ଼ଗଙ୍ଗ ପଶ୍ଚିମ ପୂର୍ବ ଭାରତର ରାଜ୍ୟଗୁଡ଼ିକ ବିଜୟରେ ବ୍ୟସ୍ତ ଥିଲେ ବୋଲି ତାଙ୍କର ଶିଳାଲେଖଗୁଡ଼ିକର ବିବରଣୀରୁ ସ୍ପଷ୍ଟ ଜଣାଯାଏ । (୧୧) ୧୧୨୯ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗ ତାଙ୍କର ବିଜିତ ଉତ୍କଳ ରାଜଧାନୀରେ ଅବସ୍ଥାନ କରୁଥିଲେ । (୧୨) ଏହାପରେ ସେ ଦଣ୍ଡଭୁକ୍ତି, ମନ୍ଦାରାଦ୍ରି ପ୍ରଭୃତି ପୂର୍ବ ଭାରତର ରାଜ୍ୟ ଜୟରେ ଚାରି/ପାଞ୍ଚବର୍ଷ ବିତାଇ ଦେଇଥିଲେ । ଏହି ଦୃଷ୍ଟିରୁ ୧୧୩୧ - ୩୨ ଖ୍ରୀଷ୍ଟାବ୍ଦ ମଧ୍ୟରେ ଚୋଡ଼ଗଙ୍ଗ ପୁରୁଷୋତ୍ତମ କ୍ଷେତ୍ରରେ ଧର୍ମ କାର୍ଯ୍ୟରେ ମନ ବିନିଯୋଗ କରିବା ସମ୍ଭବ ନୁହେଁ । ଚୋଡ଼ଗଙ୍ଗଙ୍କର ଉତ୍କଳ ବିଜୟ ଓ ସୋମବଂଶୀ ଶାସନର ଅବସାନ ତାଙ୍କ ରାଜତ୍ୱର ୩୭ ଅଙ୍କ ବେଳକୁ ହୋଇଥିଲା । (୧୩) ଏହି ସମୟରେ ସେ ଲିଙ୍ଗରାଜ ମନ୍ଦିରରେ ଦାନଦେବା ସହିତ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଥିବା ସମ୍ଭବ ହୋଇପାରେ । (୧୪) ତେଣୁ ଏହି ଲିପିଟିରେ ଥିବା ଅଙ୍କଟିକୁ ୩୭ ବୋଲି ପଢ଼ିବାକୁ ହେବ ।

ଲିପିଟିରେ ଥିବା ଅଙ୍କଟିକୁ ୩୭ ବୋଲି ସୂଚାଇ ଦେବା ପରେ ଏହାର ସମୟ ୩୭ ଅଙ୍କ ବୋଲି ଦିନେଶ ଚନ୍ଦ୍ର ସରକାର ଏବଂ ସୂର୍ଯ୍ୟନାରାୟଣ ଦାଶ ଯାହା ପ୍ରକାଶ କରିଛନ୍ତି, ତାହା ଠିକ୍ ନୁହେଁ । (୧୫) ଲିପିରେ ସ୍ଥାନ ପାଇଥିବା ବିବରଣୀକୁ ବିଶ୍ଲେଷଣ କଲେ ଜଣାଯାଏ ଯେ ଚୋଡ଼ଗଙ୍ଗଙ୍କର ୩୭ ଅଙ୍କର ଅନେକ ବର୍ଷ ପରେ ମନ୍ଦିରରେ ଏହା ଉତ୍କୀର୍ଣ୍ଣ ହୋଇଥିଲା । ଏଥିରେ କୁହାଯାଇଛି ଯେ ଚୋଡ଼ଗଙ୍ଗଙ୍କ ରାଜତ୍ୱର ୩୭ ଅଙ୍କରେ ଶ୍ରୀ ମାର୍କଣ୍ଡେଶ୍ୱର ଦେବଙ୍କର ଅଖଣ୍ଡ ଦ୍ୱୀପ ଏବଂ ପୁରୁଷୋତ୍ତମ ଦେବଙ୍କର ଅଙ୍ଗଭୋଗ ପାଇଁ ନିରଳୋ ଗ୍ରାମ ବାସ୍ତବ୍ୟ ସାଧୁ ଭୀମଦେବ, ରୁଦ୍ର ଏବଂ ହରି ଏକ ଛାୟା ଦୀପ ଓ ସୁନା ଗ୍ରହଣ କରିଥିଲେ । ବର୍ତ୍ତମାନ ସାଧୁ ଭୀମଦେବଙ୍କର ପୁତ୍ର ନାନ ସେଥିରୁ ମୁକ୍ତ ହେଲେ । ମାର୍କଣ୍ଡେଶ୍ୱର ଦେବଙ୍କର ପୂଜାରୀ ହରି ଏବଂ ବନ୍ଧୁ ତଥା

କୋଙ୍ଗଣେଶ୍ୱର ମନ୍ଦିରର ପୂଜାରୀ ବାସୁ- ଏହି ତିନିଜଣ ମାର୍କଣ୍ଡେଶ୍ୱରଙ୍କ ପାଖରେ ବ୍ୟବହାର ପାଇଁ ଏକ ଛାୟା ଦୀପ ଗ୍ରହଣ କଲେ ଓ ଆବଶ୍ୟକ ତେଲର ମୂଲ୍ୟ ପାଇଁ ସୁନା ଜୀବନ୍ତ ଶ୍ରେଷ୍ଠୀ ଗ୍ରହଣ କଲେ । ଦ୍ୱିତୀୟ ପର୍ଯ୍ୟାୟରେ ମାର୍କଣ୍ଡେଶ୍ୱରଙ୍କର ଅଖଣ୍ଡ ଦୀପ ପାଇଁ କେବଳ ପ୍ରତି ମାସରେ ତେଲ ବାବଦକୁ ଖର୍ଚ୍ଚ ନିମନ୍ତେ ସୁନା ଜୀବନ୍ତ ଶ୍ରେଷ୍ଠୀ ରଖିଲେ । ଏହି ବ୍ୟବସ୍ଥା ପାଇଁ ମନ୍ଦିରର କେତେକ କର୍ମଚାରୀ ସାକ୍ଷୀ ରହିଲେ ।

ଏହି ବିବରଣୀରୁ ସ୍ପଷ୍ଟ ଜଣାପଡ଼େ ଯେ ଚୋଡ଼ଗଙ୍ଗଙ୍କ ରାଜତ୍ୱର ୩୭ ଅଙ୍କରେ ମାର୍କଣ୍ଡେଶ୍ୱରଙ୍କର ଅଖଣ୍ଡ ଦୀପ ଏବଂ ପୁରୁଷୋତ୍ତମଙ୍କର ଅଙ୍ଗଭୋଗ ପାଇଁ ନିରଳୋ ଗ୍ରାମ ନିବାସୀ ସାଧୁ ଭୀମଦେବ, ରୁଦ୍ର ଏବଂ ହରିଙ୍କୁ ଯେଉଁ ଦାୟିତ୍ୱ ଦିଆଯାଇଥିଲା, ତାହା ମନ୍ଦିର ଶିଳାରେ ଲେଖାନଯାଇ ଚୋଡ଼ଗଙ୍ଗଙ୍କ ଦ୍ୱାରା ମୌଖିକ ଭାବରେ ପ୍ରକାଶ କରାଯାଇଥିଲା । ସମ୍ଭବତଃ ସାଧୁ ଭୀମଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ନାନ ଏହି ଦାୟିତ୍ୱରୁ ମୁକ୍ତି ପାଇଲେ । ସାଧୁ ଭୀମଦେବଙ୍କର ମୃତ୍ୟୁ କେବେ ହେଲା କିମ୍ବା ତାଙ୍କ ପୁତ୍ର ନାନ କେବେ ଏହି ଦାୟିତ୍ୱରୁ ମୁକ୍ତି ପାଇଲେ ତାହା ଶିଳାଲିପିରେ ଉଲ୍ଲେଖ ହୋଇନାହିଁ । ସେଥିରେ ଥିବା ଇଦାନିଂ ଶବ୍ଦରୁ ଜଣାଯାଏ ଯେ ଚୋଡ଼ଗଙ୍ଗଙ୍କ ରାଜତ୍ୱର ୩୭ ଅଙ୍କର ଅନେକ ବର୍ଷ ପରେ ନାନ ଏହି ଦାୟିତ୍ୱରୁ ମୁକ୍ତି ପାଇଲେ । ପୁଣି ପରବର୍ତ୍ତୀ ଦାୟିତ୍ୱ ଯେଉଁମାନେ ଗ୍ରହଣ କଲେ ସେମାନେ ପୁରୁଷୋତ୍ତମଙ୍କର ଅଙ୍ଗଭୋଗ ପାଇଁ ଖର୍ଚ୍ଚର ଦାୟିତ୍ୱ ନେଇନଥିଲେ, କେବଳ ମାର୍କଣ୍ଡେଶ୍ୱରଙ୍କର ଅଖଣ୍ଡ ଦୀପ ପାଇଁ ଥିବା ବ୍ୟବସ୍ଥାକୁ ଗ୍ରହଣ କଲେ । ଯେଉଁମାନେ ଏହି ଦାୟିତ୍ୱ ନେଲେ ସେମାନେ ଥିଲେ ମନ୍ଦିରର ସେବକ ସମ୍ପ୍ରଦାୟ ।

୧. ମାର୍କଣ୍ଡେଶ୍ୱରଙ୍କ ପୂଜାରୀ ହରି ଏବଂ ବନ୍ଧୁ

୨. କୋଙ୍ଗଣେଶ୍ୱର ପୂଜାରୀ ବସୁ

ଯେଉଁମାନେ ଏହି ବ୍ୟବସ୍ଥା ପାଇଁ ସାକ୍ଷୀ ଥିଲେ ସେମାନେ ମଧ୍ୟ ସଂପୃକ୍ତ ମନ୍ଦିରର ଅନ୍ୟାନ୍ୟ କର୍ମଚାରୀ ଓ ସେବକ ଯଥା- ପଣାପାଳକ, ମୁଦିରଥ, ସାମନ୍ତବାଜୀ ଇତ୍ୟାଦି ।

ଏଥିରୁ ମନେହୁଏ ଯେ ପୁରୁଷୋତ୍ତମଙ୍କର ଅଙ୍ଗଭୋଗ ବ୍ୟବସ୍ଥା ସହିତ ମାର୍କଣ୍ଡେଶ୍ୱରଙ୍କର ଅଖଣ୍ଡ ଦୀପ ବ୍ୟବସ୍ଥାକୁ ଏକତ୍ର ମିଶାଇ ଦିଆନଯାଇ ଚୋଡ଼ଗଙ୍ଗଙ୍କ ରାଜତ୍ୱର ଶେଷ କାଳରେ ବା ତାଙ୍କ ରାଜତ୍ୱର ଶେଷ ପରେ (ଯେତେବେଳେ ସାଧୁ ଭୀମଦେବଙ୍କର ପୁତ୍ର ବଞ୍ଚିଥିଲେ) ମାର୍କଣ୍ଡେଶ୍ୱରଙ୍କର ଅଖଣ୍ଡବତୀ ପାଇଁ କେବଳ ଖର୍ଚ୍ଚର

ବ୍ୟବସ୍ଥା କରାଗଲା । ହୁଏତ ସେତେବେଳେ ପୁରୁଷୋତ୍ତମଙ୍କର ଅଙ୍ଗଭୋଗ ପାଇଁ ଅନ୍ୟତ୍ର ବ୍ୟାପକ ବ୍ୟବସ୍ଥା କରାଯାଇଥିଲା । ଚୋଡ଼ଗଙ୍ଗଙ୍କର ଅନ୍ୟ ଶିଳାଲିପିଗୁଡ଼ିକରେ ଦାନଦେବା ପ୍ରସଙ୍ଗ ଉଲ୍ଲେଖ କରିବାବେଳେ ଗ୍ରାମ ସହିତ ବିଷୟର ନାମ ଦିଆଯାଇଥିଲା । କିନ୍ତୁ ଏହି ଶିଳାଲେଖରେ ବର୍ଣ୍ଣିତ ନିରଳୋ ଗ୍ରାମ ଯେଉଁ ବିଷୟରେ ଅବସ୍ଥିତ ତାହା ସୂଚାଇ ଦିଆଯାଇ ନାହିଁ ।

ତେଣୁ ଏହି ଲିପିଟି ମାର୍କଣ୍ଡେଶ୍ୱର ମନ୍ଦିରର ସେବକ ସମ୍ପ୍ରଦାୟ (ଯେଉଁମାନେ ଏହି ନୂତନ ବ୍ୟବସ୍ଥାକୁ ହାତକୁ ନେଲେ) ବା ଅନ୍ୟ କୌଣସି ରାଜକର୍ମଚାରୀ ଦ୍ୱାରା ଚୋଡ଼ଗଙ୍ଗଙ୍କ ରାଜତ୍ୱର ଶେଷକାଳରେ ବା ଆହୁରି ପରେ ମନ୍ଦିରର ଶିଳାଖଣ୍ଡରେ ଉତ୍କୀର୍ଣ୍ଣ ହୋଇଥିଲା । ଏହାର ସମୟ ଚୋଡ଼ଗଙ୍ଗଙ୍କ ରାଜତ୍ୱର ୩୭/୫୭ ଅଙ୍କର ଯଥେଷ୍ଟ ପରେ ବୋଲି ସ୍ଥିର କରିବାକୁ ହେବ ।

ଦିନେଶଚନ୍ଦ୍ର ସରକାର ମାର୍କଣ୍ଡେଶ୍ୱର ଶିଳାଲିପିର ବିବରଣୀର ଭ୍ରମପୂର୍ଣ୍ଣ ବାଖ୍ୟା କରି ସେଥିରେ ଥିବା ଅଙ୍କକୁ ଲିପିଟିର ରଚନାର ସମୟ ବୋଲି ସ୍ଥିର କରିଛନ୍ତି । ସରକାରଙ୍କର ମତ ଏହି ପ୍ରସଙ୍ଗରେ ଉଦ୍ଧାର କରାଯାଇପାରେ-

"The inscription of Chodaganga appears to have ben engraved in 1114-15 A.D. it begins with the Siddham symbol and the date. The first sentence in lines 1-4 apparently means to say that in the year 37 during the reign of the illustrious Chodaganga Deva, Sadhu Bhimadeva, a resident of Niralo grama called an angabhoga of the god Purusotama as well as Ruda and Hari (both probably of the same place) accepted some amount or coins of gold for one chhayadipa meant to be a perpetual lamp to be burnt before the god Markandeswara. X X X The next sentence in line 4 states now Bhimadeva's son Nana arranged for the discharge (of his obligation) X X X From the above two sentences we learn that formerly an endowment had been created by depositing some amount of coins of gold with Bhimadeva and others, and that in the 37th regnal year of the Ganga king Anantavarman Chodaganga Deva, Bhima deva's son Nana freed himself from this responsibility." (୧୬)

କିନ୍ତୁ ପ୍ରସଙ୍ଗଟିର ଆଲୋଚନା କଲେ ସ୍ପଷ୍ଟ ଜଣାଯାଏ ଯେ ଯାହାଙ୍କ ଦ୍ୱାରା ମାର୍କଣ୍ଡେଶ୍ୱରଙ୍କର ଅଖଣ୍ଡ ଦୀପ ପାଇଁ ବ୍ୟବସ୍ଥା ହୋଇଥିଲା ତାଙ୍କ ଦ୍ୱାରା

ପୁରୁଷୋତ୍ତମଙ୍କର ଅଙ୍ଗଭୋଗ ପାଇଁ ମଧ୍ୟ ବ୍ୟବସ୍ଥା ହୋଇଥିଲା । ନିରଲୋ ଗ୍ରାମର ଅଙ୍ଗଭୋଗ ସହିତ କୌଣସି ପ୍ରକାର ସମ୍ପର୍କ ନାହିଁ; ବରଂ ଯେଉଁମାନେ ଏହି ଦାୟିତ୍ୱ ଗ୍ରହଣ କଲେ ସେମାନଙ୍କର ବାସସ୍ଥାନ ନିରଲୋ ବୋଲି ସୂଚାଇ ଦିଆଯାଇଛି ।

ଏହି ଶିଳାଲେଖ ପୁରୁଷୋତ୍ତମ- ଜଗନ୍ନାଥ ତତ୍ତ୍ୱର ଏକ ବଳିଷ୍ଠ ଦିଗର ସୂଚନା ଦିଏ । ଏଥିରେ ପୁରୁଷୋତ୍ତମଙ୍କର ଅଙ୍ଗଭୋଗ ସମ୍ପର୍କରେ ପ୍ରଥମ ସୂଚନା ଦିଆଯାଇଛି । ଏହି ଅଙ୍ଗଭୋଗ ଶବ୍ଦଟି ମଧ୍ୟଯୁଗୀୟ ଶିଳାଲିପିମାନଙ୍କରେ ସ୍ଥାନ ପାଇଛି । ସିଂହାଚଳମ୍‌ର ବରାହ ନରସିଂହ ମନ୍ଦିରର ଦେବତା ବରାହ ଲକ୍ଷ୍ମୀ ନରସିଂହ, ମହାରାଷ୍ଟ୍ରର ପନ୍ଧରପୁରର ଦେବତା ଶ୍ରୀ ବିଠ୍‌ଠଲଙ୍କ ଅଙ୍ଗଭୋଗ ପାଇଁ ବ୍ୟବସ୍ଥା କରାଯାଇଥିବାର ଅଭିଲେଖୀୟ ପ୍ରମାଣ ରହିଛି । (୧୭) ହିନ୍ଦୁ ମନ୍ଦିରରେ ଷୋଡ଼ଶ ଉପଚାରରେ ପୂଜାକୁ ଅଙ୍ଗଭୋଗ ବୋଲି କୁହାଯାଇ ଥାଏ । ଏସବୁ ନିମ୍ନରେ ସୂଚିତ ହୋଇଛି ।୧- ଆବାହନ, ୨- ଆସନ, ୩- ପାଦ୍ୟ, ୪- ଅର୍ଘ୍ୟ, ୫- ଆଚମନ, ୬- ସ୍ନାନ, ୭- ପଞ୍ଚାମୃତ, ୮- ଯଜ୍ଞ ଉପବିତ, ୯- ଧୂହ, ୧୦- ପୁଷ୍ପ, ୧୧- ଧୂପ, ୧୨- ଦୀପ, ୧୩- ନୈବେଦ୍ୟ, ୧୪- ତାମ୍ବୂଳ, ୧୫- ଦକ୍ଷିଣା, ୧୬- ଆରତି ।

ଡକ୍ଟର କଲ୍ୟାଣୀ ସୁନ୍ଦରମ୍‌ଙ୍କ ମତରେ "Angabhoga includes all the services performed to the lord for his physical enjoyment". (୧୮)

ଏହି ଦୃଷ୍ଟିରୁ ପୁରୁଷୋତ୍ତମଙ୍କର ସେବାପୂଜା ଓ ଅଙ୍ଗସଜ୍ଜା ପାଇଁ ଯେଉଁ ବ୍ୟବସ୍ଥା ଚୋଡ଼ଗଙ୍ଗ ଆରମ୍ଭ କରିଥିଲେ ତାହାକୁ ଅଙ୍ଗଭୋଗ ବୋଲି କୁହାଯାଇପାରିବ । ଖୁବ୍ ସମ୍ଭବତଃ ପୁରୁଷୋତ୍ତମ କାଷ୍ଠ ବିଗ୍ରହ ହୋଇଥିବାରୁ ପ୍ରତି ଜ୍ୟେଷ୍ଠ ମାସରେ ଥରେ ତାଙ୍କ ଅଙ୍ଗକୁ ଧୋଇ ଦିଆଯାଏ ଓ ତାହାପରେ ତାକୁ ନବ ରୂପରେ ମଣ୍ଡିତ କରିବାକୁ କିଛି ସମୟ ନିଆଯାଏ । ବର୍ତ୍ତମାନ ସୁଦ୍ଧା ଏହି କାର୍ଯ୍ୟଟିକୁ ଜ୍ୟେଷ୍ଠ ଯାତ୍ରା ବା ସ୍ନାନ ଯାତ୍ରା ପରେ ଅଣବସର ସମୟରେ କରାଯାଉଛି ।

ଚୋଡ଼ଗଙ୍ଗଙ୍କ ରାଜତ୍ୱ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରରେ ମହାଜ୍ୟେଷ୍ଠ ପର୍ବ ପାଳିତ ହେଉଥିଲା ବୋଲି ଏକାଦଶ ଶତକର ସାହିତ୍ୟିକ ଉପାଦାନରେ ବର୍ଣ୍ଣିତ ହୋଇଛି । (୧୯) ଏଣୁ ଚୋଡ଼ଗଙ୍ଗ ସେହି ପର୍ବ ପରେ ପୁରୁଷୋତ୍ତମ ବିଗ୍ରହକୁ ସୁସଜ୍ଜିତ କରିବା ପାଇଁ ଯେଉଁ ଦାନ ବ୍ୟବସ୍ଥା କରିଥିଲେ ତାହା ଅଙ୍ଗଭୋଗ ନାମରେ ପରିଚିତ ହେଲା । ଚୋଡ଼ଗଙ୍ଗଙ୍କ ପୂର୍ବରୁ ସ୍ନାନଯାତ୍ରା ପରେ ବିଗ୍ରହକୁ ସୁସଜ୍ଜିତ କରାଯାଉଥିଲେ ମଧ୍ୟ ଏହା କେବଳ ଆଞ୍ଚଳିକ ଉଦ୍ୟମରେ ସମ୍ଭବ ହେଉଥିଲା, ହୁଏତ ବିଗ୍ରହକୁ ସୁସଜ୍ଜିତ କରିବାର

ବ୍ୟାପକ ବ୍ୟବସ୍ଥା ଓ ଅନ୍ୟ ସେବା ପୂଜା ଚୋଡ଼ଗଙ୍ଗଙ୍କ ସମୟରୁ ଆରମ୍ଭ ହେଲା ।

ମାର୍କଣ୍ଡେଶ୍ୱର ମନ୍ଦିରର ଅଖଣ୍ଡବତୀ ଓ ପୁରୁଷୋତ୍ତମଙ୍କର ଅଙ୍ଗଭୋଗ ଦାୟିତ୍ୱ ଯେଉଁମାନଙ୍କଠାରେ ଅର୍ପଣ କରାଗଲା, ସେମାନେ ନିରଳୋ ନାମକ ଗ୍ରାମର ଅଧିବାସୀ । ନିରଳୋ ଗ୍ରାମ ଅବସ୍ଥିତି ସମ୍ପର୍କରେ ଶିଳାଲେଖଟି ନିରବ । କିନ୍ତୁ ଚୋଡ଼ଗଙ୍ଗଙ୍କର ଉତ୍କଳ ବିଜୟ ପରଠାରୁ ରାଜତ୍ୱର ଶେଷ କାଳ ମଧ୍ୟରେ (ଖ୍ରୀ. ୧୧୧୩-୧୧୪୭) ପ୍ରାଚୀ କୁଶଭଦ୍ରା ଅଞ୍ଚଳ ତଥା ପୁରୁଷୋତ୍ତମ କ୍ଷେତ୍ର ନିକଟସ୍ଥ ବିଭିନ୍ନ ବିଷୟରେ (ଯଥା- ରାହାଙ୍ଗ, କୋଟ ରାହଙ୍ଗ, କୋଟିବ, ପୈଦା, କଳମ୍ଭୋର, ସିରାଇମ୍ ଓ ଜଳଖଣ୍ଡ ପ୍ରଭୃତି ଅନ୍ତର୍ଗତ) ଥିବା ଗ୍ରାମଗୁଡ଼ିକର ଲୋକମାନଙ୍କୁ ବିଭିନ୍ନ ମନ୍ଦିରର ସେବା ପୂଜା ପାଇଁ ଦାନ ଦିଆଯାଇଥିଲା । (୨୦) ଏଣୁ ମନେହୁଏ ଏହି ନିରଳୋ ଗ୍ରାମ ପୁରୁଷୋତ୍ତମ କ୍ଷେତ୍ରଠାରୁ ଅଳ୍ପ ଦୂରରେ ଅବସ୍ଥିତ ଥିଲା । ତା ନହେଲେ ପୁରୁଷୋତ୍ତମ ଦେବଙ୍କର ଅଙ୍ଗଭୋଗ ଓ ମାର୍କଣ୍ଡେଶ୍ୱର ମନ୍ଦିରର ଅଖଣ୍ଡ ବତୀ ପାଇଁ ଖର୍ଚ୍ଚ ଯୋଗାଇ ଦେବା ସମ୍ଭବ ହେବ ନାହିଁ ।

ମନ୍ଦିର ପରିଚାଳନାରେ ଯେଉଁ ସେବକ ବା କର୍ମଚାରୀମାନେ ଏକାଦଶ ଓ ଦ୍ୱାଦଶ ଶତକରେ ନିଯୁକ୍ତ ହେଉଥିଲେ, ସେମାନଙ୍କର ନାମ ଏହି ଶିଳାଲିପିରୁ ମିଳେ । ସେମାନେ ଥିଲେ ପୂଜାରୀ, ମୁଦ୍ରହସ୍ତ, ସୋମଯାଜୀ, ପଶାପାଳକ ଓ ଶ୍ରୀକରଣ । ପଶାପାଳକକୁ ଦିନେଶ ଚନ୍ଦ୍ର ସରକାର ପଶାୟିତ ବା ପଶାୟତ ଅର୍ଥରେ ଗ୍ରହଣ କରି ଜାଗିରିଦାର ବା କିଛି ଅଞ୍ଚଳର ମୁଖ୍ୟ ଅର୍ଥରେ ଗ୍ରହଣ କରିଥିଲେ । (୨୧) ସୂର୍ଯ୍ୟ ନାରାୟଣ ଦାଶ ପୁଷ୍ପାଳକ ଶବ୍ଦରୁ ପଶୁପାଳକ ହୋଇଥିବାର ମତକୁ ଗ୍ରହଣ କରିନାହାନ୍ତି । (୨୨) ଦେଉଳ ଭିତରେ ଥିବା ପଶୁମାନଙ୍କର ପାଳନ ପାଇଁ ନିଯୁକ୍ତ ଥିବା ସେବକକୁ ପଶୁପାଳକ କୁହାଯାଏ ବୋଲି ସେ ମତ ପ୍ରକାଶ କରିଛନ୍ତି । (୨୩) କିନ୍ତୁ ପଶାପାଳକର ପୁଷ୍ପ ସହିତ ସମ୍ପର୍କ ଥିବାର ସୂଚନା ଓଡ଼ିଶାର ଏକ ପରମ୍ପରାରୁ ଜଣାଯାଏ । ଏହା ମାଦଳା ପାଞ୍ଜିର ରାଜଚରିତରେ ବର୍ଣ୍ଣିତ ହୋଇଛି । ''ପାଟ ରହି ନିଶଙ୍କ ଭାନୁଦେବ ରାଜା ହେଲେ । ଏ ରାଜାଙ୍କ ପାତ୍ର ଶ୍ରୀଧର ରାୟ । ଏ ରାଜା ଦିନେ ଦରଶନକୁ ଆସିଥିଲେ । ଫୁଲ ମହାପ୍ରସାଦ ପରମେଶ୍ୱରଙ୍କ ଲାଗିରେ ନଥିଲା । ରାଜାଙ୍କୁ ପ୍ରସାଦ ଦେବାକୁ କିଛି ନ ମିଳିଲା । ଏ ପଶୁପାଳକ ମୁଣ୍ଡରେ ଦୟଣାମାଳ ଥିଲା । ଏହା ମଥାରୁ ଆଣି ରାଜାଙ୍କୁ ପ୍ରସାଦ କରିଦେଲେ । (୨୪)

ପଶୁପାଳକ ନାମଧାରୀ ସେବକର ପୁଷ୍ପ ସହିତ ବା ଦେବତାଙ୍କ ପୂଜା ପାଇଁ ବ୍ୟବହୃତ

ପୁଷର ସମ୍ପର୍କ ରହିଛି । ଖୁବ ସମ୍ଭବତଃ ଏହି ପଶୁପାଳକ/ପୁଷାଳକ ଜଣେ ଅବ୍ରାହ୍ମଣ ସେବକରୂପେ ଦ୍ୱାଦଶ ଶତକର ବହୁ ପୂର୍ବରୁ ମନ୍ଦିରରେ ନିଯୁକ୍ତ ହୋଇଥିଲେ । (୨୫)

## ପ୍ରସଙ୍ଗ ନିର୍ଦ୍ଦେଶ


୧. ପୁରୁଷୋତ୍ତମ ଖଣ୍ଡ, ସ୍କନ୍ଦପୁରାଣ, ତୃତୀୟ ଅଧ୍ୟାୟ, ଭେଙ୍କଟେଶ୍ୱର ପ୍ରେସ, ବମ୍ବେ ।

୨. Sircar, D.C., Studies in the Religious life of Ancient and Mediaeval India, Chapter - IV, 1971.
Stietencron, H.v., 'Advent of Visnuism in Orissa', in The Cult of Jagannatha and the Regional Tradition of Orissa'
edited by Eschmann, A., Kulke, H. and Tripathy, G.C., 1978, P. 27-29.

୩. ଦାଶ, ସୂର୍ଯ୍ୟନାରାୟଣ, ପୁରୀ ମାର୍କଣ୍ଡେଶ୍ୱର ମନ୍ଦିର ଲିପି, ନବଜୀବନ, ପ୍ରଥମ ବର୍ଷ, ଅଷ୍ଟମ ସଂଖ୍ୟା, ୧୯୫୬, ପୃ - ୫୬୯-୫୭୬ ।
Inscriptions of Orissa, Vol. III, Part - I, No. 120 (Complied by S.N. Rajaguru) Sircar, D.C., Puri inscription of Chodaganga, Epigraphia Indica (EI), Vol. XXXIII, pp. 181 ff.

୪. Sircar, D..C. op. cit.

୫. ସତ୍ୟନାରାୟଣ ରାଜଗୁରୁ ଏବଂ ସୂର୍ଯ୍ୟନାରାୟଣ ଦାଶ ଲିପିରେ 'କୋଙ୍ଗଣେଶ୍ୱର' ବୋଲି ପଢ଼ିଥିଲେ । ଏହା ଶୁଦ୍ଧପାଠ ପରି ମନେହୁଏ ।
Inscriptions of Orissa, Vol. III, Part - I, No. 120.
ନବଜୀବନ, ୧୯୫୬, ଅଷ୍ଟମ ସଂଖ୍ୟା, ପୃ. ୫୬୯-୫୭୬ ।

୬. Sircar, D.C. op. cit., pp. 181 ff.
ଦାଶ ସୂର୍ଯ୍ୟନାରାୟଣ, ନବଜୀବନ, ୧୯୫୬, ଅଷ୍ଟମ ସଂଖ୍ୟା, ପୃ. ୫୬୯-୫୭୬ ।

୭. Inscriptions of Orissa, Vol. III, Part - I, No. 120.

୮. Sircar, D.C., op. cit. pp. 181 ff.
Studies in the Religious life in Ancient and Mediaeval India, 1971, P. 73.

୯. Epigraphia Indica, Vol. XXX, P. 29.

୧୦. Inscriptions of Orissa, Vol. III, Part - I, No. 120.

୧୧. Inscriptions of Orissa, Vol. III, Part - I, Nos. 153 and 158.
Epigraphia Andhrica, Vol. II, 1974, P. 71-72.
ଚୋଡ଼ଗଙ୍ଗଦେବଙ୍କର ଦ୍ୱିତୀୟ ପର୍ଯ୍ୟାୟର ଯୁଦ୍ଧ ବିଜୟର ବିବରଣୀ ମୋର ଅପ୍ରକାଶିତ

ସନ୍ଦର୍ଭ (Anantavarma Chodaganga Deva and His Times) ରେ ସ୍ଥାନ ପାଇଛି

୧୨. Dash, Kailash Chandra,

(1) A note on the new capital seat of Chodaganga, Journal of Orissan History, Orissa History Congress, 1981, Vol. II, No. - 1, p. 10-13.

(2) ଗଙ୍ଗେଶ୍ୱର ଚୋଡ଼ଗଙ୍ଗ ଓ ବୁଆଳିଗଡ଼, ଦୈନିକ ସମ୍ବାଦ, ୧.୭.୧୯୮୮ ।

୧୩. Dash, Kailash Chandra, 'A study on the conquest of Utkala by the Ganga kind Chodaganga, Orissa Historical Research Journal, Vol. XXXI, Nos. II, III and IV.

୧୪. Dash, Kalilash Chandra, Gangesvara-Chodaganga and the temple of Purusottama-Jagannatha, OHRJ, Vol. XXXII, Nos. III and IV, p. 72-83.

ଚୋଡ଼ଗଙ୍ଗଦେବ ଉତ୍କଳ ବିଜୟ କାଳରେ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଥିବାର ଅଭିଲେଖୀୟ ପ୍ରମାଣ ରହିଛି । ଜଗନ୍ନାଥ ମନ୍ଦିର ବେଢ଼ାରେ ଥିବା ନୃସିଂହ ମନ୍ଦିରରୁ ଚୂନ ଛଡାଇଦେବା ପରେ ଚୋଡ଼ଗଙ୍ଗଙ୍କ ରାଜତ୍ୱକାଳର ଅନେକ ଲିପି ଏଠାରେ ଦେଖିବାକୁ ମିଳେ । ଏଗୁଡ଼ିକ ଚୋଡ଼ଗଙ୍ଗଙ୍କ ରାଜତ୍ୱର ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟର ଧାରାବାହିକ ବିବରଣୀ ପାଇଁ ଆବଶ୍ୟକ । ଏକ ଶିଳାଲିପିରେ ଚୋଡ଼ଗଙ୍ଗଙ୍କର ଦାନ ବ୍ୟବସ୍ଥାର ବର୍ଣ୍ଣନା ରହିଛି । ଏହାର ସମୟ ଶକବର୍ଷ ଶର-ଲୋକ-ଖେନ୍ଦୁଗଣିତେ ଅର୍ଥାତ୍ ଶକାବ୍ଦ ୧୦୩୫ । ଏଥିରୁ ସ୍ପଷ୍ଟ ମନେହୁଏ ଚୋଡ଼ଗଙ୍ଗଦେବଙ୍କର ପୁରୁଷୋତ୍ତମକ୍ଷେତ୍ର ସହିତ ସମ୍ପର୍କ ୧୧୦୮ ଖ୍ରୀଷ୍ଟାବ୍ଦଠାରୁ ଆରମ୍ଭ ହୋଇଥିଲା ।

୧୫. ନବଜୀବନ, ୧୯୫୬, ଅଷ୍ଟମ ସଂଖ୍ୟା, ପୃ. ୫୬୯-୭୬ ।

EI. Vol. XXXIII, pp. 181 ff.

୧୬. Sircar, D.C., Studies in the Regilious life in Ancient and Mediaeval India, 1971, P. 73-74.

୧୭. Sundaram, K., The Simhachalam Temple, Simhachalam Devesthanam, Waltair, 1969, P. 84.

Gokhale, Sobhana, Anga Bhoga Ranga Bhoga of Sri Vitthala of Pandharapur, Orissa Historical Research Journal, Vol. XXXIII, No. 1 and 2, P. 173-179.

୧୮. Sundaram, K., op. cit., P. 84.

ଅଙ୍ଗଭୋଗ ପାଇଁ ଦ୍ରଷ୍ଟବ୍ୟ; Sircar, D.C., EI, Vol. XXXIII, pp. 181 ff.

୧୯. Majumdar, B.P., The Socio-Economic History of Northern

India, Calcutta, 1960, P. 282; P. 310.
ରାଜମାର୍ତ୍ତଣ୍ଡ, ପରମାର ଭୋଜଙ୍କ ରଚିତ; କାଳବିବେକ (ଜୀମୂତବାହନଙ୍କ ରଚିତ), ଶ୍ରୀହର୍ଷଙ୍କର ନୈଷଧୀୟ ଚରିତ ।

୨୦. IO, Vol. III, No. 153; EI, Vol. XXX, P. 32, P. 91-92; EI, Vol. XXIX, P. 47-48.
ନବଜୀବନ, ପ୍ରଥମବର୍ଷ, ୨ୟ ସଂଖ୍ୟା, ୧୯୫୫, ପୃ. ୯୭-୯୯ ।
ଝଙ୍କାର, ୧୯୫୩, ଚତୁର୍ଥ ସଂଖ୍ୟା, ପୃ. ୩୫୩-୫୬ ।

୨୧. Sircar, D.C., Studies in the Religious life in Ancient and Mediaeval India, P. 75

୨୨. ଦାଶ ସୂର୍ଯ୍ୟନାରାୟଣ, ଶ୍ରୀ ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ, ୧୯୮୫, ପୃ. ୧୪୫ ।

୨୩. ତତ୍ରୈବ ।

୨୪. ମାଦଳାପାଞ୍ଜି, ୧୯୬୯, ପୃ. ୩୯

୨୫. ଦାଶ, ଗଗନେନ୍ଦ୍ର ନାଥ, "The Evolution of the Priestly Power : The Gangavamsa period", in "The Cult of Jagannatha and the Regional Tradition of Orissa", 1978, P. 165-66.



# ରାମାନୁଜ, ଚୋଡ଼ଗଙ୍ଗ ଓ ପୁରୁଷୋତ୍ତମ କ୍ଷେତ୍ର

॥ ୧ ॥

ଖ୍ରୀଷ୍ଟୀୟ ଏକାଦଶ ଶତକର ଶେଷ ଭାଗରେ ଏବଂ ଦ୍ୱାଦଶ ଶତକର ଆଦ୍ୟ ଭାଗରେ ଦକ୍ଷିଣ ଭାରତର ବିଶିଷ୍ଟାଦ୍ୱୈତପନ୍ଥୀ ରାମାନୁଜାଚାର୍ଯ୍ୟ ଭାରତବର୍ଷର ବିଭିନ୍ନ ତୀର୍ଥସ୍ଥାନ ପର୍ଯ୍ୟଟନ କରି ବୈଷ୍ଣବ ଧର୍ମର ପ୍ରବଳ ପ୍ରସାର ପାଇଁ ଉଦ୍ୟମ କରିଥିଲେ । ଏହି ଉଦ୍ୟମ ଫଳରେ ରାମାନୁଜ ପ୍ରଚାରିତ ବୈଷ୍ଣବ ଧର୍ମ ହଠାତ୍ ଜନପ୍ରିୟ ହୋଇ ଉଠିଲା । ରାମାନୁଜଙ୍କର ଏହି ବ୍ୟାପକ ବୈଷ୍ଣବଧର୍ମ ପ୍ରଚାର ଜନଶ୍ରୁତିର ଅତ୍ରୁଆ ଧାରାରେ ଲୁଚି ରହିଯିବା ଫଳରେ ଐତିହାସିକ ଏହି ଦିଗ ଉପରେ ଯଥାର୍ଥ ଆଲୋକପାତ କରିବାକୁ ସମର୍ଥ ହୋଇନାହିଁ । କିନ୍ତୁ ଏହି ସମ୍ପର୍କିତ ଜନଶ୍ରୁତିର ଐତିହାସିକ ଦିଗ ଉପରେ ଆବଶ୍ୟକ ଗୁରୁତ୍ୱ ଦିଆଯିବା ଉଚିତ୍; ନଚେତ୍ ଖଣ୍ଡିତ ବିବରଣୀରେ ଇତିହାସ ବିକଳାଙ୍ଗ ହୋଇ ଉଠିବ । ଓଡ଼ିଶା ଓ ଆନ୍ଧ୍ରରେ ରାମାନୁଜାଚାର୍ଯ୍ୟ, ଗଙ୍ଗ ସମ୍ରାଟ ଚୋଡ଼ଗଙ୍ଗ ଏବଂ ପୁରୁଷୋତ୍ତମ କ୍ଷେତ୍ରକୁ କେନ୍ଦ୍ରକରି ଜନଶ୍ରୁତି ଶତାବ୍ଦୀ ଶତାବ୍ଦୀ ଧରି ରହିଆସିଛି । ଏହି ଜନଶ୍ରୁତିର ଐତିହାସିକ ଭିତ୍ତିଭୂମିକୁ ଆବିଷ୍କାର କରିବା ସଙ୍ଗେ ସଙ୍ଗେ ଦ୍ୱାଦଶ ଶତାବ୍ଦୀର ଆଦ୍ୟ ଦଶନ୍ଧିରେ ଏହି ତିନୋଟି ପ୍ରସଙ୍ଗର ସଂଯୋଗ କିପରି ସମ୍ଭବ ହୋଇଥିଲା, ତାହାର ଆଲୋଚନା ଏ ପ୍ରବନ୍ଧର ମୂଳ ବକ୍ତବ୍ୟ ।

॥ ୨ ॥

ରାମାନୁଜାଚାର୍ଯ୍ୟଙ୍କର ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପର୍ଯ୍ୟଟନ ଏବଂ ତାଙ୍କର

ଶ୍ରୀକୂର୍ମମ୍‌ର ଶୈବ ପୀଠକୁ ବୈଷ୍ଣବ ପୀଠରେ ପରିଣତ କରିବାର ସଫଳ ଉଦ୍ୟମ ସହିତ କଳିଙ୍ଗର ଶୈବ ସମ୍ରାଟ ଚୋଡ଼ଗଙ୍ଗଙ୍କୁ ବୈଷ୍ଣବ ଧର୍ମଧାରାରେ ଅନୁପ୍ରାଣିତ/ ପ୍ରଭାବିତ କରିବା ବିଷୟ ଉପରେ ଜନଶ୍ରୁତି ପ୍ରଚଳିତ । ଓଡ଼ିଶାର ଏହି ଜନଶ୍ରୁତି ଶ୍ରୀମନ୍ଦିର ସମାଚାର ପ୍ରକାଶିତ ମାଦଳାପାଞ୍ଜିରେ ସ୍ଥାନ ପାଇଛି । (୧) ଏପରିକି ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସଙ୍କଳିତ ମାଦଳାପାଞ୍ଜିର ରାଜଚରିତରେ ଗଜପତି ପୁରୁଷୋତ୍ତମଦେବଙ୍କ ବିଷୟ ଚର୍ଚ୍ଚାରେ ଏ ଜନଶ୍ରୁତି ପ୍ରବେଶ କରିଯାଇଛି (୨) । ଏ ଦୃଷ୍ଟିରୁ ଓଡ଼ିଶାରେ ଅନ୍ତତଃ ଖ୍ରୀଷ୍ଟୀୟ ଷୋଡ଼ଶ-ସପ୍ତଦଶ ଶତକରେ ଏ ଜନଶ୍ରୁତି ଅଜଣା ନଥିଲା ।

ରାମାନୁଜଙ୍କର ପୁରୁଷୋତ୍ତମ କ୍ଷେତ୍ର ପର୍ଯ୍ୟଟନ ତଥା ତାଙ୍କର ବୈଷ୍ଣବଧର୍ମ ପ୍ରସାରଣ କାର୍ଯ୍ୟ ସମ୍ପର୍କରେ ବର୍ଣ୍ଣନା ରାମାନୁଜ ଦିବ୍ୟ ଚରିତାଇ, ଅନନ୍ତାଚାର୍ଯ୍ୟଙ୍କ ରଚିତ ପ୍ରପନ୍ନାମୃତ ଏବଂ ଟୋଟାଦ୍ରିନାଥ ଗୁରୁ ପରମ୍ପରାରେ ସ୍ଥାନ ପାଇଛି (୩) । ଏହି ଜନଶ୍ରୁତିକୁ ସଂକ୍ଷେପରେ ଏଠାରେ ଉଦ୍ଧାର କରାଯାଇଛି । ବିଶିଷ୍ଟ ଅଦ୍ୱୈତବାଦର ପ୍ରବର୍ତ୍ତକ ତଥା ଦକ୍ଷିଣଭାରତର ପରମ ବୈଷ୍ଣବ ରାମାନୁଜ ଉତ୍ତର ଭାରତ ଭ୍ରମଣରୁ ଫେରିବାବେଳେ ପୁରୁଷୋତ୍ତମକ୍ଷେତ୍ର ପର୍ଯ୍ୟଟନ କରିଥିଲେ । ପୁରୁଷୋତ୍ତମ କ୍ଷେତ୍ରରେ ସେ ସେବକମାନଙ୍କର ଜୀବନଧାରଣ ପଦ୍ଧତି ଏବଂ ଉପାସନା ପଦ୍ଧତି ଦେଖି ଅସନ୍ତୁଷ୍ଟ ହେଲେ । ସେ ଏହି ଅଞ୍ଚଳର ରାଜାଙ୍କର ସହଯୋଗରେ ପୁରୁଷୋତ୍ତମ କ୍ଷେତ୍ରରେ ଉପାସନା ପଦ୍ଧତି ଏବଂ ସେବକମାନଙ୍କର ଜୀବନଧାରଣର ପରିବର୍ତ୍ତନ ପାଇଁ ଉଦ୍ୟମ କଲେ । ସେବକମାନେ ଏଥିରେ ଏକମତ ହୋଇପାରି ନଥିଲେ; ରାମାନୁଜଙ୍କର ପରିବର୍ତ୍ତନ ଧାରାକୁ ସେମାନେ ଗ୍ରହଣ କରିପାରିଲେ ନାହିଁ । କିନ୍ତୁ ରାମାନୁଜ ଦୃଢ଼ପରିକର ହୋଇ ନୂତନ ସେବକମାନ ନିଯୁକ୍ତି କଲେ । ତେଣୁ ପୂର୍ବ ସେବକମାନେ ଶ୍ରୀଜଗନ୍ନାଥଙ୍କ ନିକଟରେ ରାମାନୁଜଙ୍କର ସଂସ୍କାର ଦ୍ୱାରା ଅସନ୍ତୁଷ୍ଟ ବୋଲି ଜଣାଇ ଦେଲେ । ପ୍ରଭୁ ଜଗନ୍ନାଥ ସେହି ପୁରାତନ ସେବକମାନଙ୍କୁ ଶ୍ରଦ୍ଧା କରୁଥିଲେ ଏବଂ ସେମାନଙ୍କର ଉପାସନା ପଦ୍ଧତିରେ ସନ୍ତୁଷ୍ଟ ଥିଲେ । ତେଣୁ ଜଗନ୍ନାଥ ରାମାନୁଜଙ୍କୁ ପୁରୁଷୋତ୍ତମ କ୍ଷେତ୍ରରେ ତାଙ୍କର ସଂସ୍କାରମୂଳକ କାର୍ଯ୍ୟରୁ ବିରତ ହେବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ରାମାନୁଜ ଏହା ନ ଶୁଣି ତାଙ୍କର ସଂସ୍କାର ମୂଳକ କାର୍ଯ୍ୟମାନ କରି ଚାଲିଲେ । ସେଥିପାଇଁ ପ୍ରଭୁ ଜଗନ୍ନାଥ ତାଙ୍କର ବାହନ ଗରୁଡ଼କୁ ରାମାନୁଜ ଶୋଇଥିବା ଅବସ୍ଥାରେ ଶ୍ରୀକୂର୍ମମରେ ଛାଡ଼ିଆସିବାକୁ ନିର୍ଦ୍ଦେଶଦେଲେ । ରାମାନୁଜ ତା'ପରଦିନ ନିଦ୍ରାରୁ ଉଠି ଶିବଲିଙ୍ଗ ଆକାରରେ ପୂଜାପାଉଥିବା ଭିନ୍ନ ଏକ ସ୍ଥାନରେ ନିଜକୁ ଆବିଷ୍କାର

କଲେ । ସେ ପରମ ବୈଷ୍ଣବ ହୋଇଥିବାରୁ ଶିବ ଉପାସନା କରିପାରିଲେ ନାହିଁ ଏବଂ ଶିବଙ୍କ ପ୍ରଦତ୍ତ ଖାଦ୍ୟ ଖାଇଲେ ନାହିଁ । ସେ ସେଠାରେ ଅନଶନ କଲେ । ରାତ୍ରରେ ସ୍ୱପ୍ନରେ ସେ ଏବଂ ସେ ସ୍ଥାନର ସେବକମାନେ ବିଷ୍ଣୁଙ୍କର କୂର୍ମ ଅବତାରକୁ ଭୁଲବଶତଃ ଶିବ ବୋଲି ଚିନ୍ତା କରିଛନ୍ତି ବୋଲି ଦୈବବାଣୀ ଶୁଭିଲା ।

ତେଣୁ ତତ୍‌କ୍ଷଣାତ୍ ବିଷ୍ଣୁ-ଶ୍ରୀକୁର୍ମନାଥଙ୍କୁ ସେଠାରେ ପୂଜା କରିବା ଉଚିତ୍ ବୋଲି ରାମାନୁଜଙ୍କୁ ନିର୍ଦ୍ଦେଶ ଦିଆଗଲା । ଏହା ଫଳରେ ରାମାନୁଜ ଶ୍ରୀକୁର୍ମକ୍ଷେତ୍ରକୁ ବିଷ୍ଣୁ କୁର୍ମନାଥ କ୍ଷେତ୍ରରେ ପରିଣତ କରିବା ସଙ୍ଗେ ସଙ୍ଗେ ସେହି ଅଞ୍ଚଳର ରାଜାଙ୍କୁ ବଶୀଭୂତ କରି ବୈଷ୍ଣବ କଲେ ।

ଜନଶ୍ରୁତିକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିବେଚନା କରି ଆମକାଳର ଜଣେ ବିଶିଷ୍ଟ ଆଲୋଚକ ଡକ୍ଟର ଗଗନେନ୍ଦ୍ର ନାଥ ଦାଶ ମତ ଦିଅନ୍ତି -

It seems that Ramanuja, with the support of the ruling monarch in the control of the Puri tract, tried to introduce Brahmanic mode of worship at the shrine of Lord Jagannatha in Puri. But the priests who were not adept at Brahmanic rites-were unable to adopt it. When Ramanuja, determined to carry on his reform proposals and engaged a new set of Brahmin priests, the opposition from the Non-Brahmin priests was Vehement. In the face of their fierce resistance in spite of the possible support of the monarch in control of the Puri tract, Ramanuja had to abandon his attempt. (୪)

ସବୁଠାରୁ କୌତୁହଳର ବିଷୟ ହେଉଛି- ଏ ପରମ୍ପରାକୁ ରାମାନୁଜପନ୍ଥୀମାନେ ପ୍ରଚାର କରିଛନ୍ତି । ଏଥିରେ ରାମାନୁଜଙ୍କର ବିଫଳତାର ସୂଚନା ରହିଥିଲେ ମଧ୍ୟ ଘଟଣାଟି ସତ୍ୟ ହୋଇଥିବାରୁ ରାମାନୁଜପନ୍ଥୀ ସାହିତ୍ୟରେ ସ୍ଥାନ ପାଇଛି । ରାମାନୁଜପନ୍ଥୀମାନେ ରାମାନୁଜଙ୍କର ପୁରୁଷୋତ୍ତମ କ୍ଷେତ୍ର ପର୍ଯ୍ୟଟନ ଏବଂ ସେଠାରେ ସଂସ୍କାରମୂଳକ କାର୍ଯ୍ୟରେ ବିଫଳତାକୁ ଲୋକଲୋଚନକୁ ଆଣିବାକୁ ଉଦ୍ୟମ କରିବାର ଅନ୍ୟ କାରଣ ହେଉଛି ଏହା ସହିତ ଜଡ଼ିତ ରାମାନୁଜଙ୍କର ଦକ୍ଷିଣଭାରତର ଏକ ପ୍ରସିଦ୍ଧ ଶୈବପୀଠ ଶ୍ରୀକୁର୍ମମ୍‌କୁ ବିଷ୍ଣୁ ପୀଠରେ ପରିଣତ କରିବାର ଅଦ୍ଭୁତ ସଫଳତା (ଯେଉଁଠାରେ ଶୈବମାନେ ଅତ୍ୟନ୍ତ ସକ୍ରିୟ ଥିଲେ) ।

ରାମାନୁଜ ପୁରୁଷୋତ୍ତମକ୍ଷେତ୍ର ପର୍ଯ୍ୟଟନ କରିବା ଓ ସଂସ୍କାରମୂଳକ କାର୍ଯ୍ୟରେ ଉଦ୍ୟମ ଚଳାଇଥିବା ଜନଶ୍ରୁତି ସପକ୍ଷରେ ଅନେକ ପ୍ରମାଣ/ତଥ୍ୟ ରହିଛି । ଜଗନ୍ନାଥ ଓ ବଳଭଦ୍ର ମୂର୍ତ୍ତିଦ୍ୱୟର କପାଳ ଭାଗରେ ଥିବା ପବିତ୍ର ଚିହ୍ନକୁ ରାମାନୁଜପନ୍ଥୀମାନଙ୍କର

କପାଳର ଚିହ୍ନ ସହିତ ପରିଚିତ କରାଯାଏ । ଏହାକୁ ରାମାନୁଜ ପୁରୀ ପର୍ଯ୍ୟଟନର ଏକ ପ୍ରମାଣ ହିସାବରେ ଗବେଷକମାନେ ଗ୍ରହଣ କରିଛନ୍ତି (୫)। ପୁରୁଷୋତ୍ତମକ୍ଷେତ୍ରଠାରୁ ୧୬ ମାଇଲ ଦୂରରେ ଅଲାରନାଥ ମନ୍ଦିର ଅବସ୍ଥିତ। ରାମାନୁଜଙ୍କର ଦକ୍ଷିଣଭାରତର ଅଲଓ୍ୱାରମାନଙ୍କ ପ୍ରତି ପ୍ରବଳ ସମ୍ମାନ ଥିଲା । ଏଣୁ ଏହା ମଧ୍ୟ ଦକ୍ଷିଣାଭରତୀୟ ବୈଷ୍ଣବ ଧର୍ମଧାରା ପୁରୁଷୋତ୍ତମକ୍ଷେତ୍ରକୁ ସ୍ପର୍ଶ କରିଥିବାର ଅନ୍ୟଏକ ପ୍ରମାଣ ହିସାବରେ ଗ୍ରହଣକରାଯାଇଥାଏ । ମାଦଳାପାଞ୍ଜିର ରାଜଚରିତ ଅନୁସାରେ ମଦନ ମହାଦେବଙ୍କ ରାଜତ୍ୱରେ ଏହି ଅଲାରନାଥ ମନ୍ଦିର ନିର୍ମାଣ କରାଯାଇଥିଲା (୬) । ଗଙ୍ଗବଂଶୀ ରାଜା ଦ୍ୱିତୀୟ ରାଜାରାଜଙ୍କୁ ମଦନମହାଦେବଙ୍କ ସହିତ ଚିହ୍ନିତ କରାଯାଇଥାଏ । ଏ ଦୃଷ୍ଟିରୁ ଏ ଜନଶ୍ରୁତିକୁ ଗ୍ରହଣ କରିନେବାରେ ଅସୁବିଧା ନାହିଁ । ସମ୍ଭବତଃ ରାମାନୁଜ ଏବଂ ତାଙ୍କର ସହକର୍ମୀମାନେ ପୁରୁଷୋତ୍ତମକ୍ଷେତ୍ରରେ ପରାଜୟ ବରଣ କରିବା ପୂର୍ବରୁ କିମ୍ବା ପରେ ଏହି ସ୍ଥାନରେ ଅବସ୍ଥାନ କରି ବୈଷ୍ଣବଧର୍ମ ପ୍ରଚାର କରାଇଥିଲେ । ତେଣୁ ଜନଶ୍ରୁତିରେ ସ୍ଥାନଟି ଅଲଓ୍ୱାର ନାମ ସହିତ ଜଡ଼ିତ କରାଗଲା । ପରେ ଚୋଡ଼ଗଙ୍ଗଙ୍କର ଏକ ପୁତ୍ର ଦ୍ୱିତୀୟ ରାଜାରାଜ ଏଠାରେ ମନ୍ଦିର ତିଆରି କରି ପୂଜା ଉପଚାର କରାଇଥିବେ । ପୁରୁଷୋତ୍ତମକ୍ଷେତ୍ରରେ ଥିବା ଏମାର ମଠ (ଏହା ରାମାନୁଜ ସମ୍ପ୍ରଦାୟ ସହିତ ଜଡ଼ିତ) ରାମାନୁଜ ପୁରୁଷୋତ୍ତମକ୍ଷେତ୍ର ପର୍ଯ୍ୟଟନ ସମ୍ପର୍କରେ ଅନ୍ୟଏକ ପ୍ରମାଣ । ଏମାର ଶବ୍ଦଟି ଇମ୍ବାର ଶବ୍ଦରୁ ଆସିଥାଇପାରେ । ଏହାର ସମ୍ପୂର୍ଣ୍ଣ ତାମିଲ ନାମ ଥିଲା ଇମ୍-ପେରୁ-ମନ୍-ଆର୍ ବା ଏହା ରାମାନୁଜଙ୍କର ଅନ୍ୟ ନାମ ମନ୍ମଥର ପରିଚୟ ଦିଏ (୭) । ଏ ସମସ୍ତ ଉପାଦାନକୁ ବିବେଚନାକୁ ନେଲେ ସ୍ପଷ୍ଟ ସ୍ୱୀକାର କରିବାକୁ ହେବ ଯେ, ରାମାନୁଜ ଏବଂ ତାଙ୍କ ସମ୍ପ୍ରଦାୟର ପୁରୁଷୋତ୍ତମକ୍ଷେତ୍ର ସହିତ କିଛି ନା କିଛି ସମ୍ପର୍କ ଥିଲା ।

ରାମାନୁଜଙ୍କର ପୁରୁଷୋତ୍ତମକ୍ଷେତ୍ର ପର୍ଯ୍ୟଟନରେ ସତ୍ୟତା ଥିଲେ ମଧ୍ୟ ଏହି ଘଟଣାର ସମୟ ସ୍ଥିର କରିବା ଏକ ମୌଳିକ ସମସ୍ୟା । ଆଲୋଚକ ତଥା ଐତିହାସିକମାନେ ୧୦୯୬ ଖ୍ରୀଷ୍ଟାବ୍ଦରେ ଚୋଳ ସମ୍ରାଟ କୁଲୋତୁଙ୍ଗ (ପ୍ରଥମ)ଙ୍କର ବୈଷ୍ଣବ ବିରୋଧୀ ନୀତିର ଶିକାର ହୋଇ ରାମାନୁଜ ହୟଶଳ ରାଜ୍ୟରେ ଆତ୍ମ-ନିର୍ବାସନ ଗ୍ରହଣକଲେ ବୋଲି ମତଦେଇଛନ୍ତି (୮) ।

ଏଣୁ ସମ୍ଭବତଃ ୧୦୯୬ ଖ୍ରୀଷ୍ଟାବ୍ଦ ପୂର୍ବରୁ ସେ ପୁରୁଷୋତ୍ତମକ୍ଷେତ୍ର ପର୍ଯ୍ୟଟନ କରିଥିବେ ବୋଲି ଗଗନେନ୍ଦ୍ର ନାଥ ଦାଶ ମତଦେଇଛନ୍ତି (୯) ।

ରାମାନୁଜଙ୍କର ୧୦୯୬ ଖ୍ରୀଷ୍ଟାବ୍ଦଠାରୁ ହୟଶଳ ରାଜ୍ୟର ଆତ୍ମ-ନିର୍ବାସନ ପ୍ରସଙ୍ଗକୁ ଆଳକୋଣ୍ଡଭିଲି ଗୋବିନ୍ଦାଚାର୍ଯ୍ୟ, ଜେ.ଡ଼ି.ଏମ୍. ଡେରେଟ୍, ହରମାନ୍ କୁଲ୍‌କେ ଏବଂ ଗଗନେନ୍ଦ୍ର ନାଥ ଦାଶ ପ୍ରଭୃତି ଆଲୋଚକଗଣ ଗ୍ରହଣ କରିଛନ୍ତି (୧୦)। ଚୋଳ ସମ୍ରାଟ କୃମିକଣ୍ଠ ଚୋଳଙ୍କର ବୈଷ୍ଣବ ବିରୋଧୀ ନୀତିଯୋଗୁଁ ରାମାନୁଜଙ୍କୁ ଏହି ଆତ୍ମ-ନିର୍ବାସନ ଗ୍ରହଣ କରିବାକୁ ପଡ଼ିଲା । କୃମିକଣ୍ଠ ଚୋଳଙ୍କୁ ଚୋଳ-ଚାଲୁକ୍ୟ ସମ୍ରାଟ ପ୍ରଥମ କୁଲୋତ୍ତୁଙ୍ଗଙ୍କ ସହିତ ଚିହ୍ନିତ କରିବା ମତକୁ ଅନେକ ଗବେଷକ ଗ୍ରହଣ କରିଛନ୍ତି (୧୧)। କିନ୍ତୁ ରାମାନୁଜ ଏବଂ ତାଙ୍କ ପ୍ରିୟ ସମ୍ପ୍ରଦାୟକୁ ଅସୁବିଧାର ସମ୍ମୁଖୀନ କରାଇଥିବା ଚୋଳ ସମ୍ରାଟ (କୃମିକଣ୍ଠ ଚୋଳ) ପ୍ରଥମ କୁଲୋତ୍ତୁଙ୍ଗ ରୂପେ ଚିହ୍ନିତ କରିବାରେ ଅନେକ ବିପକ୍ଷ ଯୁକ୍ତି ରହିଛି ।

୧. ରାମାନୁଜଙ୍କର ହୟଶଳ ରାଜ୍ୟରେ ଆତ୍ମ ନିର୍ବାସନର ପାରମ୍ପରିକ ସମୟ ଖ୍ରୀଷ୍ଟାବ୍ଦ ୧୦୯୬ ଏବଂ ସେଠାରୁ ତାଙ୍କର ପୂର୍ବସ୍ଥାନ ଶ୍ରୀରଙ୍ଗମ୍ ପ୍ରତ୍ୟାବର୍ତ୍ତନ ସମୟ ଖ୍ରୀଷ୍ଟାବ୍ଦ ୧୧୧୮ । (୧୨)। ଖ୍ରୀଷ୍ଟାବ୍ଦ ୧୧୧୬ରେ ସେ କୃମିକଣ୍ଠ ଚୋଳଙ୍କର ମୃତ୍ୟୁ ସମ୍ବାଦ ଶୁଣି ମେଲ୍ଲକୋଟିରୁ ଚୋଳ ରାଜ୍ୟକୁ ଫେରିଆସିଲେ । ଏଣୁ କୃମିକଣ୍ଠ ଚୋଳଙ୍କର ମୃତ୍ୟୁ ଖ୍ରୀଷ୍ଟାବ୍ଦ ୧୧୧୬ ପୂର୍ବରୁ ଘଟିଥିଲା ବୋଲି କହିବାକୁ ହେବ । ଏପରିସ୍ଥଳେ କୃମିକଣ୍ଠ ଚୋଳଙ୍କୁ ପ୍ରଥମ କୁଲୋତ୍ତୁଙ୍ଗଙ୍କ ସହିତ ଚିହ୍ନିତ କରାଯାଇ ପାରିବ ନାହିଁ । କାରଣ, ପ୍ରଥମ କୁଲୋତ୍ତୁଙ୍ଗଙ୍କର ରାଜତ୍ୱର ସମୟ ଖ୍ରୀଷ୍ଟାବ୍ଦ ୧୦୭୦ ରୁ ୧୧୧୮ ପର୍ଯ୍ୟନ୍ତ ଏବଂ ଏହାପରେ ଖ୍ରୀଷ୍ଟାବ୍ଦ ୧୧୨୨ରେ ସେ ମୃତ୍ୟୁବରଣ କରିଥିଲେ (୧୩)।

୨. ଚୋଳ-ଚାଲୁକ୍ୟ ନୃପତି ପ୍ରଥମ କୁଲୋତ୍ତୁଙ୍ଗ ତାଙ୍କ ରାଜତ୍ୱକାଳରେ ବୈଷ୍ଣବ-ବିରୋଧୀ ନୀତି ଅନୁସରଣ କରି ନଥିବାର ଯୁକ୍ତି କରାଯାଇଛି । ବେଙ୍ଗୀ ରାଜ୍ୟର ରାଜ୍ୟପାଳ ତଥା ପ୍ରଥମ କୁଲୋତ୍ତୁଙ୍ଗଙ୍କର ପୁତ୍ର ପରାନ୍ତକ ଦେବଙ୍କର ମଲ୍ଲଭରମ୍‌ଠାରୁ ପ୍ରାପ୍ତ ତାମ୍ରଫଳକର ବିବରଣୀ ଅନୁସାରେ ଏହି କୁଲୋତ୍ତୁଙ୍ଗ କାଞ୍ଚିପୁରମ୍‌ର ହସ୍ତୀ ଗ୍ରାମକୁ ଯାତ୍ରା କରିଥିଲେ ଏବଂ ସେହି ସ୍ଥାନର ଦେବତା ବରଦରାଜ ସ୍ୱାମୀଙ୍କ ଅନୁକମ୍ପାଲାଭ ପରେ ସେ ପରାନ୍ତକଙ୍କୁ ପୁତ୍ର ହିସାବରେ ପାଇଥିଲେ (୧୪)। ଏହା ଜଣାଇଦିଏ ଯେ କୁଲୋତ୍ତୁଙ୍ଗ ଚୋଳ (ପ୍ରଥମ) ବୈଷ୍ଣବ-ବିରୋଧୀ ନଥିଲେ ଏବଂ ବରଦରାଜ ସ୍ୱାମୀଙ୍କର ଭକ୍ତ ଥିଲେ । ଏପରିସ୍ଥଳେ ସେ ବୈଷ୍ଣବମାନଙ୍କର ସଂହାର ପାଇଁ ପଦକ୍ଷେପ ନେଇଥିବା କଥା ଏବଂ ରାମାନୁଜଙ୍କ ପରି ପରମ ବୈଷ୍ଣବଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ

କରିଥିବା କଥା ଗ୍ରହଣୀୟ ମନେହୁଏ ନାହିଁ । ତାଙ୍କର ପୁତ୍ର ବୀରଚୋଡ଼ ତଥା ବେଙ୍ଗୀର ଅନ୍ୟଏକ ରାଜ୍ୟପାଳ ଚେଣ୍ଣ୍ରୁଠାରେ ବିଷ୍ଣୁ ମନ୍ଦିର ପାଇଁ ଗ୍ରାମ ଦାନ କରିଥିଲେ । ଏହି ମନ୍ଦିରଟି ତାଙ୍କର ସେନାପତି ମେଡ଼ମାର୍ଯ୍ୟ (ଜଣେ ବୈଷ୍ଣବ ବ୍ରାହ୍ମଣ)ଙ୍କ ଦ୍ୱାରା ନିର୍ମିତ ହୋଇଥିଲା । (୧୫) ଏହି ଦୃଷ୍ଟିରୁ ପ୍ରଥମ କୁଳୋତୁଙ୍ଗ ରାଜତ୍ୱକାଳରେ ଚୋଡ଼ରାଜ୍ୟରେ ବୈଷ୍ଣବମାନଙ୍କ ପାଇଁ ପରିବେଶ ଅନୁକୂଳ ଥିଲା ବୋଲି ଅନୁମାନ ହୁଏ ।

୩. ଚୋଳ-ଚାଲୁକ୍ୟ ସମ୍ରାଟ ପ୍ରଥମ କୁଳୋତୁଙ୍ଗଙ୍କର ସମଗ୍ର ରାଜତ୍ୱକାଳ ପୂର୍ବ-ଗଙ୍ଗବଂଶୀ, ପଶ୍ଚିମ ଚାଲୁକ୍ୟ ବଂଶୀ ଏବଂ ହୟଶଳ ରାଜାମାନଙ୍କ ସହିତ ଯୁଦ୍ଧରେ ପ୍ରାୟତଃ ବିତିଯାଇଥିଲା । ଏଣୁ ରାମାନୁଜପନ୍ଥୀ ତଥା ଶ୍ରୀବୈଷ୍ଣବମାନଙ୍କୁ ରାଜ୍ୟରୁ ବିତାଡ଼ନ ବା ସଂହାର କରବା ନୀତି ପ୍ରୟୋଗ ପାଇଁ ସେ ସମୟ ପାଇନଥିବେ ।

୪. ହୟଶଳ ରାଜା ବିଷ୍ଣୁବର୍ଦ୍ଧନ ରାମାନୁଜଙ୍କ ଦ୍ୱାରା ବୈଷ୍ଣବ ଧର୍ମରେ ଦୀକ୍ଷିତ ହେବା ଫଳରେ ସେ ଚୋଳରାଜ୍ୟକୁ ଆକ୍ରମଣ କରିଥିଲେ । ଚୋଳ ରାଜ୍ୟରୁ ବିତାଡ଼ିତ ତାଙ୍କ ରାଜ୍ୟରେ ଆଶ୍ରିତ ରାମାନୁଜ ଏବଂ ତାଙ୍କ ସହଚରମାନଙ୍କୁ ସନ୍ତୁଷ୍ଟ କରିବା ଥିଲା ଏହି ଆକ୍ରମଣର ମୂଳଲକ୍ଷ୍ୟ । ଆଲୋଚକମାନଙ୍କର ଏହି ମତ ମଧ୍ୟ ଗ୍ରହଣୀୟ ନୁହେଁ । (୧୬) ପ୍ରକୃତରେ ଏହି ହୟଶଳ ରାଜା ତାଙ୍କ ପୁତ୍ରଙ୍କର ତାମ୍ରଫଳକର ବିବରଣୀରେ ନିଜ ସେନାନାଥ ନିର୍ଦ୍ଦଳିତ ଜନନାଥପୁର ଉପାଧିରେ ଭୂଷିତ ହୋଇଥିବାର ସୂଚନା ରହିଛି । (୧୭) କିନ୍ତୁ ବିଷ୍ଣୁବର୍ଦ୍ଧନଙ୍କର ଚୋଳରାଜ୍ୟ ଅଭିଯାନର ଭିନ୍ନ କାରଣ ରହିଛି ।

କୁଳୋତୁଙ୍ଗ (ପ୍ରଥମ)ଙ୍କର ରାଜତ୍ୱର ଶେଷ ଭାଗରେ ଚୋଳ ରାଜ୍ୟ ସିଂହାସନକୁ ନେଇ ଭ୍ରାତୃବିବାଦ ଦେଖାଦେଇଥିଲା । ବେଙ୍ଗୀ ରାଜ୍ୟପାଳ ପରାନ୍ତକ ଏବଂ ବିକ୍ରମଚୋଳ (ଉଭୟ କୁଳୋତୁଙ୍ଗଙ୍କର ଦୁଇପୁତ୍ର)ଙ୍କ ମଧ୍ୟରେ ଚୋଳ ସିଂହାସନ ପାଇଁ ବିବାଦ ଚାଲିଥିଲା । ଚାଲୁକ୍ୟ-ଚୋଳ ସିଂହାସନରେ ଶେଷରେ ବିକ୍ରମ ଚୋଳଙ୍କୁ ଗ୍ରହଣ କରାଯାଇଥିଲା ଏବଂ ସେତେବେଳେ ପରାନ୍ତକ ବେଙ୍ଗୀର ରାଜ୍ୟପାଳ ଥିଲେ । ଏହି ବିବାଦ କାଳରେ କୁଳୋତୁଙ୍ଗ ସମର୍ଥିତ ବେଙ୍ଗୀ ରାଜ୍ୟପାଳ ପରାନ୍ତକଙ୍କୁ ସାହାଯ୍ୟ କରିବାପାଇଁ ସିଂହଳର ବିକ୍ରମବାହୁ ବେଙ୍ଗୀକୁ ଆସିଥିଲେ । ଅନୁମାନ କରାଯାଇପାରେ ଯେ ଯେହେତୁ ବିକ୍ରମ ଚୋଳ ଜଣେ ହୟଶଳ ରାଜକନ୍ୟା ଗର୍ଭରୁ ଜନ୍ମ ନେଇଥିଲେ ବିଷ୍ଣୁବର୍ଦ୍ଧନ (ହୟଶଳ ରାଜା) ସେଥିପାଇଁ ବିକ୍ରମ ଚୋଳଙ୍କୁ ସାହାଯ୍ୟ କରିବାକୁ ଆସିଥିଲେ ଏବଂ ବେଙ୍ଗୀ ଆକ୍ରମଣ କରିଥିଲେ । (୧୮) ଏ ଦୃଷ୍ଟିରୁ ବିଷ୍ଣୁବର୍ଦ୍ଧନ

ଶ୍ରୀବୈଷ୍ଣବମାନଙ୍କର ବା ରାମାନୁଜ ପନ୍ଥୀମାନଙ୍କର ସୁରକ୍ଷା ପାଇଁ ଚୋଳରାଜ୍ୟ ଆକ୍ରମଣ କରି ନଥିଲେ ।

୫. ବିଷ୍ଣୁବର୍ଦ୍ଧନଙ୍କ ପୂର୍ବନାମ ଥିଲା ବିଟ୍ଟିଗ । ବାଳକୃଷ୍ଣ ରାଜଗୋପାଳଙ୍କ ମତାନୁସାରେ ବିଟ୍ଟିଗ ଶବ୍ଦଟି ସଂସ୍କୃତ ଶବ୍ଦରୁ କାନାଡ଼ା ଶବ୍ଦରେ ପରିଣତ ହୋଇଛି । (୧୯) କିନ୍ତୁ ଆର.ଏନ୍.ସାଲେଟୋର୍ (R.N. Saletore) ଏହି ମତକୁ ଗ୍ରହଣ କରନ୍ତି ନାହିଁ । (୨୦) ତାଙ୍କ ମତରେ ବିଟ୍ଟିଗ ବା ବିଟ୍ଟି ଦେବ ବିଟ୍ଟି ଶବ୍ଦରୁ ଆସିଛି । ଏହା ସଂସ୍କୃତରେ ବିଷ୍ଟି ବା ବାଧ୍ୟତାମୂଳକ ଶ୍ରମ ସେବାକୁ ବୁଝାଇଥାଏ । ଏହି ରାଜା କେତେକ ରାଜ୍ୟଜୟ କରି ସେସବୁ ରାଜ୍ୟର ରାଜାମାନଙ୍କ ଠାରୁ ବାଧ୍ୟତାମୂଳକ ଶ୍ରମ/ ସେବା/ ବେଠି ବେଗାରୀ ଦାବି କରୁଥିବାରୁ ଏପରି ନାମ ଦିଆଯାଇଛି (୨୧) ହୟଶଳ ରାଜା ବିଷ୍ଣୁବର୍ଦ୍ଧନ ରୂପେ ଖ୍ୟାତିଲାଭ କରିବା ପୂର୍ବରୁ ଏହି ବିଟ୍ଟିଗ ନାମର ପ୍ରକୃତ ଅର୍ଥ ବାଛିବା ବାସ୍ତବିକ ଏକ ଜଟିଳ ସମସ୍ୟା । ଉଭୟ ମତରେ ଅବଶ୍ୟ କିଛି ନା କିଛି ସତ୍ୟତା ରହିଛି । କିନ୍ତୁ ବିଷ୍ଣୁବର୍ଦ୍ଧନ ନାମ ଗ୍ରହଣ ସହିତ ପୂର୍ବ ନାମ ବିଟ୍ଟିଗର କିଛି ସମ୍ପର୍କ ଥିଲା ପରି ଜଣାଯାଏ ନାହିଁ । ହୟଶଳ ରାଜାଙ୍କର ବିଷ୍ଣୁବର୍ଦ୍ଧନ ନାମ ଚୋଳ ରାଜ୍ୟ ଅଭିଯାନ ବେଙ୍ଗୀ ରାଜ୍ୟ ଅଭିଯାନ ପରେ ଅର୍ଥାତ୍ ଖ୍ରୀ: ୧୧୧୮ରେ ତାଙ୍କର ରାଜନୈତିକ ମହତ୍ତ୍ୱର ସୂଚନା ଦେଇଥାଏ; କାରଣ ବିଷ୍ଣୁବର୍ଦ୍ଧନ ମୁଖ୍ୟ ଉପାଧି ହିସାବରେ ସେତେବେଳେ ପରିଚିତ ଥିଲା ।

କୁଳୋତୁଙ୍ଗଙ୍କର ପୁତ୍ରମାନେ ବେଙ୍ଗୀର ଶାସକ ହିସାବରେ, ଚୋଳଗଙ୍ଗ ଏବଂ ପଶ୍ଚିମ ଚାଲୁକ୍ୟ ସମ୍ରାଟ ଷଷ୍ଠ ବିକ୍ରମାଦିତ୍ୟ ବେଙ୍ଗୀ ବିଜେତା ହିସାବରେ ଏହି ଉପାଧିରେ ଭୂଷିତ ହୋଇଥିବା କଥା ସେମାନଙ୍କର ତାମ୍ରଫଳକମାନଙ୍କ ବିବରଣୀରୁ ଜଣାପଡ଼ିଛି । (୨୨) ଏଣୁ ହୟଶଳ ରାଜା ବିଟ୍ଟିଗଙ୍କର ବିଷ୍ଣୁବର୍ଦ୍ଧନ ନାମ ସହିତ ତାଙ୍କର ବୈଷ୍ଣବ ଧର୍ମରେ ଦୀକ୍ଷିତ ହେବା ବିଷୟ ଜଡ଼ିତ ହୋଇନପାରେ । ଏହା ବେଙ୍ଗୀ ରାଜ୍ୟଜୟ କରିବାର ଏକ ଅଭ୍ରାନ୍ତ ସଂକେତ । ବିଟ୍ଟିଦେବ (ଦ୍ୱାଦଶ ଶତାବ୍ଦୀରେ କର୍ଣ୍ଣାଟକରେ ପରିଚିତ ଥିବା ବିଷ୍ଟି ବା ବାଧ୍ୟତାମୂଳକ ଶ୍ରମ/ସେବା ଓ ବିଟ୍‌ଟି ଯଦି ଏକାର୍ଥ ହୋଇଥାଏ) ବିଷ୍ଣୁବର୍ଦ୍ଧନ ହେବାପରେ ତାଙ୍କ ଧର୍ମ ନୀତିରେ ଅତ୍ୟନ୍ତ ଉଦାର ହୋଇଥିଲେ । (୨୩) ପାରମ୍ପରିକ ବିବରଣୀକୁ ବାଦ୍‌ଦେଲେ, ଅନ୍ୟ କୌଣସି ନିର୍ଭରଯୋଗ୍ୟ ବିବରଣୀରେ ସେ କେବଳ ପ୍ରଥମରୁ ଜୈନ ଥିବାର ସୂଚନା ମିଳେ ନାହିଁ । ଜୈନ ମନ୍ଦିରଗୁଡ଼ିକର ପୃଷ୍ଠପୋଷକତା ସହିତ ରାଜତ୍ୱର ଆଦ୍ୟକାଳରେ ସେ ଶୈବ ଓ ବୈଷ୍ଣବ ମନ୍ଦିରଗୁଡ଼ିକୁ

ଦାନ ଦେଇଥିଲେ । (୨୪) ସମ୍ଭବତଃ ରାମାନୁଜ ତ୍ରୋଣାନୁର (କର୍ଣ୍ଣାଟକ)ରେ ଅବସ୍ଥାନ କାଳରେ ସେ ତାଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ଏବଂ ରାମାନୁଜଙ୍କର ତତ୍ତ୍ୱ ଦର୍ଶନ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । ଏହାକୁ କେନ୍ଦ୍ର କରି ସେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିବାର ପରମ୍ପରା ପରେ ସୃଷ୍ଟି ହୋଇଗଲା । (୨୫)

(୬) ସମସାମୟିକ ଅଭିଲେଖ ଏବଂ ସାହିତ୍ୟିକ ଉପାଦାନ ଅନୁଶୀଳନରୁ ଜଣାଯାଏ ଯେ ଦ୍ୱିତୀୟ ତୁଳୋତୁଙ୍ଗ ଚୋଡ଼ (ଖ୍ରୀ. ୧୧୩୫-୫୦) ଚିଦାମ୍ବରମ୍ ମନ୍ଦିର ସଂସ୍କାର କରିବା ସମୟରେ ବୈଷ୍ଣବବିରୋଧୀ କାର୍ଯ୍ୟାବଳିକୁ ଉତ୍ସାହିତ କରିଥିଲେ । (୨୬) ସମ୍ଭବତଃ ଏହି ଦ୍ୱିତୀୟ କୁଳୋତୁଙ୍ଗ ଚୋଡ଼ କାଳର ବୈଷ୍ଣବ ବିରୋଧୀ କାର୍ଯ୍ୟାବଳି ଜନରବରେ ଯୁଗ ଯୁଗ ପାଇଁ ରହିଗଲା ଏବଂ ବୈଷ୍ଣବପନ୍ଥୀ ରାମାନୁଜ ମଧ୍ୟ ସେହି ଜନଶ୍ରୁତିରେ ରହିଗଲେ । ଟି.ଏନ୍. ସୁବ୍ରମନ୍ୟମ୍‌ଙ୍କ ମତାନୁସାରେ ଦ୍ୱିତୀୟ କୁଳୋତୁଙ୍ଗ ଜଣେ ପରମ ଶୈବ ଥିଲେ ଏବଂ ସେ ବୈଷ୍ଣବ ସଂହାର ନୀତିକୁ ଗ୍ରହଣ କରିଥିଲେ । (୨୭) ପିଲ୍ଲାଇ ଲୋକନ୍‌ଜୀୟରଙ୍କ ରଚିତ ରାମାନୁଜ ଦିବ୍ୟ ଚରିତମ୍‌ରେ ବର୍ଣ୍ଣିତ ଅଛି ଯେ ରାମାନୁଜ ତାଙ୍କର ଶ୍ରୀ ଭାଷ୍ୟର ଦୁଇ ତୃତୀୟାଂଶ ଶ୍ରୀରଙ୍ଗମ୍‌ରୁ ଜବରଦସ୍ତ ବିତାଡ଼ିତ ହେବା ପୂର୍ବରୁ ସମାପ୍ତ କରିଥିଲେ ଏବଂ ପରେ ଶ୍ରୀ ରଙ୍ଗମ୍‌କୁ ପ୍ରତ୍ୟାବର୍ତ୍ତନ ପରେ ଏହି ଗ୍ରନ୍ଥ ରଚନା ସମାପ୍ତ କରିଥିଲେ । (୨୮) ଏହି ଗ୍ରନ୍ଥରେ ପ୍ରକାଶିତ ଏକ ଉଦ୍ଧୃତାଂଶ ଶ୍ରୀଭାଷ୍ୟର ରଚନା ଶକାବ୍ଦ ୧୦୭୭ (ଖ୍ରୀ ୧୧୫୫-୫୬)ରେ ସମାପ୍ତ ହୋଇଥିଲା ବୋଲି ପ୍ରକାଶ କରେ । (୨୯) ଅନ୍ୟ ଏକ ଉଦ୍ଧୃତାଂଶ (ଶ୍ଳୋକ) ରାମାନୁଜ ଶ୍ରୀରଙ୍ଗମ୍ ଶକାବ୍ଦ ୧୦୫୯ (ଖ୍ରୀ. ୧୧୩୭)ରେ ଛାଡ଼ି ଚାଲିଯାଇଥିଲେ ଏବଂ ସେହି ସ୍ଥାନକୁ ୧୧ ବର୍ଷ ପ୍ରବାସ ଅବସ୍ଥାନ ପରେ ଫେରିଆସିଥିଲେ ବୋଲି ଦାବି କରେ । (୩୦) ଏ ସମସ୍ତ ଶ୍ଳୋକମାନ ଅନୁଶୀଳନ କରି ଟି.ଏନ୍. ସୁବ୍ରମନ୍ୟମ୍ କେତୋଟି ସିଦ୍ଧାନ୍ତ ନେଇଥିଲେ; (୩)

(୧) ଚୋଳ ରାଜା ଦ୍ୱିତୀୟ କୁଳୋତୁଙ୍ଗ ରାମାନୁଜଙ୍କର ସମସାମୟିକ ଥିଲେ ।

(୨) ଆଚାର୍ଯ୍ୟ ଶ୍ରୀ ରାମାନୁଜ ହୟଶଳ ରାଜ୍ୟକୁ ୧୧୩୮ ଖ୍ରୀଷ୍ଟାବ୍ଦରେ ପଳାୟନ କରିଥିଲେ ।

(୩) ଖ୍ରୀଷ୍ଟାବ୍ଦ ୧୧୫୦ ସୁଦ୍ଧା ଶ୍ରୀ ରଙ୍ଗମ୍‌କୁ ପୁନର୍ବାର ଫେରି ଆସିଥିଲେ ।

(୪) ଏହାପରେ ଅର୍ଥାତ୍ ୧୧୫୫-୫୬ ଖ୍ରୀଷ୍ଟାବ୍ଦ ସୁଦ୍ଧା ସେ ଶ୍ରୀ ଭାଷ୍ୟ ରଚନା ଶେଷ କରିଥିଲେ ।

ଏହି ସିଦ୍ଧାନ୍ତକୁ ଗ୍ରହଣ କରିନେଲେ ପାରମ୍ପରିକ ରୀତିରେ ଗୃହୀତ ରାମାନୁଜଙ୍କର ଜନ୍ମକାଳ ଖ୍ରୀ. ୧୦୧୮ର ପରିବର୍ତ୍ତନକୁ ଗ୍ରହଣ କରିବାକୁ ପଡ଼ିବ । ଗୁରୁପରମ୍ପରା ଅନୁସାରେ ରାମାନୁଜ ୧୨୦ ବର୍ଷ ବଞ୍ଚିଥିବା କଥାକୁ ଅସ୍ୱୀକାର କରାଯାଇ ନପାରେ । କିନ୍ତୁ ଖ୍ରୀଷ୍ଟାବ୍ଦ ୧୧୫୬କୁ ତାଙ୍କ ମୃତ୍ୟୁର ସମୟ ବୋଲି ଗ୍ରହଣ କରି ତାଙ୍କର ଜନ୍ମ ସମୟ ଖ୍ରୀଷ୍ଟାବ୍ଦ ୧୦୩୬ (ଆନୁମାନିକ) ବୋଲି କୁହାଯାଇପାରିବ ।

ଏହି ବିସ୍ତାରିତ ଆଲୋଚନାରୁ ଜଣାଯାଏ ଯେ ରାମାନୁଜ ଖ୍ରୀଷ୍ଟାବ୍ଦ ୧୦୯୬ ଠାରୁ କର୍ଣ୍ଣାଟକ ରାଜ୍ୟରେ ଆତ୍ମ-ନିର୍ବାସନ ଗ୍ରହଣ କରିନଥିଲେ ଏବଂ ଏହି କାଳରେ ସେ ଶ୍ରୀ ରଙ୍ଗମ୍‌ରେ ଉପସ୍ଥିତ ଥାଇ ବୈଷ୍ଣବ ଧର୍ମ ପ୍ରସାର ପାଇଁ ଉଦ୍ୟମ କରିଥିଲେ । ଏ ଦୃଷ୍ଟିରୁ ସେତେବେଳେ ଶୈବ ସମ୍ରାଟ ଚୋଡ଼ଗଙ୍ଗ ଶାସିତ କଳିଙ୍ଗରେ ବୈଷ୍ଣବ ଧର୍ମ ପ୍ରଚାର ପାଇଁ ସେ ଉଦ୍ୟମ ଚଳାଇଥିବେ । ଡକ୍ଟର ଗଗନେନ୍ଦ୍ର ନାଥ ଦାଶ ରାମାନୁଜଙ୍କର ଆତ୍ମ- ନିର୍ବାସନ କାଳ ଖ୍ରୀ. ୧୦୯୬ ଠାରୁ ଗ୍ରହଣ କରି ପରମ୍ପରାର ଅନ୍ୟତମ ଅଂଶ ଅର୍ଥାତ୍ ଶ୍ରୀ କୂର୍ମମ୍‌ର ବୈଷ୍ଣବୀ କରଣ (ଶୈବ କ୍ଷେତ୍ରରୁ ବୈଷ୍ଣବ ପୀଠରେ ପରିଣତ ହେବା ବିଷୟ)କୁ ଗ୍ରହଣ କରିନାହାନ୍ତି । (୩୨) କିନ୍ତୁ ଏହି ମତର ପରିବର୍ତ୍ତନ ଆବଶ୍ୟକ ।

ଏପର୍ଯ୍ୟନ୍ତ ଗବେଷକମାନଙ୍କୁ ଜଣାଥିବା ଶ୍ରୀକୂର୍ମମ୍‌ର ଶିଳାଲେଖାମାଳା ମଧ୍ୟରୁ ସର୍ବ ପ୍ରାଚୀନ ଶିଳାଲେଖ ଚୋଡଗଙ୍ଗଙ୍କ ରାଜତ୍ୱର ୨୮ ସ୍ରାହି (ରାଜକୀୟ ବର୍ଷ)ରେ ଉତ୍କୀର୍ଣ୍ଣ ହୋଇଥିଲା । (୩୩) ଏହି ଶିଳାଲେଖରେ ଶକାବ୍ଦ ୧୦୩୫ ଲେଖାଯାଇଛି । ସତ୍ୟନାରାୟଣ ରାଜଗୁରୁ ଏହି ଶକାବ୍ଦ ୧୦୩୫କୁ ଗ୍ରହଣକରି ସ୍ରାହିକୁ ୩୮ ବୋଲି ସ୍ଥିର କଲେ । (୩୪) କିନ୍ତୁ ଶକାବ୍ଦ ୧୦୩୬ରେ ଚୋଡ଼ଗଙ୍ଗଙ୍କର ୩୭ ଅଙ୍କ ପଡ଼ିଥିଲା ବୋଲି ଲିଙ୍ଗରାଜ ମନ୍ଦିର ଶିଳାଲେଖରୁ ଜଣାପଡ଼େ । (୩୫) ଏପରିକି ମୁଖଲିଙ୍ଗମ୍‌ର ଏକ ଶିଳାଲିପିରେ ଚୋଡ଼ଗଙ୍ଗଙ୍କର ସ୍ରାହି ୩୦ ଶକାବ୍ଦ ୧୦୩୫ରେ ପଡ଼ିଥିବାର ପ୍ରକାଶ କରାଯାଇଛି । (୩୬) ଏଣୁ ରାଜଗୁରୁ ମହାଶୟଙ୍କର ଏହି ଅନୁମାନ ଗ୍ରହଣୀୟ ନୁହେଁ । ମନ୍ଦର ଶିଳାରେ ଲିପିର ଲେଖକ ଅନେକ ସମୟରେ ରାଜକୀୟ ବର୍ଷ/ ଶକାବ୍ଦକୁ ଭୁଲରେ ଗଣିଥାଆନ୍ତି । ଏହି ଶ୍ରୀକୁର୍ମମର ଶିଳାଲିପିଟି ରାଜାଙ୍କ ତରଫରୁ ଲେଖାଯାଇ ନଥିଲା । ଏହା ଚୋଡଗଙ୍ଗଙ୍କ ରାଜତ୍ୱକାଳର । କିନ୍ତୁ ତୈଳକାର ସମ୍ପ୍ରଦାୟ ତରଫରୁ ଶ୍ରୀ କୁର୍ମମ୍‌ର ଦାନ ବ୍ୟବସ୍ଥା ବିଷୟ ଏଥିରେ ବର୍ଣ୍ଣିତ ହୋଇଛି । ଏଣୁ ସେହି ସମ୍ପ୍ରଦାୟ ସ୍ରାହି ୨୮ ହିସାବଟି ଠିକ୍ ଚିନ୍ତା କରିନଥିବେ କାହିଁକି ? ଶକାବ୍ଦ ୧୦୨୫କୁ ୧୦୩୫

ବୋଲି ଲେଖି ନଥିବେ କାହିଁକି ? ଏପରି ଭ୍ରମ କଣ ଅସମ୍ଭବ ଲିପିକ୍ଷେତ୍ରରେ ? ଏହା ହେଲେ ଶିଳାଲେଖର ସମୟ ଖ୍ରୀଷ୍ଟାବ୍ଦ ୧୧୦୩ ହେବ । ମୁଖଲିଙ୍ଗମ୍‌ର ଏକ ଶିଳାଲିପିରେ ୧୦୨୪ ଶକାବ୍ଦରେ ଚୋଡ଼ଗଙ୍ଗଙ୍କର ୨୮ ସ୍ତାହି ଚାଲିଥିବାର ସୂଚନା ରହିଛି । (୩୭) ଯୁକ୍ତିଛଳରେ ଯଦି ମଧ୍ୟ ଏହି ଶକାବ୍ଦ ୧୦୩୫କୁ ଠିକ୍ ବୋଲି ଗ୍ରହଣ କରାଯାଏ, ଏହି ଶିଳାଲେଖ ସେହି ବର୍ଷରୁ ଶ୍ରୀକୂର୍ମମ୍ ବୈଷ୍ଣବପୀଠରେ ପରିଚିତ ହେବା କଥା ପ୍ରକାଶ କରେ ନାହିଁ, ଯାହା ଜର୍ମାନୀ ଐତିହାସିକ ଷ୍ଟିଟେନ୍‌କ୍ରୋନ୍ (Stietencron) ପ୍ରକାଶ କରିଛନ୍ତି । (୩୮) ଶ୍ରୀକୂର୍ମମ୍ ବୈଷ୍ଣବପୀଠରେ ପରିଣତ ହେବା ବିଷୟ ଶକାବ୍ଦ ୧୦୩୫ (ଖ୍ରୀଷ୍ଟାବ୍ଦ ୧୧୧୩) ପୂର୍ବର ଘଟଣା । ଶିଳାଲେଖଟିର ବିଷୟକୁ ବିଚାରକୁ ନେଲେ ସ୍ପଷ୍ଟ ଜଣାଯାଏ ଯେ ତେଲିକିବେବ୍ବୁରୁ (ତୈଳକାର ସମ୍ପ୍ରଦାୟ) ବିଷ୍ଣୁ ଶ୍ରୀକୂର୍ମନାଥ (ଶ୍ରୀ କୂର୍ମମ୍‌ର ମୁଖ୍ୟ ଦେବତା)ଙ୍କର ସେବା ପୂଜା ପାଇଁ କିଛି ବ୍ୟବସ୍ଥା କରିବା ସମୟର ପୂର୍ବରୁ ଏହି ପୀଠ ବୈଷ୍ଣବପୀଠ ହିସାବରେ ଖ୍ୟାତି ଅର୍ଜନ କରିଥିଲା । ଦୁଃଖର ବିଷୟ ଏହା ଯେ ଏହି ଶିଳାଲେଖ ରଚନା ପୂର୍ବର ଅନ୍ୟ କିଛି ଶିଳାଲେଖ ଏ ପର୍ଯ୍ୟନ୍ତ ଶ୍ରୀକୂର୍ମମ୍‌ରୁ ମିଳିନାହିଁ । ଏଣୁ ଶ୍ରୀକୂର୍ମମ୍ ଦ୍ୱାଦଶ ଶତକର ପ୍ରଥମ ଦଶନ୍ଧି ଆରମ୍ଭ କାଳରେ ଅନ୍ତତଃ ବୈଷ୍ଣବ ପୀଠରେ ପରିଚିତ ହୋଇଥିଲା ବୋଲି ଏ ଲେଖକ ଏକ ସମ୍ଭାବ୍ୟ ସିଦ୍ଧାନ୍ତ ନେବାକୁ ପ୍ରଲୁବ୍ଧ ହେଉଛି । ଶ୍ରୀକୂର୍ମମ୍ ବୈଷ୍ଣବ ପୀଠରେ ପରିଣତ ହେବା ଘଟଣାର ସମୟ ଖ୍ରୀ: ୧୦୯୬ ଠାରୁ ୧୧୦୮ ମଧ୍ୟରେ ସ୍ଥିର କରାଯାଇପାରେ ।

ସମ୍ଭବତଃ ରାମାନୁଜାଚାର୍ଯ୍ୟ ଖ୍ରୀଷ୍ଟାବ୍ଦ ୧୦୯୬ଠାରୁ ୧୧୦୦ ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ରରେ ସଂସ୍କାରମୂଳକ କାର୍ଯ୍ୟରେ ବିଫଳ ହେବା ପରେ ଶ୍ରୀକୂର୍ମମ୍ ଅଭିମୁଖେ ଯାତ୍ରା କରିଥିବେ ଏବଂ ସେଠାରେ ଶୈବକ୍ଷେତ୍ର ରୂପେ ପରିଚିତ ଥିବା ଶ୍ରୀ କୂର୍ମମ୍‌କୁ ବୈଷ୍ଣବପୀଠରେ ପରିଣତ କରିବାକୁ ଉଦ୍ୟମ କରିଥିବେ । ଏହି ସମୟରେ କଳିଙ୍ଗର ଶୈବ ରାଜା ଚୋଡ଼ଗଙ୍ଗ ଉତ୍କଳ ଅଭିଯାନ ପାଇଁ ପ୍ରସ୍ତୁତ ହେଉଥିବେ କିମ୍ବା ଉତ୍କଳ ଆଡ଼କୁ ଅଭିଯାନ ପାଇଁ ପ୍ରସ୍ତୁତ ହେଉଥିବେ କିମ୍ବା ଉତ୍କଳ ଆଡ଼କୁ ଅଭିଯାନ ଚଳାଇଥିବେ । ଖ୍ରୀ: ୧୧୦୪ ପୂର୍ବରୁ ସେ ପ୍ରଥମବାର ଉତ୍କଳ ବିଜୟ କାଳରେ କେବଳ ପରାଜିତ ଉତ୍କଳପତିଙ୍କୁ ସିଂହାସନରେ ବସାଇଥିଲେ । (୩୯) ସମ୍ଭବତଃ ଏହି କାଳରେ ସେ ପୁରୁଷୋତ୍ତମକ୍ଷେତ୍ର ସମ୍ପର୍କରେ ସଚେତନ ଥିଲେ ଏବଂ ଜାଣିଥିଲେ ଯେ ରାମାନୁଜ ସେଠାରେ କିଛି ପରିବର୍ତ୍ତନ ପାଇଁ ଉଦ୍ୟମ କରି ବିଫଳ ହୋଇଥିଲେ । ସେ ମଧ୍ୟ ଉତ୍କଳ

ସୋମବଂଶୀ ନରପତିଙ୍କର ଏହି ବୈଷ୍ଣବପୀଠ ପୁରୁଷୋତ୍ତମକ୍ଷେତ୍ର ପ୍ରତି ଉଦାସ ମନୋଭାବ ସମ୍ପର୍କରେ ସଚେତନ ହୋଇଥିଲେ । ଉତ୍କଳରେ ପୁରୁଷୋତ୍ତମ କ୍ଷେତ୍ରର ବିପୁଳ ପରିବର୍ତ୍ତନ ଏପରିକି ଏହାକୁ ସର୍ବଭାରତୀୟ ଖ୍ୟାତିସମ୍ପନ୍ନ ଏକ ବୈଷ୍ଣବପୀଠରେ ପରିଣତ କରିବା ପାଇଁ ଆବଶ୍ୟକ ପରାମର୍ଶ ଓ ପ୍ରେରଣା ଉତ୍କଳ ବିଜୟର ଏହି ପ୍ରଥମ ପର୍ଯ୍ୟାୟରେ ସେ ରାମାନୁଜଙ୍କ ଠାରୁ ପାଇଥିବାର ଅନୁମାନ କରାଯାଇପାରେ । ଏପରିକି ଉତ୍କଳ ବିଜୟ ପୂର୍ବରୁ ସେ ରାମାନୁଜଙ୍କ ସମ୍ପର୍କରେ ଆସି ପୁରୁଷୋତ୍ତମ କ୍ଷେତ୍ରର ଅଗ୍ରଗତି ପାଇଁ ଆବଶ୍ୟକ ପଦକ୍ଷେପ ନେବା ପାଇଁ ଆଗ୍ରହ ପ୍ରକାଶ କରିଥିବା ଅନୁମାନକୁ ସତ୍ୟଠାରୁ ଏଡ଼ାଇ ଦିଆଯାଇପାରିବ ନାହିଁ । ଖ୍ରୀଷ୍ଟାବ୍ଦ ୧୧୦୮ରୁ ମୁଖଲିଙ୍ଗମ୍‌ର ତାମ୍ର ଫଳକରେ ଚୋଡ଼ଗଙ୍ଗଙ୍କର ପରମ ବୈଷ୍ଣବ ଉପାଧି ଥିବାର ଉଲ୍ଲେଖ ରହିଛି । (୪୦) କିନ୍ତୁ ଖ୍ରୀଷ୍ଟାବ୍ଦ ୧୦୯୬ର ଅଦପାକ ଗ୍ରାମରୁ ଆବିଷ୍କୃତ ତାମ୍ରଫଳକରେ ଚୋଡ଼ଗଙ୍ଗଙ୍କର ଏହି ଉପାଧି ସ୍ଥାନ ପାଇ ନଥିବାର ଜଣାଯାଇଛି । (୪୧) ଏପର୍ଯ୍ୟନ୍ତ ଅବଶ୍ୟ ରାମାନୁଜ- ଚୋଡ଼ଗଙ୍ଗ ସାକ୍ଷାତ ସମ୍ପର୍କରେ ସଂଖ୍ୟାଧିକ ଗଙ୍ଗ ଅଭିଲେଖରେ ସୂଚନା ନାହିଁ । ଏହା ସତ୍ୟ ଯେ କଳିଙ୍ଗର ଗଙ୍ଗରାଜା ତାଙ୍କ ଧର୍ମ ନୀତିରେ ଉଦାର ଥିଲେ । କିନ୍ତୁ ଉତ୍କଳ ଅଭିଯାନ, ପୂର୍ବ ଉତ୍କଳପତିଙ୍କ ପ୍ରସିଦ୍ଧ ବୈଷ୍ଣବପୀଠ ପୁରୁଷୋତ୍ତମ କ୍ଷେତ୍ର ପ୍ରତି ଉଦାସ ମନୋଭାବ, ଖ୍ରୀଷ୍ଟୀୟ ଏକାଦଶ ଶତକର ଶେଷକାଳରେ ବା ଦ୍ୱାଦଶ ଶତକର ଆଦ୍ୟ ଦଶନ୍ଧିରେ ଚୋଡ଼ଗଙ୍ଗଙ୍କର ରାମାନୁଜଙ୍କ ସହିତ ସାକ୍ଷାତ ତାଙ୍କ ଧର୍ମନୀତିରେ ବୈଷ୍ଣବଧର୍ମକୁ ପ୍ରାଧାନ୍ୟ ଦେବା ପାଇଁ ଏକ ଏକ ଆବଶ୍ୟକ ଅନୁପ୍ରେରକ ଶକ୍ତିରୂପେ ଏ ଲେଖକ ଗ୍ରହଣ କରିଛି । ଏସବୁ ସତ୍ତ୍ୱେ ଚୋଡ଼ଗଙ୍ଗଙ୍କ ବୈଷ୍ଣବଧର୍ମ ପ୍ରତି ଉଦାର ମନୋଭାବ ପ୍ରଚ୍ଛନ୍ନରେ ଗଭୀର ରାଜନୈତିକ ଅଭିସନ୍ଧିକୁ ବାଦ୍‌ଦେଇ ହେବ ନାହିଁ । ବୈଷ୍ଣବଧର୍ମ ପ୍ରତି ଉଦାର ମନୋଭାବ ଦ୍ୱାରା ସେ ପଶ୍ଚିମ ପୂର୍ବ ଭାରତରେ ଅଧିକ ଶକ୍ତିଶାଳୀ ହୋଇଥିଲେ ଏବଂ କଳିଙ୍ଗ ଉତ୍କଳ ସାମ୍ରାଜ୍ୟରେ ତାଙ୍କର କ୍ଷମତା ସମ୍ପ୍ରସାରିତ ହୋଇପାରିଥିଲା । ରାମାନୁଜଙ୍କର ବୈଷ୍ଣବ ଧର୍ମ ପ୍ରଚାର ଏବଂ ପ୍ରସାର ପ୍ରତ୍ୟକ୍ଷରେ ଏବଂ ପରୋକ୍ଷରେ ଚୋଡ଼ଗଙ୍ଗଙ୍କର ରାଜଧର୍ମନୀତିର ବ୍ୟାପକ ପରିବର୍ତ୍ତନ ଆଣିବାରେ କିଛି ଭୂମିକା ନେଇଛି ଏ ଲେଖକ ବିଶ୍ୱାସ କରିଛି । ଐତିହାସିକ ଦୃଷ୍ଟିକୋଣରୁ ରାମାନୁଜ ସମ୍ପର୍କିତ ଜନଶ୍ରୁତିକୁ ଏହିପରି ପ୍ରାଧାନ୍ୟ ଦିଆଯିବା ଉଚିତ ।

ଚୋଡ଼ଗଙ୍ଗ ପରମ ବୈଷ୍ଣବ ହେବାର ସିଦ୍ଧାନ୍ତ ଖ୍ରୀଷ୍ଟାବ୍ଦ ୧୦୯୬ ଠାରୁ ୧୧୦୮

ମଧ୍ୟରେ ଗ୍ରହଣ କରିଥିଲେ । ପୁଣି ଉତ୍କଳ ବିଜୟ କାର୍ଯ୍ୟ ୧୧୦୮ ଖ୍ରୀଷ୍ଟାବ୍ଦର ତାମ୍ରଫଳକରେ ବର୍ଣ୍ଣିତ ହୋଇଥିଲେ ମଧ୍ୟ ୧୦୯୬ ଖ୍ରୀଷ୍ଟାବ୍ଦର ତାମ୍ରଲେଖରେ ସୂଚିତ ହୋଇନାହିଁ ।

ଏଣୁ ଆମର ଅନୁମାନକୁ ଏଡ଼ାଇ ଦିଆଯାଇନପାରେ । ଉତ୍କଳକୁ ପ୍ରଥମବାର ଅଭିଯାନ ଏବଂ ଏହି କାଳରେ ପୁରୁଷୋତ୍ତମକ୍ଷେତ୍ର ପର୍ଯ୍ୟଟନ ଦ୍ୱାରା ରାଜନୈତିକ ଅଭିସନ୍ଧି ନେଇ ଚୋଡ଼ଗଙ୍ଗ ପୁରୁଷୋତ୍ତମ ତତ୍ତ୍ୱର ପ୍ରସାର ପାଇଁ ପ୍ରଲୁବ୍ଧ ହୋଇଥିବେ । ସେ ସମ୍ଭବତଃ ରାମାନୁଜଚାର୍ଯ୍ୟଙ୍କର ତତ୍ତ୍ୱ ଦର୍ଶନ ଦ୍ୱାରା ପ୍ରଭାବିତ ହୋଇଥିଲେ; କିନ୍ତୁ ଦୀକ୍ଷିତ ହୋଇନଥିଲେ । ରାଜତ୍ୱର ଶେଷ ପର୍ଯ୍ୟନ୍ତ ତାଙ୍କର ପାରମ୍ପରିକ ଶୈବ ଭକ୍ତି ବନ୍ଦ ହୋଇଯାଇନଥିଲା । ଏହାର ଅନେକ ପ୍ରମାଣ ରହିଛି । ଅନନ୍ତାଚାର୍ଯ୍ୟଙ୍କ ରଚିତ ପ୍ରପନ୍ନାମୃତ ଏହି ଦୀକ୍ଷା ନେବା ଉପରେ ଯେଉଁ ଗୁରୁତ୍ୱ ଦେଇଛି ତାହାକୁ ବାସ୍ତବ ଦୃଷ୍ଟିରୁ ବିବେଚନା କରାଯିବା ଉଚିତ (୪୨) ପ୍ରପନ୍ନାମୃତରେ ଲିଖିତ ନୃପଂ ବଶୀକୃତ୍ୟକୁ ଦୀକ୍ଷା ଦେବା ଅର୍ଥରେ ଗ୍ରହଣକରିବା ଅପେକ୍ଷା ଗଭୀର ପ୍ରଭାବ ଅର୍ଥରେ ଗ୍ରହଣ କରାଯାଇପାରେ । କାରଣ ଅନନ୍ତାଚାର୍ଯ୍ୟଙ୍କର ଏହି ଗ୍ରନ୍ଥ ପ୍ରପନ୍ନାମୃତ ଏକ ଭକ୍ତି ଗ୍ରନ୍ଥ ଏବଂ ସେଥିରେ ଇତିହାସକୁ ଜଣେ ଅନ୍ତରଙ୍ଗ ଭକ୍ତ ହିଁ ଏହିପରି ବୁଝିଥିବେ ବୋଲି ମୋର ଅନୁମାନ । ଯଦିବା ଭାଷାଟି ଇତିହାସ ଚେତନା ବହନ କରୁନଥିବା ପରି ପ୍ରତ୍ୟୟ ହୁଏ ।

---

## ପ୍ରସଙ୍ଗ ନିର୍ଦ୍ଦେଶ


୧. ଶ୍ରୀମନ୍ଦିର ସମାଚାର, ୨୯.୨.୧୯୬୯ । ମିଶ୍ର, ସଚ୍ଚିଦାନନ୍ଦ- ''ଆଚାର୍ଯ୍ୟ ଶଙ୍କର ଓ ଶ୍ରୀ ଜଗନ୍ନାଥଙ୍କର ପ୍ରତିଷ୍ଠା'' ଝଙ୍କାର, ଏପ୍ରିଲ ୧୯୮୫, ପୃ-୨୬ ।

୨. ମାଦଳାପାଞ୍ଜି, ଉତ୍କଳ ବିଶ୍ୱବିଦ୍ୟାଳୟ, ୧୯୬୯, ପୃ-୪୯ ।

୩. ଦାଶ, ଗଗନେନ୍ଦ୍ର ନାଥ- "The Evolution of the Priestly Power: The Gangavamsa period," The cult of Jagannath and the Regional Tradition of Orissa" (ଏହାପରେ ସର୍ବତ୍ର ସୂଚିତ CJRTO), edited by Eschmann, Kulke and Tripathy, 1978, Chapter-IX, P. 157-158.

୪. ଦାଶ, ଗଗନେନ୍ଦ୍ର ନାଥ- ପୂର୍ବୋକ୍ତ ପ୍ରବନ୍ଧ, CJRTO, P.158.

୫. ତତ୍ରୈବ, ପୃ-୧୫୮ ।

୬. ମୁଖାର୍ଜୀ ପ୍ରଭାତ, The History of mediaeval Vaishnavism in Orissa, 1981 (Asian Publishing Services, New Delhi), P.29
ଦାଶ, ଗଗନେନ୍ଦ୍ର ନାଥ- ପୂର୍ବୋକ୍ତ ପ୍ରବନ୍ଧ, CJRTO, ପୃ-୧୫୮ । ମାଦଳାପାଞ୍ଜି, ପୃ-୨୬ ।

୭. ମୁଖାର୍ଜୀ ପ୍ରଭାତ- ପୂର୍ବୋକ୍ତ ପୁସ୍ତକ, ପୃ-୨୭ ।

୮. ଗୋବିନ୍ଦାଚାର୍ଯ୍ୟ, ଆଳକୋଣ୍ଡଭିଲ୍ଲି- The life of Ramanujacharya, 1906, Madras, P.142.
ଡେ଼ରେଟ୍, ଜେ.ଡି.ଏମ୍.- (Derret, J.D.M.)- The Hoysalas: A Mediaeval Indian Royal Family, Madras, 1957, P. 222.
କୁଲ୍‌କେ, ହର୍‌ମାନ (Kulke, H.)- "Early Royal Patronage of the Jagannath Cult" CJRTO, chapter-VIII, 1978, P. 145.
ଦାଶ, ଗଗନେନ୍ଦ୍ର ନାଥ- ପୂର୍ବୋକ୍ତ ପ୍ରବନ୍ଧ -CJRTO, ପୃ-୧୫୯ ।

୯. ଦାଶ, ଗଗନେନ୍ଦ୍ର ନାଥ- ପୂର୍ବୋକ୍ତ ପ୍ରବନ୍ଧ, CJRTO,ପୃ-୧୫୯ ।

୧୦. ଦ୍ରଷ୍ଟବ୍ୟ ୮ ନମ୍ବର ।

୧୧. ରାଜଗୋପାଳ, ବାଳକୃଷ୍ଣ (Gopal, B.R.)- Sri Ramanuja in Karnataka, An epigraphical study, Sundeep Prakashan, Delhi, 1983, P. 6-7.

୧୨. ତତ୍ରୈବ, ପୃ- ୬-୭ ।

୧୩. କୃଷ୍ଣାକୁମାରୀ, ଏମ୍. (Krishnakumari, M.)- "The rule of Chalukya-Cholas in Andhardesh," B.R. Publishing Corporation,Delhi, 1985, P. 46.

୧୪. ରମେଶନ୍, ଏନ୍. (Rameshan, N.) - "Two Copper plate inscriptions of Andhra Pradesh Government Museum," Hyderabad, 1972, P. 109.

୧୫. କୃଷ୍ଣାକୁମାରୀ, ଏମ୍. - ପୂର୍ବୋକ୍ତ ପୁସ୍ତକ, ପୃ- ୨୧୩-୧୪ ।

୧୬. Saletore, R.N. - Encyclopaedia of Indian Culture, Vol.IV, Sterling publishers, Delhi, 1984, P. 1227-28.
Rice, L.- Mysore and Coorg, Bangalore, 1878, P. 99.

୧୭. କୃଷ୍ଣାକୁମାରୀ, ଏମ୍.- ପୂର୍ବୋକ୍ତ ପୁସ୍ତକ, ପୃ-୪୨ ।

୧୮. ତତ୍ରୈବ, ପୃ-୪୨ ।

୧୯. ରାଜଗୋପାଳ, ବାଳକୃଷ୍ଣ- ପୂର୍ବୋକ୍ତ ପୁସ୍ତକ ପୃ-୧୫ ।

୨୦. Saletore, 1, R.N..- ପୂର୍ବୋକ୍ତ ପୁସ୍ତକ, ପୃ-୧୨୨୮ ।

୨୧. ତତ୍ରୈବ ।

୨୨. ଚୋଡ଼ଗଙ୍ଗଙ୍କର ବିଷ୍ଣୁବର୍ଦ୍ଧନ ଉପାଧି ପାଇଁ - Inscriptions of Orissa, Vol.No.3, part-I, No. 99 to 105 (ଦ୍ରାକ୍ଷାରାମ ଶିଳାଲିପିମାଳା)
South India Inscriptions, Vol IV, No. 92, 95, 97, 98
South India Inscriptions, Vol V, No. 63
ଭୀମାବରମ୍ (କୋକନାଦ ତାଲୁକ)ର ନାରାୟଣୀ ସ୍ୱାମୀ ମନ୍ଦିରର ଲିପିରେ ବିଷ୍ଣୁବର୍ଦ୍ଧନ ଉପାଧି ଉଲ୍ଲେଖ ହୋଇଛି ।
କୃଷ୍ଣାକୁମାରୀ, ଏମ୍.- ପୂର୍ବୋକ୍ତ ପୁସ୍ତକ, ପୃ-୨୯

୨୩. Derret, J.D.M. ପୂର୍ବୋକ୍ତ ପୁସ୍ତକ, ପୃ-୨୦୦ ।

୨୪. ରାଜଗୋପାଳ, ବାଳକୃଷ୍ଣ- ପୂର୍ବୋକ୍ତ ପୁସ୍ତକ, ପୃ- ୧୪-୧୫ ।

୨୫. ତତ୍ରୈବ ।

୨୬. ତତ୍ରୈବ, ପୃ-୮ ।

୨୭. South India Inscriptions, Vol.III, part-II, pp.147 ff.

୨୮. ରାଜଗୋପାଳ, ବାଳକୃଷ୍ଣ- ପୂର୍ବୋକ୍ତ ପୁସ୍ତକ, ପୃ-୯ ।

୨୯. ତତ୍ରୈବ ।

୩୦. ତତ୍ରୈବ ।

୩୧. ତତ୍ରୈବ ।

୩୨. ଦାଶ, ଗଗନେନ୍ଦ୍ର ନାଥ- ପୂର୍ବୋକ୍ତ ପ୍ରବନ୍ଧ, CJRTO, P. 160

୩୩. South India Inscriptions, Vol. V, No. 1316.
Inscriptions of Orissa, Vol. III, Part-I, No. 59.

୩୪. Inscriptions of Orissa, Vol. III, Part-I, No. 59.

୩୫. Epigraphia Indica, Vol. XXX, p.29.

୩୬. Inscriptions of Orissa, Vol. III, Part-I, No. 63.

୩୭. Inscriptions of Orissa, Vol. III, Part-I, No. 44.

୩୮. Stietencron, H.v- "The advent of Visnuism in Orissa, An outline of its history according to archaeological sources from the Gupta period upto A.D. 1135," CJRTO, chapter-I, p. 25.

୩୯. ଦାଶ, କୈଳାସଚନ୍ଦ୍ର- "A study on the Conquest of Utkala by the Ganga King Chodaganga," Orissa Historical Research Journal, Vol, XXXI, Nos.II, III & IV, p. 132-34.

୪୦. Epigraphia Andhrica, Andhra Pradesh Government Museum, Hyderabad, Vol.IV, p.47.

୪୧. ଭାରତୀ (ତେଲୁଗୁ ପତ୍ରିକା), ଅକ୍ଟୋବର, ୧୯୫୪, ପୃ- ୪୩୧-୩୨ ।

୪୨. ପ୍ରପନ୍ନାମୃତ, ମାନ୍ଦ୍ରାସ୍, ୧୮୭୭, ପୃ-୧୦୦



# ଗୋମୁଖୀ କେଶବ

ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଶାର ଧର୍ମଧାରଣାର ଆଲୋଚନା କଲାବେଳେ ବିଭିନ୍ନ ଧର୍ମ ସମ୍ପ୍ରଦାୟର ପାରସ୍ପରିକ ସଂଘର୍ଷ/ ବିବାଦ ଏବଂ ପରବର୍ତ୍ତି ପର୍ଯ୍ୟାୟର ସମନ୍ୱୟ ପ୍ରତି ଗବେଷକ ଦୃଷ୍ଟିପାତ କରିବାକୁ ପ୍ରଲୁବ୍ଧ ହୁଏ । ବିଭିନ୍ନ ଧର୍ମଧାରଣାର ସଂଘର୍ଷ, ଗୋଟିଏ ଧର୍ମଧାରଣାର ଅନ୍ୟ ଧର୍ମଧାରଣା ଉପରେ ପ୍ରାଧାନ୍ୟ ମଧ୍ୟଯୁଗୀୟ ଓଡ଼ିଶାର ସାମାଜିକ- ସାଂସ୍କୃତିକ ଇତିହାସର ଏକ ଆକର୍ଷଣୀୟ ଅଧ୍ୟାୟ । ଆଦିମ ଧର୍ମଧାରଣା, ବୌଦ୍ଧ, ଜୈନ, ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମଧାରା ନାନା ପର୍ଯ୍ୟାୟରେ ଓଡ଼ିଶାରେ ଆପଣାର ପ୍ରାଧାନ୍ୟ ବିସ୍ତାର କରିବାକୁ ଉଦ୍ୟମ କରିଛନ୍ତି । ସେହି ସୁଯୋଗରେ ଦୁଇ ବା ତତୋଽଧିକ ଧର୍ମଧାରାର ସଂଘର୍ଷ ହୋଇଥିଲା । ଏହା ସର୍ବଭାରତୀୟ ଚିନ୍ତାଧାରା । ତେବେ ଓଡ଼ିଶାରେ ସାମାଜିକ- ସାଂସ୍କୃତିକ ଜୀବନ  ପ୍ରବାହରେ ଏହି ବିବାଦ ଏବଂ ସମନ୍ୱୟ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଛି । ପଞ୍ଚଦଶ ଶତକ (ଖ୍ରୀଷ୍ଟୀୟ)ରେ ରଚିତ ସାରଳା ମହାଭାରତରେ ଏକାଧିକ ସ୍ଥାନରେ ଏହି ବିବାଦ ଓ ସମନ୍ୱୟର ବିବରଣୀ ସ୍ଥାନ ପାଇଛି । (୧) ସାରଳା ଦାସ ଓଡ଼ିଶାର ଧର୍ମଧାରଣା ଉପରେ ଗଭୀର ଦୃଷ୍ଟିଦେଇ ଏହି ସାମ୍ପ୍ରଦାୟିକ ବିବାଦ ଓ ସମନ୍ୱୟ ଉପରେ ଆବଶ୍ୟକ ଗୁରୁତ୍ୱ ଦେଇଛନ୍ତି । ନୂଆ ନୂଆ ଦିଗ ମଧ ଉନ୍ମୋଚନ କରିଛନ୍ତି । ସାରଳା ମହାଭାରତ ମୂଷଳୀ ପର୍ବ ବର୍ଣ୍ଣିତ ଗୋମୁଖୀ କେଶବ ଏକ ନିର୍ଦ୍ଦିଷ୍ଟ ଧର୍ମଧାରା ଅନ୍ୟ ଧର୍ମଧାରା ଉପରେ ଏକଦା କିପରି ପ୍ରାଧାନ୍ୟ ବିସ୍ତାର କରିଥିଲା ତାହାର ବାସ୍ତବ ଚିତ୍ର ବହନ କରିଛି । ସେହି ପ୍ରସଙ୍ଗ ଏବଂ ଆମ ମଧ୍ୟଯୁଗୀୟ ସାମାଜିକ ସାଂସ୍କୃତିକ ଧାରା କିପରି ତାହା ସହିତ ଜଡ଼ିତ- ସେ ସବୁର ଆଲୋଚନା ଏ ପ୍ରବନ୍ଧର ପ୍ରକୃତ ଆଭିମୁଖ୍ୟ ।

|| ଦୁଇ ||

ସାରଳା ମହାଭାରତର ମୂଷଳୀ ପର୍ବରେ ଗୋମୁଖୀ କେଶବ ସମ୍ପର୍କରେ ବିସ୍ତାରିତ ବିବରଣୀ ସ୍ଥାନ ପାଇଛି । (୨) ମହାରାଜା ଇନ୍ଦ୍ରଦ୍ୟୁମ୍ନ ଜାରା ଶବର ସହିତ ମିତ୍ରତା କରିବା ପରେ ଜାରା ଗୋମୁଖୀ କେଶବଙ୍କ ପାଖରେ ରାମକୃଷ୍ଣଙ୍କୁ ଉପାସନା କଲେ କୃଷ୍ଣଙ୍କର ମୃତପିଣ୍ଡ ସମୁଦ୍ରରେ ଭାସିଆସି ତାଙ୍କ ନିକଟରେ ପହଞ୍ଚିବ ବୋଲି ଜଣାଇଲା । ଜାରା କହିବା ଅନୁସାରେ ଗୋମୁଖୀ କେଶବ ସତ୍ୟଯୁଗର ଦେବତା; ଅର୍ଥାତ୍ ସାରଳାଙ୍କ ପୂର୍ବର ଏବଂ ବହୁ ପ୍ରାଚୀନ କାଳର ଦେବତା । ସତ୍ୟଯୁଗରେ ଶିବ ସୁମେକ ଋଷି ରୂପରେ ଆକାଶ ଗଙ୍ଗା କୂଳରେ ତପସ୍ୟା କରୁଥିଲେ । ଏକଦିନ (ମିଥୁନ ଶୁକ୍ଳପକ୍ଷ ଏକାଦଶୀ, ସ୍ୱାତୀ ତୁଳ ନକ୍ଷତ୍ର ଏବଂ ଅର୍କବାର) ଶିବ କୁଶବଟି (ଷୋଡ଼ଶ ବିଡ଼ା କରି) ଗଙ୍ଗା କୂଳରେ ରଖିଲେ । ଆଦିମାତା କପିଳା ସୁରଭି ଏବଂ ତାହାର ଦୁହିତା ନନ୍ଦିନୀ ଗଙ୍ଗା କୂଳରେ ପହଞ୍ଚି ଦୁବ ଚରୁ ଚରୁ କୁଶବିଡ଼ା ଖାଇଗଲେ । କ୍ରୋଧାନ୍ୱିତ ଶଙ୍କର କୁଶ ନଦେଖି ନନ୍ଦିନୀର କନ୍ଧକୁ ତ୍ରିଶୂଳ ନିକ୍ଷେପ କଲେ । କ୍ଷୁଧାରେ ଚରୁଥିବା ଅବସ୍ଥାର ଶୂଳ ପଡ଼ିବା ହେତୁ ତାହାର ଶିର ଛିଡ଼ିଗଲା । ଏହା ଦେଖି ଶିବ ମହାଭୟ ପାଇଲେ । ଋଷି ରୂପ ଛାଡ଼ି ଶିବ ଭୈରବ ରୂପ ଧାରଣ କଲେ । ଏହି ଭୈରବ ରୂପ ବର୍ଣ୍ଣନା କରି ସାରଳା ଦାସ ଲେଖିଥିଲେ;

ଖପର କୋଠାର ଯେ ତ୍ରିଶୂଳ ଡମ୍ବରୁ
ମହାଖଳା ରୂପ ଖେଚର ଭୂଚର ରୂପ ଧରୁ ।
କିଂଶୁକ ମନ୍ଦାର ଯେ ରକତ ବସ୍ତ୍ରେ ଲାଗି
ମହାଖଳା ବୀରନ୍ତ ଭୋ ମଦିରା ରସେ ଭୋଗୀ । (୩)

ଭୈରବ ରୂପ ଧାରଣ କରି ଶିବ ଗୁରୁ, ବ୍ରାହ୍ମଣ, ଦେବତା, ଚନ୍ଦ୍ର, ସୂର୍ଯ୍ୟ, ପିତାମାତା ଅବମାନନା କଲେ । ସହସ୍ର ଦେବାନୁଷ୍ଠାନ ଭାଙ୍ଗିଦେଲେ । ସେ ମହାଯୋଗୀ ପରି ଦିଶିଲେ । ଅମାର୍ଗରେ ପ୍ରବେଶ କଲେ । ଅଖାଦ୍ୟ ଖାଇଲେ । ମହାଖଳା ବୀରମାନଙ୍କୁ ନେଇ ମତୁଆଳ ନାଟରେ ମେରୁ ସଭା ନିକଟରେ ଭୈରବ ପହଞ୍ଚିଲେ । ସମସ୍ତ ଦେବତାମାନେ ଭୈରବଙ୍କୁ ଦେଖି ପଳାଇଗଲେ । ବିଷ୍ଣୁ ଶିବଙ୍କର ଏପରି ଅବସ୍ଥା ଲକ୍ଷ୍ୟ କରି ଉପହାସ କଲେ । ସେ ଶିବଙ୍କୁ ସମାଲୋଚନା କରିବାକୁ ଲାଗିଲେ ଏବଂ ଶିବ-ଭୈରବ ଏହାର ଉତ୍ତର ମଧ୍ୟ ଦେଲେ । (୪)

ଭୈରବ କ୍ରୋଧାନ୍ୱିତ ହୋଇ ବିଷ୍ଣୁଙ୍କୁ ଅଭିଶାପ ଦେଲେ ଯେ ସେ ଗୋମୁଖୀ

କେଶବ ହୋଇଯିବେ । ବିଷ୍ଣୁ ଏଥିରେ ଭୟ ପାଇଗଲେ ଏବଂ ଏପରି ବିଚାରକୁ ଗ୍ରହଣ କରିପାରିଲେ ନାହିଁ । ମାତ୍ର ଭୈରବ କୁଠାର ପ୍ରହାର କରିବା ଦ୍ୱାରା ବିଷ୍ଣୁଙ୍କର ମୁଣ୍ଡ ଛିଡ଼ିଗଲା । କେଶବଙ୍କର ମୁଣ୍ଡ ନିଜେ ଭୈରବ ଗଣ୍ଡ ସ୍ଥଳରେ ଝୁଲାଇଲେ ଏବଂ ନିଜ ଖର୍ପରରେ ଥିବା ଗୋମାତାର ମୁଣ୍ଡ ଗୋଟିକୁ କେଶବଙ୍କର କନ୍ଧରେ ନେଇ ଲମ୍ଭାଇ ଦେଲେ । ମହାମନ୍ତ୍ର ପାଠ କରି ଭୈରବ ଗୋମୁଖୀ କେଶବ ସୃଷ୍ଟି କଲେ ।

ଏହିପରି ସୃଷ୍ଟ ଗୋମୁଖୀ କେଶବଙ୍କର ପୀଠ ଏବଂ ମହାତ୍ମ୍ୟ ସମ୍ପର୍କରେ ସାରଳା ମହାଭାରତର ମୂଷଳୀ ପର୍ବରେ ବର୍ଣ୍ଣନା କରାଯାଇଛି । (୫) ବଜ୍ରସିଂହ ବଂଶଧର ସିଂହ ସାଗରଙ୍କର ଅତ୍ୟାଚାରରେ ଜୀବଜନ୍ତୁ ଅତିଷ୍ଠ ହୋଇପଡ଼ିଲେ । ସାଗରାସୁରଭୟ ଚାରିଆଡ଼େ ପ୍ରସାରିତ ହେଲା । ପିତାମହ ବ୍ରହ୍ମା ଏହି ଗୋମୁଖୀ କେଶବଙ୍କୁ ସାଗରସିଂହ ବଧ କରିବାକୁ ପଠାଇଲେ । ବ୍ରହ୍ମାଙ୍କ ଅନୁରୋଧ କ୍ରମେ ନାରାୟଣ ଗୋମୁଖୀ ଚକ୍ରଧାରୀ ଗୁପ୍ତ ରୂପରେ ସାଗରସିଂହ ପାଖରେ ପହଞ୍ଚିଲେ । ଗୋମୁଖ ଦେଖି ଅସୁର ତାଙ୍କୁ ଆହାର କରିଦେଲା । କେଶବ ଗର୍ଭ ମଧ୍ୟରେ ପ୍ରବେଶ କରିବା ଦ୍ୱାରା ତାହାଙ୍କର ଜ୍ୱଳା ଅସୁର ଅନୁଭବ କରିବାକୁ ଲାଗିଲା । ଗର୍ଭ ମଧ୍ୟରେ ପ୍ରବେଶ କରି କେଶବ ବିଶ୍ୱରୂପ ପ୍ରକାଶ କଲେ । ଶିଂଘ ଦ୍ୱାରା ତାହାର ବକ୍ଷ ବିଦୀର୍ଣ୍ଣ କରି ଦୁଇଫାଳ ଚିରିଦେଲେ । ଏହାପରେ ମକର ସଂକ୍ରାନ୍ତି ମହୋଦଧିରେ ପ୍ରବେଶ କରି କେଶବ ଜଳକ୍ରୀଡ଼ା କଲେ । ଅସୁର ବଧପରେ ସମସ୍ତ ଜୀବମାନେ ସାଗର ମଧ୍ୟରୁ ବାହାରକୁ ଆସିଲେ । ଗୋମୁଖୀ କେଶବଙ୍କ ପାଇଁ ମକର ଉତ୍ସବ ପାଳିତ ହେଲା ।

ଗୋମୁଖୀ କେଶବଙ୍କର ମହତ୍ତ୍ୱ ବର୍ଣ୍ଣନା କରି ସାରଳା ଦାସ ଲେଖିଛନ୍ତି;

ବୋଲଇ ଜାରାଶବର ଶୁଣସି ରାଜନ<br>
ଗୋମୁଖ କେଶବ ଯେ ଅନାଦି ନିରଞ୍ଜନ ।<br>
ମକର ସଂକରାନ୍ତିରେ ମଉଦଧିରେ କରଇ ସ୍ନାହାନ<br>
ରାତ୍ରେଣ ଜାଗର ଦେଇ ନିରାହାରେ ଦୀପଦାନ ।<br>
କେଶବ ସୁମରଣା କରନ୍ତି ଦେବତା ଇନ ଜ୍ଞାତା<br>
ତାହାର କତିକି ଆସି ନୁଆରଇ ଯମ ଯେ ଦେବତା (୬)

ଗୋମୁଖୀ କେଶବଙ୍କର ଏକ ଲାଞ୍ଜ ପଶ୍ଚିମକୁ ଗତି କରିବାରୁ ପ୍ରାଚୀ ନଦୀ ଉତ୍ପତ୍ତି ହେଲା । ଏହି ନଦୀକୁ ଅଶି ସହସ୍ର ଗନ୍ଧର୍ବ ଖୋଳାଇଥିଲେ ବୋଲି ସାରଳା ଦାସ ମତ ଦେଇଛନ୍ତି । ଖୋଳାଯିବା ସମୟରେ କେଶବ ଲାଞ୍ଜ କୋଦାଳ ବାଜିବାରୁ

ଆଠଖଣ୍ଡ ହୋଇ ଛିଡ଼ିଗଲା ଏବଂ ଏହା ପ୍ରାଚୀ ନଦୀ କୂଳରେ ଅଷ୍ଟଶମ୍ଭୁ ରୂପରେ ଦେଖାଦେଲା । (୭)

ପରିଶେଷରେ ଗୋମୁଖୀ କେଶବ ପୀଠର ମହତ୍ତ୍ୱ ସମ୍ପର୍କରେ ସାରଳାଦାସ ଏକ ବିବରଣୀ ଦେଇଛନ୍ତି;

ଭୋ ରାଜନ ମକର ସଂକ୍ରାନ୍ତିରେ ଯେ ପ୍ରାଚୀରେ କରନ୍ତି ସାହାନ
ଉପବାସେ ମଉନେ ଅଷ୍ଟଶମ୍ଭୁ କରନ୍ତି ଦରଶନ ।
ନବକୋଟି ତୀର୍ଥସଙ୍ଗେ ଘେନିତା ପୁଷ୍କର
ରାତ ଦିବସେ ଆସେ ଯେ ପ୍ରାଚୀ ନଦୀ ତୀର
ଅଷ୍ଟଶମ୍ଭୁ ଦ୍ରଶନ କରି ଯେ ଗୋମୁଖେ ପଶଇ
ନକ୍ଷତ୍ର ହୋଇଣ ସେ ସ୍ୱର୍ଗରେ ବସଇ ।

ଏହି ଗୋମୁଖୀ କେଶବ ପୀଠରେ ଜାରା ଏବଂ ଇନ୍ଦ୍ରଦ୍ୟୁମ୍ନ ନୀଳ ସୁନ୍ଦର ଗିରିରେ ଉପାସିତ ହେବାକୁ ଥିବା କୃଷ୍ଣଙ୍କର ମୃତପିଣ୍ଡ ଅନ୍ୱେଷଣ ପାଇଁ ପରସ୍ପର ବନ୍ଧୁତା ସ୍ଥାପନ କରିଥିଲେ ।

|| ତିନି ||

ସାରଳା ମହାଭାରତ ବର୍ଣ୍ଣିତ ଗୋମୁଖୀ କେଶବ ପ୍ରସଙ୍ଗରେ ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଶାର ଧାର୍ମିକ ପରିବେଶର ଏକ ସୂକ୍ଷ୍ମ ଆଲୋଚନା ସ୍ଥାନ ପାଇଛି । ପ୍ରଥମତଃ ଏହା ପ୍ରାଚୀ- କୁଶଭଦ୍ରା ଅଞ୍ଚଳର ସାଂସ୍କୃତିକ ପ୍ରାଧାନ୍ୟର ସୂଚନା ଦିଏ । ସାରଳା ଦାସ କାଳରେ ତଥା ତାଙ୍କ ପୂର୍ବେ ପ୍ରାଚୀ ଅବବାହିକା ଓଡ଼ିଶାର ସାଂସ୍କୃତିକ ଧାରାର ଏକ ସ୍ରୋତ ରୂପେ ପରିଚିତ ଥିଲା । ନାନା ଧର୍ମଧାରାର ପାରସ୍ପରିକ ପ୍ରଭାବରେ ଏହି ଅଞ୍ଚଳ ପରିପୁଷ୍ଟ । ଏଣୁ ଏହାର ପ୍ରାଧାନ୍ୟ ସାଂସ୍କୃତିକ ଇତିହାସରେ ସାରଳା ଦାସଙ୍କ କାଳରେ ମଧ ଥିଲା; ସେ କଥା ତାଙ୍କର ମୁଖ୍ୟ ବକ୍ତବ୍ୟ ହୋଇପାରିଛି । ଦ୍ୱିତୀୟତଃ ଏହା ଶିବଙ୍କର ଭୈରବ ରୂପ ଧାରଣ ସମ୍ପର୍କରେ ଯେଉଁ ବିବରଣୀ ଦିଏ ତାହା ସ୍ପଷ୍ଟ ଜଣାଇଦିଏ ଯେ ତାନ୍ତ୍ରିକ ସହଜଯାନ ପଦ୍ଧତି ପ୍ରତି ଓଡ଼ିଶାରେ ଏକଦା ଏକ ପ୍ରକାର ଘୃଣା ଭାବ ଆସିଥିଲା । ପୁଣି ଭୈର୍ବ ବଳି ଗ୍ରହଣରୁ ଜଣାଯାଏ ଯେ ଶାକ୍ତପୀଠ/ ତନ୍ତ୍ରପୀଠ ଗୁଡ଼ିକରେ ମଧ ଏହି ବଳି ପ୍ରଥା ଥିଲା । ଏହାର ଅନ୍ୟ ଏକ ଉଦାହରଣ ସାରଳାଦାସ ନିଜେ ରାମଚଣ୍ଡୀ ପ୍ରସଙ୍ଗରେ କହିଛନ୍ତି । (୯) ଇଂରାଜୀ ଆଲୋଚକ ଜନ୍ ବୋଲ୍‌ଟନଙ୍କର ଉକ୍ତି ଏ ଦିଗରେ ପ୍ରଣିଧାନଯୋଗ୍ୟ:

ଏଠାକାର ବଳିଦାନକାରୀ ଶିବ ଗୋ ମାଂସ ଖାଉଥିଲେ । ଅର୍ଥାତ୍ ବଳିଦାନକାରୀଙ୍କ ଖାଦ୍ୟ ନୂଆ ଦେବତାଙ୍କର ଗୋଟିଏ ଅଂଶ ହୋଇଯାଏ । (୧୦) ତୃତୀୟତଃ ବିଭିନ୍ନ ଧର୍ମଧାରା (ମୁଖ୍ୟତଃ ଶୈବ-ବୈଷ୍ଣବ) ବିବାଦ ଓଡ଼ିଶାରେ ଥିଲା । ଶିବଙ୍କର ଭୈରବ ରୂପଧାରଣ ଏବଂ ଗୋମୁଖୀ କେଶବ ସୃଷ୍ଟି ଏ ବିବାଦର ପରିଚୟ ଦିଏ । ଚତୁର୍ଥତଃ ଓଡ଼ିଶାର ଧାରଣାରେ ଶୈବଧର୍ମର ଅପ୍ରତିହତ ପ୍ରଭାବ ରହିଥିଲା । ଏହା ଏପରି ଶକ୍ତିଶାଳୀ ଥିଲା ଯେ ସାରଳା କାଳରେ ମଧ ତାହାର ପ୍ରଭାବ ରହିଥିଲା; ଯଦିବା ଓଡ଼ିଶାର ମୁଖ୍ୟ ଦେବତା ରୂପେ ଜଗନ୍ନାଥ ପରିଚିତ ଥିଲେ ।

## ॥ ଚାରି ॥

ସାରଳା ଦାସ ଦୃଷ୍ଟି ବଳୟରେ ପ୍ରଥମେ ଭୈରବ ପ୍ରତ୍ୟୟ ମୁଖ୍ୟ ଭୂମିକା ଗ୍ରହଣ କରିଛି । ଶିବଙ୍କର ଉଗ୍ର ରୂପ ବିଭିନ୍ନ ଭାବରେ ଆତ୍ମପ୍ରକାଶ କରିଥିଲା; ସେ ସବୁ ମଧରେ ଭୈରବ ଅନ୍ୟତମ । (୧୧) ଓଡ଼ିଶାର ବିଭିନ୍ନ ମନ୍ଦିରରେ ସ୍ଥାନିତ ଭାସ୍କର୍ଯ୍ୟରେ ଏହି ଭୈରବ ମୂର୍ତ୍ତି ପ୍ରକଟିତ । ମହାଭାରତ ଅନୁଶାସନ ପର୍ବରେ ଶିବ/ରୁଦ୍ରଙ୍କର ଭୈରବ ମୂର୍ତ୍ତି ସମ୍ପର୍କରେ ବର୍ଣ୍ଣନା ରହିଛି । ଏହି ଭୈରବ କେବେ ଏକପାଦ ବାମଦେବ ରୂପେ ମଧ ପ୍ରକାଶିତ ହୋଇଛନ୍ତି । ଆଗମ ଗ୍ରନ୍ଥମାନଙ୍କରେ ୬୪ ଭୈରବ ମୂର୍ତ୍ତିର ବର୍ଣ୍ଣନା ରହିଛି । ଓଡ଼ିଶାର ବିଭିନ୍ନ ମନ୍ଦିରରେ ଭୈରବ ବିଭିନ୍ନ ଅବସ୍ଥାରେ ଚିତ୍ରିତ ହୋଇଛନ୍ତି । ମୂଷଳୀ ପର୍ବରେ ସାରଳା ଦାସ ଏହି ଭୈରବ ମୂର୍ତ୍ତିର ବର୍ଣ୍ଣନା ପୂର୍ବରୁ ହୁଏତ ଏ ସମ୍ପର୍କିତ ଶାସ୍ତ୍ରମାନଙ୍କର ବିବରଣୀକୁ ଅଧୟନ କରିଥିବେ ଏବଂ ମନ୍ଦିରମାନଙ୍କରେ ଚିତ୍ରିତ ଭୈରବ ମୂର୍ତ୍ତିମାନଙ୍କୁ ଦେଖିଥିବେ । ତେଣୁ ଭୈରବଙ୍କର ଅଙ୍ଗ ପ୍ରତ୍ୟଙ୍ଗର ବର୍ଣ୍ଣନାରେ ସେ ବ୍ୟତିକ୍ରମ କରିନାହାନ୍ତି । କିନ୍ତୁ ସେ ଶିବଙ୍କର ଭୈରବରୂପ ଧାରଣ ମୂଳରେ ଥିବା ଏକ ଚମତ୍କାର ଆଖ୍ୟାନ ଉପସ୍ଥାପନ କରିଛନ୍ତି । ସେହି ଆଖ୍ୟାନ ଅନୁସାରେ ଗୋହତ୍ୟା ପରେ ସେ ଭୈରବ ରୂପ ଧାରଣ କଲେ । ପୁରାଣ ଏବଂ ଶୈବ ଆଗମମାନଙ୍କରେ ଶିବ ବ୍ରହ୍ମାମୁଣ୍ଡ କାଟି ଦେବାରୁ ଭୈରବ ରୂପ ଧାରଣ କରିଥିଲେ ବୋଲି ପ୍ରକାଶ କରାଯାଇଛି । (୧୨) ମାତ୍ର ପଶୁହତ୍ୟା ଏଠାରେ ବର୍ଣ୍ଣିତ ହୋଇଥିବାରୁ ମନେହୁଏ ସାରଳା ଦାସ ଏହି ଆଖ୍ୟାନ ଦ୍ୱାରା ତନ୍ତ୍ର/ ସହଜଯାନ ପଦ୍ଧତି ଉପରେ ଏକ ଆକ୍ଷେପ ହାଣିଛନ୍ତି । ପୁଣି ଭୈରବଙ୍କର ଅଙ୍ଗ ଏବଂ ତାଙ୍କର ଆବଶ୍ୟକ ବସ୍ତୁରେ ବଳି ପ୍ରଥା ଥିବାରୁ ମନେହୁଏ ସାରଳାଙ୍କ ଭୈରବ ପ୍ରତ୍ୟୟରେ ବଳି ପ୍ରଥା ଜଡ଼ିତ ତାନ୍ତ୍ରିକ ପଦ୍ଧତିର ସୂଚନା ରହିଛି; ଯାହା ଶୈବ ଧର୍ମକୁ ମଧ ଆକ୍ରାନ୍ତ କରିଛି । ଶିବଙ୍କର ଭୈରବ

ରୂପଧାରଣ ବ୍ରାହ୍ମଣ ଧର୍ମ ଉପରେ ଏକ କୁଠାରଘାତ ବୋଲି କୁହାଯାଇପାରେ । କାରଣ ବଳିପ୍ରଥା ଦ୍ୱାରା ସେତେବେଳେ ଶାକ୍ତ/ତନ୍ତ୍ର ପୀଠ ଗୁଡ଼ିକ ଅଧିକ ଶକ୍ତିଶାଳୀ ହୋଇଯାଇଥିଲେ । ସେ ସବୁ ଉପରେ ଅଧିକ ଶକ୍ତିଶାଳୀ ହେବାକୁ ଶୈବ ଧର୍ମରେ ଏହି ବାମାଚାର ପଦ୍ଧତି/ଭୈରବ ପ୍ରତ୍ୟୟ ମୁଣ୍ଡ ଟେକି ଉଠିଲା । ଶିବ- ଭୈରବ ଏପରି କ୍ଷମତାଶାଳୀ ହୋଇଥିଲେ ଯେ ବ୍ରାହ୍ମଣ୍ୟଧର୍ମର ସକଳ ଶାଖା ଏହାଙ୍କ ନିକଟରେ ନତମସ୍ତକ ହୋଇଯାଇଥିଲେ ।

ଭୈରବ ବର୍ଣ୍ଣନା ପରେ ବୈଷ୍ଣବ ଧର୍ମ କିପରି ଶୈବ ଧର୍ମର ଆଧିପତ୍ୟକୁ ସ୍ୱୀକାର କରିବାକୁ ବାଧ ହୋଇଥିଲା ତାହା ସାରଳା ଦାସ ବର୍ଣ୍ଣନା କରିବାକୁ ଭୁଲି ଯାଇନାହାନ୍ତି । ଭୈରବଙ୍କର ଉପସ୍ଥିତିରେ ବିଷ୍ଣୁ ଉପହାସ କରିବାରୁ ସେ ତାହାଙ୍କ ମୁଣ୍ଡ କାଟି ନିଜ ହାତରେ ଥିବା ଗୋମୁଣ୍ଡ ବିଷ୍ଣୁଙ୍କ ଠାରେ ଲଗାଇଥିଲେ ଏବଂ ବିଷ୍ଣୁଙ୍କର ମୁଣ୍ଡଟିକୁ ନିଜେ ନେଇ ଯାଇଥିଲେ । ଏହି ମୁଣ୍ଡ ବିନିମୟ ମଧ୍ୟ ତାନ୍ତ୍ରିକ ପଦ୍ଧତିର ସୂଚନା ଦିଏ । ଗୋମୁଖୀ କେଶବ ଭୈରବଙ୍କର ସୃଷ୍ଟି ଏହା ଜଣାଇଦିଏ ଯେ ଓଡ଼ିଶାର ପ୍ରାଚୀ- ପୁରୁଷୋତ୍ତମ ଅଞ୍ଚଳରେ ଶୈବଧର୍ମର ଅପ୍ରତିହତ ପ୍ରଭାବ ଏବଂ ଧର୍ମ ଧାରଣାରେ ଆଧିପତ୍ୟ ସାରଳା ଦାସଙ୍କ ପୂର୍ବ କାଳରେ ଥିଲା । ପ୍ରସଙ୍ଗାନୁରୋଧରେ ଜଣାଇ ଦିଆଯାଇପାରେ ଯେ ଏକଦା ଶିବ- ଭୈରବ ଏତେ ଶକ୍ତିଶାଳୀ ଦେବତା ଥିଲେ ବୋଲି ପୁରୁଷୋତ୍ତମ ପୀଠରେ ଜଗନ୍ନାଥଙ୍କ ସିଂହାସନରେ ଭୈରବ ମୂର୍ତ୍ତି ସ୍ଥାପନ କରାଯାଇଥିଲା । (୧୩) ଶୈବ ଧର୍ମର ଆଧିପତ୍ୟକୁ ଧର୍ମଧାରଣାରେ ସ୍ୱୀକାର କରିବା ଥିଲା ଏହାର ପ୍ରକୃତ ଉଦ୍ଦେଶ୍ୟ ।

॥ ପାଞ୍ଚ ॥

ସାରଳା ଦାସ ଚିହ୍ନିତ ଭୈରବ ସୃଷ୍ଟ ଗୋମୁଖୀ କେଶବ ବାସ୍ତବିକ ଓଡ଼ିଶା ଧର୍ମଧାରଣା (ବିଶେଷତଃ ପ୍ରାଚୀ- ପୁରୁଷୋତ୍ତମ କ୍ଷେତ୍ର ଅଞ୍ଚଳ ଧର୍ମଧାରଣା )ର ଏକ ଅବିସ୍ମରଣୀୟ ଅଙ୍ଗ । ପ୍ରାଚୀନ ଭାରତୀୟ ମୂର୍ତ୍ତିତତ୍ତ୍ୱ ଆଲୋଚକମାନେ ଗୋମୁଖ କଥା ବର୍ଣ୍ଣନା କରିଛନ୍ତି; କିନ୍ତୁ ସେମାନେ ଗୋମୁଖୀ କେଶବ କଥାର ସୂଚନା ଦେଇନାହାନ୍ତି । (୧୪) ଜୀତେନ୍ଦ୍ର ନାଥ ବାନାର୍ଜୀ ଗୋମୁଖ ମୂର୍ତ୍ତି ସମ୍ପର୍କରେ ସୂଚନା ଦେଇ କହିଛନ୍ତି:

Thus Gomukha, the Yaksa or upasaka or Rsabhanatha, the first tirthamkara, must have been derived from Siva, as his bull mount, and such of his attributes as battle axe, nose etc. prove; his bull face is reminiscent of a mode of representing Nandi,

really Siva himself in his hybrid theriomorphic from. (୧୫)

ବାନାର୍ଜୀଙ୍କ କଥାକୁ ଗ୍ରହଣ କରି ନେଲେ ଏକଥା ସ୍ପଷ୍ଟ ହେବ ଯେ ଗୋମୁଖ ମୁଖ୍ୟତଃ ଶୈବ ଧର୍ମଧାରାର ସଂକେତ ବହନ କରେ । ମାତ୍ର ସାରଳା ବର୍ଣ୍ଣିତ ଗୋମୁଖୀ କେଶବ ଏକ ବିଚିତ୍ର ବିଗ୍ରହ । ଏହା ଦୁଇଟି ଧର୍ମଧାରାର ସମନ୍ୱୟର କଥା ପ୍ରକାଶ କରେ- ଶୈବ ଓ ବୈଷ୍ଣବ । ଏକ ପକ୍ଷରେ ଗୋମୁଖ ଶୈବଧର୍ମର ସଂକେତ; ଅନ୍ୟ ପକ୍ଷରେ କେଶବ (ସମୁଦ୍ର ମଧ୍ୟରେ ଶୟନ କରିଥିବା ବିଷ୍ଣୁ) ବୈଷ୍ଣବ ଧର୍ମର ସଂକେତ । ବିଷ୍ଣୁଙ୍କର ଏହିପରି କେତେକ ରୂପ ଯଥା ବରାହ; ନରସିଂହ, ହୟଗ୍ରୀବ, ବିଡ଼ାଳ ନରସିଂହ ଓଡ଼ିଶାରେ ଅଭାବ ନାହିଁ । ମାତ୍ର ସାରଳା ଦାସଙ୍କ ବର୍ଣ୍ଣନାରୁ ଯାହା ଜଣାଯାଏ ଗୋମୁଖୀ କେଶବ ମୂର୍ତ୍ତି କେବଳ ପ୍ରାଚୀ ପୁରୁଷୋତ୍ତମ ଅଞ୍ଚଳରେ ଖ୍ୟାତିଲାଭ କରିଥିଲା । ସାରଳା ଦାସ ଶୈବ- ଭୈରବଙ୍କର ଆଧିପତ୍ୟକୁ ଗ୍ରହଣ କରିଛନ୍ତି । ସାରଳାଙ୍କ ବର୍ଣ୍ଣନା ଅନୁସାରେ ଗୋଶତ୍ରୁ ସାଗର ସିଂହଙ୍କର ବଧକାରୀ ଥିଲେ ଗୋମୁଖୀ କେଶବ । ସାରଳାଙ୍କ ଏ ସମ୍ପର୍କିତ ବିବରଣୀରୁ ଜଣାଯାଏ ଯେ ତାଙ୍କ କାଳରେ ମଧ୍ୟ ଗୋମୁଖୀ କେଶବ ଅତି ପ୍ରାଚୀନ ପୀଠ ରୂପେ ପରିଗଣିତ ହୋଇସାରିଥିଲା । ଜଗନ୍ନାଥ ତତ୍ତ୍ୱରେ ଯେଉଁ ସମନ୍ୱୟ ଭାବ ପ୍ରକଟିତ ହୋଇଥିଲା ତାହା ଜାଣିବାକୁ ହେଲେ ଗୋମୁଖୀ କେଶବ ତତ୍ତ୍ୱଟିକୁ ବୁଝିବାକୁ ହେବ- ଏକଥା ସାରଳା ଦାସ ଜାରା ଶବର ଇନ୍ଦ୍ରଦ୍ୟୁମ୍ନଙ୍କୁ ବୁଝାଇ ଦେଇଥିଲା ବୋଲି ସୂଚାଇଛନ୍ତି । ଶୈବ- ବୈଷ୍ଣବ ଧର୍ମର ସମ୍ମିଶ୍ରଣରେ ଗଠିତ ଗୋମୁଖୀ କେଶବ ତତ୍ତ୍ୱପରି ଜଗନ୍ନାଥ ତତ୍ତ୍ୱ ହେବା ଉଚିତ- ତାହା ଜାରା ଶବର ଇନ୍ଦ୍ରଦ୍ୟୁମ୍ନଙ୍କୁ ଯେପରି ବୁଝାଇଦେଲା ତାହା ଜଣାଇଦିଏ ଯେ ସାରଳା ତାଙ୍କ କାଳରେ ଲୋକମାନଙ୍କୁ ପୁରୁଷୋତ୍ତମ ପୀଠରେ ଶୈବ- ବୈଷ୍ଣବ- ବୌଦ୍ଧତନ୍ତ୍ର- ଶାକ୍ତ ଧର୍ମଧାରଣାର ସମ୍ମିଶ୍ରଣ (ଜଗନ୍ନାଥ ତତ୍ତ୍ୱ) ଆସିବା ପୂର୍ବରୁ ଏହାର ନିକଟରେ ପ୍ରାଚୀ ଅଞ୍ଚଳ ପାଖରେ ଏପରି ଧର୍ମଧାରଣାର ସମ୍ମିଶ୍ରଣ ଘଟିସାରିଥିଲା ବୋଲି ଜଣାଇ ଦେଇଛନ୍ତି । ସାରଳା ବର୍ଣ୍ଣିତ ଗୋମୁଖୀ କେଶବ ଯେ ଅନାଦି ନିରଞ୍ଜନ/ଗୋମୁଖୀ କେଶବ ସତ୍ୟଯୁଗର ଦେବତା- ଏ ପ୍ରସଙ୍ଗରୁ ଏ କଥା ସ୍ପଷ୍ଟ ଯେ ପ୍ରାଚୀନ କାଳରେ ଜଗନ୍ନାଥ ଶବରଦେବତା ରୂପେ ପୂଜିତ ହେବା କାଳରେ ମଧ୍ୟ ଗୋମୁଖୀ କେଶବ ପୂଜିତ ଥିଲେ । ହୁଏତ ଆଦିମ ଧର୍ମଧାରଣାର ଏହା ଏକ ପୀଠ ରୂପେ ପ୍ରଥମେ ପରିଚିତ ଥିଲା; ପରେ ହିନ୍ଦୁକରଣ ଦ୍ୱାରା ଗୋମୁଖୀ କେଶବ ତତ୍ତ୍ୱ ପ୍ରକାଶିତ ହେଲା ।

ଗୋମୁଖୀ କେଶବଙ୍କର ପୀଠ ପ୍ରାଚୀ ନଦୀ ମୁହାଣରେ ଥିଲା । ଗୋମୁଖୀ

କେଶବ ପରେ ପ୍ରାଚୀ ଅଞ୍ଚଳରେ ଅଷ୍ଟଶମ୍ଭୁପୀଠ ମୁଣ୍ଡ ଟେକି ଉଠିଥିଲା ବୋଲି ସାରଳାଦାସ ବର୍ଣ୍ଣନା କରିଛନ୍ତି । ପ୍ରାଚୀ ପୁରୁଷୋତ୍ତମ ଅଞ୍ଚଳରେ ଆଦିମ ଧର୍ମଧାରଣା ଚର୍ଚ୍ଚା ପ୍ରସଙ୍ଗରେ ଗୋମୁଖୀ କେଶବ ଏକ ବିଶିଷ୍ଟ ଦିଗ- ଏକଥା ସାରଳା ଗୁରୁତ୍ୱ ଦେଇ କହିଛନ୍ତି । ସମଗ୍ର ପ୍ରାଚୀ- ପୁରୁଷୋତ୍ତମ ଅଞ୍ଚଳ ବ୍ରାହ୍ମଣ୍ୟ- ବୌଦ୍ଧ- ଜୈନ ଧର୍ମ ଉତ୍ଥାନ ପୂର୍ବରୁ ପ୍ରାୟତଃ ଆଦିମ ଧର୍ମଧାରା (ଶବର ଧର୍ମଧାରା) ଦ୍ୱାରା ପରିଚାଳିତ ଥିଲା ଏକଥା ସାରଳା ମହାଭାରତର ନାନା ସ୍ଥାନରେ ପ୍ରକାଶିତ । ସେହି ଆଦିମ ଧର୍ମଧାରଣାର ଏକ ମୂଳସୂତ୍ର ଥିଲେ ଗୋମୁଖୀ କେଶବ ।

---

**ପ୍ରସଙ୍ଗ ନିର୍ଦ୍ଦେଶ**

୧. ସାରଳା ମହାଭାରତରେ ସ୍ଥାନ ପାଇଥିବା ନାଗାର୍ଜ୍ଜନ ସହ ଯୁଦ୍ଧରେ ଅର୍ଜ୍ଜୁନଙ୍କ ମୃତ୍ୟୁ ଏବଂ ପରେ ତାଙ୍କର ପୁନର୍ଜୀବନ ଲାଭ ପ୍ରସଙ୍ଗରେ (ସାରଳା ମହାଭାରତ, ସଭାପର୍ବ, ଦ୍ୱିତୀୟ ଖଣ୍ଡ, ୧୯୬୮, ପୃଷ୍ଠା- ୫୮୧- ୬୧୭) ନୀଳେନ୍ଦ୍ରୀହରଣ ପ୍ରସଙ୍ଗରେ (ସାରଳା ମହାଭାରତ, ମଧ୍ୟପର୍ବ, ପ୍ରଥମଖଣ୍ଡ, ୧୯୬୫, ପୃ- ୪୫୦- ୫୧୧) ଓ ସୁଭଦ୍ରାହରଣ ପ୍ରସଙ୍ଗ ଅନ୍ତର୍ଭୁକ୍ତ ଲକ୍ଷ୍ମୀ ଓ ପାର୍ବତୀଙ୍କ ବିଦ୍ରୂପାତ୍ମକ କଥୋପକଥନ ଭିତରେ (ସାରଳା ମହାଭାରତ, ମଧ୍ୟପର୍ବ, ପ୍ରଥମଖଣ୍ଡ, ୧୯୬୫, ପୃ- ୨୧୭- ୨୭୬) ଶୈବ- ବୈଷ୍ଣବ ବିବାଦର ପ୍ରତିଫଳନ ଦେଖିବାକୁ ମିଳେ । ଦାଶ, ଗଗନେନ୍ଦ୍ର ନାଥ, ''ଖଦ୍ୟୋତର ଦ୍ୟୁତି'', ୧୯୮୪, କଟକ, ପୃ-୪୨

୨. ସାରଳା ମହାଭାରତ, ମୂଷଳୀ ପର୍ବ, ୧୯୭୦, ଓଡ଼ିଶା ସରକାର ସାଂସ୍କୃତିକ ବ୍ୟାପାର ବିଭାଗ, ଭୁବନେଶ୍ୱର, ପୃ-୧୦୦-୧୦୮ ।

୩. ତତ୍ରୈବ; ପୃ - ୧୦୨ ।

୪. ତତ୍ରୈବ; ପୃ - ୧୦୨ ।

୫. ତତ୍ରୈବ

୬. ତତ୍ରୈବ; ପୃ - ୧୦୭;

୭. ଗୋମୁଖୀ କେଶବର ଲାଞ୍ଜ ଯେ ପଶ୍ଚିମ ମୂରତି
ତହୁଂ ସେ ପ୍ରାଚୀନାମେ ହେଲା ନଦୀଯେ ଉତ୍ପତ୍ତି ।
ଅଶି ସହସ୍ର ଗନ୍ଧର୍ବ ଆଣିଲେ ତାହା ଖୋଳି
କେଶବ ଲାଞ୍ଜ ଛାଡ଼ିଲା ଯେ ବାଜିଣ କୋଦାଳି । ଆଠ ଖଣ୍ଡ ହୋଇ ଛିଡ଼ିଗଲା ଯେ ଲାଙ୍ଗୁଡ଼
ଅଷ୍ଟଶମ୍ଭୁ ହୋଇଲେ ସେ ପ୍ରାଚୀ ନଦୀ କୂଳର । ଗୋକର୍ଣ୍ଣେଶ୍ୱର କପାଳେଶ୍ୱର ଶୋଭନେଶ୍ୱର ଗ୍ରାମେଶ୍ୱର
ହର ଶଙ୍କରେଶ୍ୱର ସୋମେଶ୍ୱର ନାଟକେଶ୍ୱର ଶୁକ୍ଳେଶ୍ୱର ।

୮. ତତ୍ରୈବ; ପୃ - ୧୦୭ ।

୯. ସାରଳା ଦାସ ମଧ୍ୟ ପର୍ବରେ ରାମଚଣ୍ଡୀଙ୍କୁ ନିମ୍ନୋକ୍ତ ମତେ ବର୍ଣ୍ଣନା କରିଛନ୍ତି ।

ଶ୍ରୀରାମ ପୂଜନ୍ତେ ରାମଚଣ୍ଡୀ ନାମ ହେଲା
ରାଜନିଯୋଗ ହିଁ ମାଗୋ କିଛି ନ ହୁରିଲା ।
ପ୍ରତିଦିନ କାହୁଁ ଆଣି ଖାଉ ମହାମାୟୀ
ତିନିଶ ଷାଠିଏ ଦିନ ପଡ଼ିଆ ନୁହଇ ।
ଦିଲ୍ଲୀ ଯେ ଡିଙ୍ଗର ମାଗୋ ମାଳବ କୁଞ୍ଜର
ଏତେ ଦୂରୁଁ ଆଣି ମାଗୋ ପୋଷୁତୁ ଉଦର ।

ଡିଙ୍ଗର ( ଉଦ୍ଧତ ବା କ୍ଷମତାଶାଳୀ) ଦିଲ୍ଲୀ । ମାଳବ ଓ କୁଞ୍ଜର (କାଳିଞ୍ଜର) ପରି ସୁଦୂର ଦେଶରୁ ଭୋଗ ଆଣି ରାମଚଣ୍ଡୀ ଉଦର ପୋଷୁଥିବା କଥା କବି ଏହି ସ୍ତବରେ ଲେଖିଛନ୍ତି । ଶତ୍ରୁ ରାଜ୍ୟରୁ ଧୃତ ହୋଇ ଯେଉଁ ବନ୍ଦୀମାନେ ଆସୁଥିଲେ, ସେମାନଙ୍କ ଦ୍ୱାରା ମଧ୍ୟ ରାମଚଣ୍ଡୀ ଉଦର ପୋଷଣ କରୁଥିଲେ । ପୂର୍ବକାଳରେ ନରବଳି ପ୍ରଥା ପ୍ରଚଳିତ ଥିଲା; ଆଉ ବନ୍ଦୀକୃତ ଶତ୍ରୁମାନଙ୍କୁ ମଧ୍ୟ ଦେବୀଙ୍କ ଠାରେ ବଳିଦେବା ସାଧାରଣ କଥା ଥିଲା । ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର, ପ୍ରବନ୍ଧ ମାନସ, ପୃ- ୧୪୨- ୧୪୫ ।

୧୦. ବୋଲଟନ୍, ଜନ, ମୋ ଦୃଷ୍ଟିରେ ସାରଳା ଦାସ ଓ ତାଙ୍କ ମହାଭାରତ, ସାରଳୋସମୀକ୍ଷା, ସାରଳା ସ୍ମାରକ, ତେନ୍ତୁଳିପଦା, ଝଙ୍କଡ଼, କଟକ, ୧୯୭୯, ପୃ ୬୨-୬୨ ।

୧୧. Donaldson, T.E., Hindu Temple Art in Orissa ,Vol-III, Leiden, p. 1107- 1108.

୧୨. Banerji, J.N., The Development of Hindu iconography, 1985, Delhi, p. 465.

୧୩. ପୁରୁଷୋତ୍ତମ ପୀଠରେ ଭୈରବ ମୂର୍ତ୍ତି ସ୍ଥାପନ ସମ୍ପର୍କିତ ବିବରଣୀ ପାଇଁ ଦ୍ରଷ୍ଟବ୍ୟ; ଦାଶ ଗଗନେନ୍ଦ୍ର ନାଥ, ପୂର୍ବୋକ୍ତ ପୁସ୍ତକ, ପୃ- ୪୩- ୫୨ । ଜଗନ୍ନାଥ ତତ୍ତ୍ୱରେ ଭୈରବ ପ୍ରତ୍ୟୟ ପାଇଁ;
Stietercron, H.v., "The Saiva component in the early evolution of Jagannatha," The Cult of Jagannath and the Regional Tradition of Orissa, ed. Eschmann, kulke and Tripathy, 1978/ 1986, New Delhi, chapter-VI.

୧୪. Banerji, J.N; ପୂର୍ବୋକ୍ତ ପୁସ୍ତକ, ପୃ- ୧୫୨ ।

୧୫. ତତ୍ରୈବ; ପୃ- ୫୬୨ ।



# ଏକାମ୍ରକ ଲିଙ୍ଗରାଜ

॥ ଏକ ॥

୨୦° ୧୫' ଠାରୁ ୮୫° ୫୦' (ଅକ୍ଷାଂଶ- ଦ୍ରାଘିମା) ମଧ୍ୟରେ ଅବସ୍ଥିତ ଭୁବନେଶ୍ୱର ସଂଖ୍ୟାଧିକ ତୀର୍ଥଯାତ୍ରୀ ଏବଂ ଭକ୍ତମାନଙ୍କର ଉପାସନାର ଆକର୍ଷଣୀୟ କ୍ଷେତ୍ର ହିସାବରେ ବହୁ ପ୍ରାଚୀନ କାଳରୁ ସୁପରିଚିତ । ଏହି କ୍ଷେତ୍ରର ପୁରାତତ୍ତ୍ୱ ଉପରେ ବିସ୍ତାରିତ ଆଲୋଚନା ବହୁ ଐତିହ୍ୟ ଓ ସଂସ୍କୃତି ପ୍ରେମୀ ଛାଡ଼ି ଯାଇଥିଲେ ମଧ୍ୟ ଐତିହାସିକ ସ୍ୱର୍ଗତଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡକ୍ଟର ବିଦ୍ୟା ଦେହେଜିଆ ଏବଂ ଡକ୍ଟର ଟମାସ୍ ଡୋନାଲଡସନ୍ ସେମାନଙ୍କର ସ୍ମରଣୀୟ ଗ୍ରନ୍ଥମାନଙ୍କରେ ଏକ ନିର୍ଭରଯୋଗ୍ୟ ତଥ୍ୟନିଷ୍ଠ ବିବରଣୀ ଉପସ୍ଥାପିତ କରିଛନ୍ତି । (୧) ଏହା ସତ୍ତ୍ୱେ ପୁରାତନ ତଥ୍ୟର ପୁନର୍ବ୍ୟାଖ୍ୟା ଏବଂ ନୂତନ ତଥ୍ୟର ସହଯୋଗରେ ଭୁବନେଶ୍ୱର ଉପରେ ଅଧିକ ଆଲୋଚନା କରାଯାଇପାରିବ । ଅଧୁନା ପ୍ରବନ୍ଧରେ ଭୁବନେଶ୍ୱର ପ୍ରାଚୀନ କାଳରେ କେଉଁ କେଉଁ ନାମ ଦ୍ୱାରା ପରିଚିତ ଥିଲା ଏବଂ ସେସବୁ ନାମକରଣର ପ୍ରାମାଣିକତା ତଥା ଏହି କ୍ଷେତ୍ରର ମୁଖ୍ୟଦେବତା ଲିଙ୍ଗରାଜ ସମ୍ପର୍କରେ କେତେକ ନୂତନ ତଥ୍ୟ ଉପସ୍ଥାପିତ କରାଯାଇଛି । ଏଥିପାଇଁ ତାମ୍ର ଶିଳାଲେଖ ବିବରଣୀ ଏବଂ ପାରମ୍ପରିକ ବିବରଣୀର ବୈଜ୍ଞାନିକ ଦୃଷ୍ଟିକୋଣରୁ ବ୍ୟାଖ୍ୟାକୁ ଗ୍ରହଣ କରାଯାଇଛି ।

॥ ଦୁଇ ॥

ଭୁବନେଶ୍ୱର ନାମଟି ଓଡ଼ିଶାରେ ଗଙ୍ଗରାଜତ୍ୱ କାଳରେ ସୁପରିଚିତ ଥିଲା; ଯଦିବା ସେତେବେଳେ ଅନ୍ୟ ନାମମାନ ଏହି ଧର୍ମସ୍ଥଳ ପାଇଁ ମଧ୍ୟ ପ୍ରୟୋଗ କରାଯାଉଥିଲା । (୨) ଏହି କାଳରେ ଭୁବନେଶ୍ୱର ଏକାମ୍ରକ, କୃତ୍ତିବାସ କ୍ଷେତ୍ର, ତ୍ରିଭୁବନେଶ୍ୱର, ସ୍ୱର୍ଣ୍ଣକୁଟଗିରି, ପରିଶେଷରେ ଲିଙ୍ଗରାଜ କ୍ଷେତ୍ର ରୂପେ ପରିଚିତ ଥିଲା ।

(୩) ଗଙ୍ଗବଂଶର ଶିଳାଲେଖ ଗୁଡ଼ିକରେ ଭୁବନେଶ୍ୱରର ମୁଖ୍ୟ ଦେବତା କୃତ୍ତିବାସ ରୂପେ ଉଲ୍ଲେଖ କରା ହୋଇଛି । (୪) ଏହି କାଳରେ ଭୁବନେଶ୍ୱରର ସର୍ବପ୍ରାଚୀନ ନାମ ଏକାମ୍ରକ ଅଜଣା ନଥିଲା । ସ୍ଥାନଟି ପ୍ରଥମେ କାହିଁକି ଏକାମ୍ରକ ରୂପେ ସୁପରିଚିତ ଥିଲା ଏବଂ ପରେ କୃତ୍ତିବାସ, ତ୍ରିଭୁବନେଶ୍ୱର ଲିଙ୍ଗରାଜ (ଭୁବନେଶ୍ୱର), କିପରି ପରିଚିତ ହେଲା, ତାହାର ଆଲୋଚନା ପ୍ରଥମେ କରାଯାଇପାରେ ।

ଏକାମ୍ରକ:

ଏକାମ୍ର ପୁରାଣ, ସ୍ୱର୍ଣ୍ଣାଦ୍ରି ମହୋଦୟ, କପିଳ ସଂହିତା ଏବଂ ପ୍ରାଚୀନ ଶିଳା ଓ ତାମ୍ରଲେଖ ଗୁଡ଼ିକରେ ଭୁବନେଶ୍ୱର ଏକାମ୍ରକ ନାମରେ ସୂଚିତ । ଏକାମ୍ର ପୁରାଣ ଉଭୟ ଏକାମ୍ର ଏବଂ ଏକାମ୍ରକ ଶବ୍ଦ ବ୍ୟବହାର କରିଛି । ଏହାର ଚତୁର୍ଦ୍ଦଶ ଅଧ୍ୟାୟରେ ଏକାମ୍ରକ କ୍ଷେତ୍ର କଥା ଉଲ୍ଲିଖିତ;

ଏକାମ୍ରକ ବନଂ ନାମ ପ୍ରଖ୍ୟାତଂ ଭୁବନତ୍ରୟେ
ମମକ୍ଷେତ୍ରବରଂ ଶ୍ରୀମାନ୍ ନଦୀ ଗନ୍ଧବତୀତଟେ (୫)
ଏକାମ୍ରକ ବନଂ ଗତ୍ୱା ସ୍ୱର୍ଣ୍ଣକୂଟାଦ୍ରିଶିଖରେ
ପ୍ରସାଦଂ ତତ୍ର କୃତ୍ୱା ଚ ଲିଙ୍ଗସ୍ୟାରାଧନାଂ କୁରୁ । (୬)

ସ୍ୱର୍ଣ୍ଣାଦ୍ରି ମହୋଦୟରେ ଏ ପ୍ରସଙ୍ଗ ମଧ୍ୟ ରହିଛି;

ଏକାମ୍ରକଂ ଚ ତତ୍‌କ୍ଷେତ୍ରଂ ବାରଣସ୍ୟାଧିକଂ ମୁନେ
ଦୁଷ୍ପ୍ରାପ୍ୟଂ ସର୍ବଦେବାନାଂ ନରାଣାମପବର୍ଗଦଂ ।
ତବ ପ୍ରୀତ୍ୟା ଚ କଥିତଂ ଗୋପନୀୟଂ ପରଂ ଶୁଭଂ
ବାରଣସ୍ୟାଧିକଂ ପୁଣ୍ୟଂ କୋଟିଲିଙ୍ଗ ବିଭୂଷିତଂ । (୭)

ଏହା ବ୍ୟତୀତ ପ୍ରାଚୀନ ଶିଳା ଓ ତାମ୍ରଫଳକରେ ସ୍ଥାନଟିର ନାମ ସ୍ପଷ୍ଟ ଭାବରେ ଏକାମ୍ରକ ବୋଲି ଲେଖାଯାଇଛି । ବର୍ତ୍ତମାନ ପର୍ଯ୍ୟନ୍ତ ଆବିଷ୍କୃତ ଅଭିଲେଖମାଳା ମଧ୍ୟରେ ୬୦୦ ଖ୍ରୀଷ୍ଟାବ୍ଦର କଣାସ ତାମ୍ରଲେଖ ଏବଂ ଶାନ୍ତିକର ଦେବଙ୍କର ଦ୍ୱିତୀୟ ସମ୍ବତ୍‌ରେ ଉତ୍କୀର୍ଣ୍ଣ ଅନୁଗୁଳ ତାମ୍ରଲେଖରେ (୮) ଏହି ନାମ ଏକାମ୍ରକ ବୋଲି ସୂଚିତ । ଏଥିରୁ ମୁଁ ଅନୁମାନ କରେ ଯେ ଭୁବନେଶ୍ୱର ଅତି ପ୍ରାଚୀନ କାଳରେ ଏକାମ୍ରକ ରୂପେ ପରିଚିତ ଥିଲା; ପରେ ଏକାମ୍ର ବୋଲି ମଧ୍ୟ ଉଚ୍ଚାରିତ ହେଲା । ଉଭୟ ପାରମ୍ପରିକ ବିବରଣୀ ଏବଂ ତାମ୍ର ଓ ଶିଳାଲେଖୀୟ ବିବରଣୀରେ ଏହା ପ୍ରକାଶିତ ହୋଇଥିବାରୁ ଏପରି ଏକ ସିଦ୍ଧାନ୍ତ ନିଆଯାଇଛି । ଆବିଷ୍କୃତ ପୁରାତନ ଅଭିଲେଖୀୟ ଉପାଦାନ ମଧ୍ୟରେ କଣାସଠାରୁ

ପ୍ରାପ୍ତ ତାମ୍ରଲେଖରେ ଏକାମ୍ରକର ସର୍ବପ୍ରଥମ ସୂଚନା ମିଳିଛି । ଏହି ଅଭିଲେଖର ସମୟ ୫୯୯- ୬୦୦ ଖ୍ରୀଷ୍ଟାବ୍ଦ । ଏହା ସ୍ପଷ୍ଟ ଭାବରେ ଜଣାଇଦିଏ ଯେ ଏକାମ୍ରକ ନାମଟି ଖ୍ରୀଷ୍ଟିୟ ୫୯୯ର ବହୁ ପୂର୍ବରୁ ଭୁବନେଶ୍ୱରର ପରିଚିତ ନାମ ଥିଲା । ଅବଶ୍ୟ ମୌର୍ଯ୍ୟ ସମ୍ରାଟ ଅଶୋକଙ୍କର ଧଉଳିରେ ଥିବା ସ୍ୱତନ୍ତ୍ର ଶିଳାନୁଶାସନ ଏବଂ କଳିଙ୍ଗ ସମ୍ରାଟ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରେ ଏହି ନାମ ବ୍ୟବହାର କରାଯାଇ ନାହିଁ । ଏଥିରୁ ଅଶୋକ- ଖାରବେଳ କାଳରେ ଏକାମ୍ରକ ନାମ ସୁପରିଚିତ ନଥିଲା ବୋଲି ସିଦ୍ଧାନ୍ତ ନେବା ଅନୁଚିତ । ହୁଏତ ଏହି ଦୁଇ ନରପତିଙ୍କର ବିବରଣୀରେ ଏକାମ୍ରକର ବର୍ଣ୍ଣନା ଅପ୍ରାସଙ୍ଗିକ ମନେ ହୋଇଥିବ; କିମ୍ବା ତାହାର ଆବଶ୍ୟକତା ନଥିବ । ତେବେ କଣାସ ତାମ୍ରଲେଖ ପ୍ରଦତ୍ତ ବିବରଣୀରୁ ଏକଥା ସ୍ପଷ୍ଟ ଯେ ଏକାମ୍ରକ ଭୁବନେଶ୍ୱରର ଏକ ବହୁ ପରିଚିତ ପ୍ରାଚୀନ ନାମ । ଏହି ତାମ୍ରଲେଖ ମଣିନାଗେଶ୍ୱର ଭଟ୍ଟାରକଙ୍କଙ୍କ ମଠରେ ଭୋଗ ବ୍ୟବସ୍ଥାର ବର୍ଣ୍ଣନା ଦେଇଥାଏ । (୧୧) ଏହି ତାମ୍ରଲେଖର ପାଠକ ଲିପିତତ୍ତ୍ୱବିତ୍ ସ୍ୱର୍ଗତଃ ଦିନେଶ ଚନ୍ଦ୍ର ସରକାରଙ୍କର ମତାନୁସାରେ ଏକାମ୍ରକରେ ଅବସ୍ଥିତ ଥିଲା ମଣିନାଗେଶ୍ୱର ଭଟ୍ଟାକରଙ୍କର ମଠ । ମଣିନାଗେଶ୍ୱର ମଠକୁ କର୍ଣାସ ମଠ ହିସାବରେ ସରକାର ଗ୍ରହଣ କରିଛନ୍ତି । ତେବେ କଣାସ ଅଞ୍ଚଳ ପର୍ଯ୍ୟନ୍ତ ସେତେବେଳେ ଏକାମ୍ରକ ପରିବ୍ୟାପ୍ତ ହୋଇନଥିଲା ବୋଲି ଜଣାଯାଏ । ଅନ୍ୟପକ୍ଷରେ ଏକାମ୍ରକ ଅଞ୍ଚଳ ମଧ୍ୟରେ କୌଣସି ପାଖରେ ମଣିନାଗେଶ୍ୱର ମଠ ଅବସ୍ଥିତ ଥିଲା ବୋଲି ଅନୁମାନ କରାଯାଇପାରେ । (୧୨) କଣାସ ମଠକୁ ଏହି ତାମ୍ରଲେଖ ହସ୍ତାନ୍ତର ହୋଇଥିବାର ଦୁଇଟି ସମ୍ଭାବ୍ୟ କାରଣ ଥାଇପାରେ;

(୧) ଏକାମ୍ରକ - ଭୁବନେଶ୍ୱରରେ ପ୍ରକୃତରେ ମଣିନାଗେଶ୍ୱର ମଠ ଥିଲା ଏବଂ ସମୟ କ୍ରମେ ଜୀର୍ଣ୍ଣ ହୋଇଯିବାରୁ ବା ଅନ୍ୟ କାରଣରୁ ଏହି ତାମ୍ରଲେଖ କଣାସ ମଠକୁ ସ୍ଥାନାନ୍ତରିତ ହୋଇଥିବ ।

(୨) ମଣିନାଗେଶ୍ୱର ମଠ ଧ୍ୱଂସ ପାଇବା/ ଜୀର୍ଣ୍ଣ ହୋଇଥିବା ଯୋଗୁ ମୂଳ ମଠର କେହି ବ୍ୟକ୍ତି ଏହାକୁ ପରିତ୍ୟାଗ କରି କଣାସ ମଠ ନିର୍ମାଣ କରିଥିବେ ଏବଂ ଏହା ଯୋଗୁଁ ତାମ୍ରଲେଖଟି ସେହି କଣାସ ମଠକୁ ସ୍ଥାନାନ୍ତରିତ ହୋଇଥିବ ।

ଏହା ଯଥେଷ୍ଟ ଗବେଷଣା ଅପେକ୍ଷା କରେ ଏବଂ ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ବର୍ତ୍ତମାନ ଜ୍ଞାନଦୃଷ୍ଟିରୁ ଗ୍ରହଣ କରି ହେବ ନାହିଁ । ଏହା ସତ୍ୟ ଯେ ଏକାମ୍ରକ କ୍ଷେତ୍ର ୬୦୦ ଖ୍ରୀଷ୍ଟାବ୍ଦରେ କଣାସ ପର୍ଯ୍ୟନ୍ତ ବ୍ୟାପି ନଥିଲା; ଯଦିବା ଏକାମ୍ରକ- ଭୁବନେଶ୍ୱର

ସୀମାରେ କଣାସ ପରି କେତେକ ଗ୍ରାମ ଅବସ୍ଥିତ । ଏ ସମସ୍ୟାକୁ ବାଦ୍‌ଦେଲେ ଏହି ତାମ୍ରଲେଖ ବିବରଣୀ ଭିତ୍ତିରେ ଏତିକି କୁହାଯାଇପାରିବ ଯେ ଅନ୍ତତଃ ଖ୍ରୀଷ୍ଟୀୟ ପଞ୍ଚମ-ଷଷ୍ଠ ଶତକରେ ଏକାମ୍ରକ ଏକ ଶୈବପୀଠ ହିସାବରେ ସୁପରିଚିତ ଥିଲା ।

ସ୍ଥାନଟିର ନାମ କାହିଁକି ଏକାମ୍ରକ ହେଲା ତାହାର ଏକ ବିବରଣୀ ଏକାମ୍ର ପୁରାଣରେ ସ୍ଥାନ ପାଇଛି । (୧୧)

୧. ଏକାମ୍ରକ ବନଂ ଗତ୍ୱା ସ୍ୱର୍ଣ୍ଣକୂଟାଦ୍ରିଶିଖରେ
ପ୍ରାସାଦଂ ତତ୍ର କୃତ୍ୱା ଚ ଲିଙ୍ଗସ୍ୟାରାଧନାଂ କୁରୁ ।

୨. ସ୍ୱର୍ଣ୍ଣକୂଟଗିରେଃ ପୃଷ୍ଠେ ଏକାମ୍ରକତରୁଃ ସ୍ମୃତଃ
କ୍ରୋଶମାତ୍ର ପରିଣାହଃ ଶାଖା ସଞ୍ଚୟମଣ୍ଡିତଃ।।

ଏହି ପ୍ରସଙ୍ଗରୁ ଏକଥା ସ୍ପଷ୍ଟ ଜଣାପଡ଼େ ଯେ ଏକାମ୍ରକ ତରୁ ପାଇଁ ଯେଉଁ କ୍ଷେତ୍ର ପ୍ରସିଦ୍ଧ ଥିଲା ତାହା ଏକାମ୍ରକ କ୍ଷେତ୍ର ରୂପେ ପରିଚିତ ହେଲା । ଗଙ୍ଗସମ୍ରାଟ ଅନଙ୍ଗଭୀମଙ୍କର ଦୁହିତା ଚନ୍ଦ୍ରିକା ଦେବୀଙ୍କର ଅନନ୍ତ ବାସୁଦେବ ମନ୍ଦିର ଶିଳାଲିପି ମଧ୍ୟ ଏହାକୁ ଗ୍ରହଣ କରିଅଛି । (୧୨) ପାରମ୍ପରିକ ବିବରଣୀର ବିଶ୍ଳେଷଣରୁ ଜଣାଯାଏ ଯେ ପ୍ରଥମେ ବହୁ ଦୂର ପ୍ରସାରିତ ଏକ ବୃକ୍ଷରେ ମାତ୍ର ଏକ ଆମ୍ବ ସୃଷ୍ଟି ହେଉଥିବାରୁ ସେହି ଏକମାତ୍ର ଆମ୍ବ ପାଇଁ କ୍ଷେତ୍ର ପ୍ରସିଦ୍ଧ ଥିଲା । ତେଣୁ କ୍ଷେତ୍ରରେ ନାମ ଥିଲା ଏକାମ୍ରକ । କିନ୍ତୁ ଏହାର ଅନ୍ୟ ଅର୍ଥ ଅଛି । ଏକାମ୍ରକ ମଧ୍ୟ ଏକ ଆମ୍ରକୁ ସୂଚାଇଥାଏ । ଅନ୍ୟ ଅର୍ଥରେ କ୍ଷେତ୍ରର ପରିସୀମା ଏକ ଆମ୍ବ ସଦୃଶ ହୋଇଥିବାରୁ ଭୌଗୋଳିକ କଳେବରକୁ ଲକ୍ଷ୍ୟ କରି ଏପରି ନାମକରଣ କରାଯାଇଥିବ । ଏହାର ଅର୍ଥ- ଏକାମ୍ରକ କ୍ଷେତ୍ର ଯେଉଁ ଅଞ୍ଚଳକୁ ନେଇ ଅବସ୍ଥିତ ଥିଲା ତାହା ସମ୍ଭବତଃ ଏକ ଆମ୍ର ପରି । ବର୍ତ୍ତମାନ ପରିଚିତ ଅଷ୍ଟାୟତନ ଶିବ ଲିଙ୍ଗ ବେଷ୍ଟିତ ସିଦ୍ଧ କ୍ଷେତ୍ର ଏକାମ୍ର ସଦୃଶ ହୋଇଥିବାରୁ ଏପରି ନାମକରଣ କରାଯାଇଥିବ । ପରବର୍ତ୍ତୀ ପର୍ଯ୍ୟାୟରେ ଏପରି କଳ୍ପନାକୁ ଲକ୍ଷ୍ୟ ନକରି ଆମ୍ର ବୃକ୍ଷ ଥିବା କ୍ଷେତ୍ର ବୋଲି ପ୍ରଚାର କରାଯାଇ ପୁରାଣ ରଚନା କରାଯାଇଥିବ । ଏ ଦୃଷ୍ଟିରୁ ଏକାମ୍ରକ ଶବ୍ଦଟି କ୍ଷେତ୍ରର ଭୌଗୋଳିକ ଆକାରର ସୂଚନା ଦିଏ ।

ସ୍ୱର୍ଗତଃ ଐତିହାସିକ କେଦାରନାଥ ମହାପାତ୍ରଙ୍କ ମତ (ଏକାମ୍ର ସମ୍ପର୍କିତ) ଏଠାରେ ବିଚାର କରାଯାଇପାରେ; "ସମ୍ଭବତଃ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀ ପୂର୍ବରୁ ଏଠାରେ କୌଣସି ରାଜା ବା ଧର୍ମପରାୟଣ ଧନ୍ୟ ବ୍ୟକ୍ତି ଗୋଟିଏ ବିରାଟ ଆମ୍ର ଉଦ୍ୟାନ ନିର୍ମାଣ କରିଥିଲେ । ଏଥିରେ ଅସଂଖ୍ୟ ଋଷି, ମୁନି ବା ସିଦ୍ଧ ଅର୍ହତ ତପସ୍ୟା

ଆଚରଣ କରି କାଳଯାପନ କରୁଥିଲେ । ପ୍ରାଚୀନ କାଳରେ କୌଣସି ବୌଦ୍ଧ ଯତିମାନଙ୍କ ପାଇଁ ଆମ୍ର ଉଦ୍ୟାନ ନିର୍ମାଣ କରିବା ଗୋଟିଏ ଧର୍ମକାର୍ଯ୍ୟ ରୂପେ ଗୃହୀତ ହୋଇଥିଲା । ଆମ୍ରବନ ବୌଦ୍ଧ ଧର୍ମପ୍ରଚାରର ପ୍ରିୟ ସ୍ଥଳୀ । ଏହାର ଅନେକ ଉଦାହରଣ ବୈଶାଳୀ ନଗରୀ ନିକଟରେ ବୌଦ୍ଧ ଗ୍ରନ୍ଥମାନଙ୍କରୁ ମିଳେ । ଅମ୍ବାପାଲି, ବିଦେଲସ୍ଥ ଦେଶରେ ମଖଦେବ ବୁଦ୍ଧଙ୍କ ନିବାସ ନିମନ୍ତେ ଦୁଇଟି ଆମ୍ରବନ ପ୍ରଦାନ କରିଥିଲେ । ବୁଦ୍ଧ ପ୍ରତ୍ୟେକ ସ୍ଥାନରେ ରହି ଧର୍ମପ୍ରଚାର କରିଥିଲେ ।

ସ୍ୱର୍ଗତଃ ମହାପାତ୍ର ଏକାଧିକ ଉଦାହରଣ ଦେଇ ପ୍ରକାଶ କରିଛନ୍ତି ଯେ ଏକାମ୍ରକ ନାମଟି ଏହିପରି ବୌଦ୍ଧ ଉଦ୍ୟାନ ଯୋଗୁଁ ସମ୍ଭବ ହୋଇଛି । କିନ୍ତୁ ସ୍ଥାନଟିର ନାମ ଏକ ଆମ୍ରକ ହୋଇଥିବାରୁ ଏହା ଉଦ୍ୟାନ, ବୃକ୍ଷ ବା ଫଳକୁ ନିର୍ଦ୍ଦିଷ୍ଟ ସୂଚନା ଦେଇନଥାଏ । ସ୍ୱର୍ଗତଃ ମହାପାତ୍ରଙ୍କର ଏପରି ଅନୁମାନ ପଛରେ ଏକାନ୍ତ ନିର୍ଭରଯୋଗ୍ୟ ପ୍ରାମାଣିକ ଉପାଦାନର ଅଭାବ ଅଛି ।

ଏଠାରେ ଅନ୍ୟ ଏକ ଅନୁମାନକୁ ସହଜରେ ଉଡ଼ାଇ ଦେଇହେବ ନାହିଁ । ବୃକ୍ଷଟିରେ ଗୋଟିଏ ମାତ୍ର ଆମ୍ବ ଫଳୁଥିଲା ଏବଂ ତାହାର ଆକାର ଓ ସ୍ଥିତିରେ କିଛି ବୈଚିତ୍ର୍ୟ ଥିଲା, ଯାହା ହୁଏତ ସେତେବେଳର ଓଡ଼ିଶାର କୌଣସି ଧର୍ମ ସ୍ଥଳରେ ନଥିଲା । ଏହି ରହସ୍ୟମୟ ଆମ୍ରପାଇଁ ହୁଏତ କ୍ଷେତ୍ରର ଏପରି ନାମକରଣ କରାଯାଇପାରିଥିବ । Julius Lipner ଙ୍କର ଏକମତ ଏ ଦୃଷ୍ଟିରୁ ପ୍ରଣିଧାନ ଯୋଗ୍ୟ;

Mention of mangoes brings to mind the following example, taken from a newspaper report, which illustrates well the Hindu's penchant for perceiving the sacred in unexpected places. The report tells of a mango being discovered, still on its tree in what looked like human shape. People came from miles around to worship this chosen manifestation of the deity.

(୧୪) ଆଦିମ ଉପାସନା ସହିତ ଏହି ରହସ୍ୟମୟ ଆମ୍ରର କି ସମ୍ପର୍କ ଥିଲା (ବା ବୌଦ୍ଧ-ଶୈବ ଉପାସନା ସହିତ ଏହି ଏକକ ରହସ୍ୟମୟ ଆମ୍ରର କି ସମ୍ପର୍କ ଥିଲା) ତାହା ବର୍ତ୍ତମାନ ଜ୍ଞାନଦୃଷ୍ଟିରୁ ସ୍ଥିର କରିବା ଅସମ୍ଭବ ।

## ।। ତିନି ।।

### ତ୍ରିଭୁବନେଶ୍ୱର-କୃତିବାସ

ଏକାମ୍ର ପୁରାଣରେ ଏକାମ୍ରକ କ୍ଷେତ୍ରର ଏକ ସ୍ମରଣୀୟ ପର୍ଯ୍ୟାୟ (ଶୈବଧର୍ମ ସଂପ୍ରସାରଣ)ର ଚିତ୍ର ସଂଯୋଜିତ ହୋଇଛି । ଏହି ପର୍ଯ୍ୟାୟ ଗୌଡ଼ାଧିପ ଶଶାଙ୍କ

ଶାସନଠାରୁ ଆରମ୍ଭ ହୋଇଥିଲା । ଏକାମ୍ର ପୁରାଣରେ ଗୌଡ଼ାଧିପ ଶଶାଙ୍କ ଏକ ଶୈବମନ୍ଦିର ନିର୍ମାଣ କରିଥିବାର ସୂଚନା ରହିଛି । (୧୫) ଏହି କ୍ଷେତ୍ରର ମୁଖ୍ୟ ଦେବତା ହିସାବରେ ତ୍ରିଭୁବନେଶ୍ୱରଙ୍କୁ ପ୍ରତିଷ୍ଠା କରାଇବାରେ ଶଶାଙ୍କ ସଫଳ ହୋଇଥିଲେ । ଐତିହାସିକ ପାଣିଗ୍ରାହୀଙ୍କ ମତାନୁସାରେ ଖ୍ରୀଷ୍ଟୀୟ ସପ୍ତମ ଶତକ ପୂର୍ବରୁ ଭୁବନେଶ୍ୱରରେ ଅନେକ ଶୈବ ମନ୍ଦିର ନିର୍ମିତ ହୋଇଥିଲା; କିନ୍ତୁ ଶଶାଙ୍କଙ୍କ କାଳରୁ ତ୍ରିଭୁବନେଶ୍ୱର ମନ୍ଦିର ପ୍ରମୁଖ ମନ୍ଦିର ରୂପେ ସୁପରିଚିତ ହେଲା । (୧୬) ଶଶାଙ୍କ ରାଜତ୍ୱ କାଳରେ ଶୈବକ୍ଷେତ୍ର ଏକାମ୍ରକଠାରେ ସମସ୍ତ ବୌଦ୍ଧ କୀର୍ତ୍ତିର ଧ୍ୱଂସ କରାଯାଇ ବିଭିନ୍ନ ଶୈବପୀଠ ନିର୍ମାଣ ପାଇଁ ପ୍ରବଳ ଉଦ୍ୟମ କରାଯାଇଥିଲା ।

ଯଦିବା ଏକାମ୍ରକ କ୍ଷେତ୍ର ତ୍ରିଭୁବନେଶ୍ୱର ପୀଠ ରୂପେ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ ପରିଚିତ ଥିଲା, ସେତେବେଳେ ସ୍ଥାନର ନାମ ତ୍ରିଭୁବନେଶ୍ୱର-ଏକାମ୍ରକ ବ୍ୟତୀତ କୃତିବାସ କ୍ଷେତ୍ର ମଧ୍ୟ ଥିଲା । ଖ୍ରୀଷ୍ଟୀୟ ସପ୍ତମ-ଅଷ୍ଟମ ଶତକଠାରୁ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରାମାଣିକ ଉପାଦାନରେ ଏହି କୃତିବାସ ନାମ ମଧ୍ୟ ଦେଖିବାକୁ ମିଳେ । (୧୭) କୃତ୍ତିବାସ (କୃତିବାସ) ନାମଟି କାହିଁକି ଏହି କ୍ଷେତ୍ରର ମୁଖ୍ୟଦେବତା ନାମ ବୋଲି ଗ୍ରହଣ କରାଯାଇଥିଲା, ତାହାର ଆଲୋଚନା ଅପରିହାର୍ଯ୍ୟ ।

ଶୁକ୍ଲ ଯଜୁର୍ବେଦରେ କୃତ୍ତିବାସ ନାମକରଣ ସମ୍ପର୍କରେ ସୂଚନା ରହିଛି । (୧୮) ଏଥିରେ ଥିବା ବର୍ଣ୍ଣନା ଅନୁସାରେ କୃତ୍ତିବାସ କୃତ୍ତି (ଚର୍ମ) ଏବଂ ବାସ (ବସ୍ତ୍ର)ର ସମାହାରରେ ଗଠିତ ଏବଂ ଯେଉଁ ଦେବତାଙ୍କର ବାସ କୃତ୍ତି ତାହାଙ୍କୁ କୃତ୍ତିବାସ ନାମରେ ଗ୍ରହଣ କରାଯାଇଛି । ଏହି କୃତ୍ତିବାସ ନାମରୁ ଏକଥା ଜଣାଯାଏ ଯେ ଶିବ ଗଜାସୁରକୁ ହତ୍ୟା କରି ତାହାର ମୃତ୍ୟୁକାଳର ଅନୁରୋଧ ରକ୍ଷା କରି ତାହାର ଶରୀର (ଚର୍ମ କଳେବର)କୁ ବସ୍ତ୍ର ହିସାବରେ ପରିଧାନ କରିଥିଲେ ଏବଂ ସେଥିପାଇଁ କୃତ୍ତିବାସ ନାମରେ ପରିଚିତ ହୋଇଥିଲେ । ଏହି ବିବରଣୀ ସର୍ବଜନ ଗୃହୀତ ହୋଇଥିଲେ ମଧ୍ୟ ମଧ୍ୟଯୁଗୀୟ ଓଡ଼ିଶାର ପାରମ୍ପରିକ ବିବରଣୀରେ ଏହା ସ୍ଥାନପାଇନାହିଁ । ଏକାମ୍ରକ ଶିବଙ୍କର କୃତିବାସ ନାମକରଣର ଅନ୍ୟ ଏକ କାରଣ ଆମ ଜନଶ୍ରୁତିରେ ସ୍ଥାନ ପାଇଛି । ଏହି ବିବରଣୀକୁ ନେଇ ରଚିତ ସ୍ଥଳପୁରାଣ (ଏକାମ୍ର ପୁରାଣ, ସ୍ୱର୍ଣ୍ଣାଦ୍ରି ମହୋଦୟ) ଶିବଙ୍କର କୃତ୍ତିବାସ ନାମକରଣର ପ୍ରଥମ ପ୍ରସଙ୍ଗଟି ସହିତ ଅବଶ୍ୟ ପରିଚିତ ଥିଲେ । କିନ୍ତୁ ଏପରି ନାମକରଣକୁ ସେମାନେ ସନ୍ଦେହ କରିଥିଲେ । ସେମାନେ ଏକାମ୍ରକ-ଶିବଙ୍କର ଏହି ନାମକରଣର ରହସ୍ୟ ଉଦ୍‌ଘାଟନ କରିବାକୁ ଆଗ୍ରହ ପ୍ରକାଶ କରିଥିଲେ ।

ସେହି ଆଗ୍ରହ/ଅନୁସନ୍ଧାନରୁ ଏକ ନୂତନ ତଥ୍ୟ ଆବିଷ୍କୃତ ହୋଇଥିଲା । ଏକାମ୍ର ପୁରାଣରେ ସେହି ଭିନ୍ନ ବିବରଣୀଟି ନିମ୍ନ ପ୍ରକାରରେ ସ୍ଥାନ ପାଇଛି;

"ମାତଙ୍ଗ ନାମକ ଦୈତ୍ୟରାଜର ପୁତ୍ର ଥିଲା ଦ୍ରୁମିଳ । ଦ୍ରୁମିଳଙ୍କର ଏକ ଶତ ପୁତ୍ର ମଧ୍ୟରେ ପୃଥୁଲୋମା ଜ୍ୟେଷ୍ଠ ଥିଲେ; କୃତି ଏବଂ ବାସ ଅତ୍ୟନ୍ତ ପରାକ୍ରମଶାଳୀ ଥିଲେ । ରାଜା ଦ୍ରୁମିଳ ବ୍ରାହ୍ମଣମାନଙ୍କୁ ସନ୍ତୁଷ୍ଟ କରି ଏକ ବର ଲାଭ କରିଥିଲେ । ଏହି ବର ଅନୁସାରେ ତାଙ୍କ ଦୁଇ ପୁତ୍ର କୃତି ଏବଂ ବାସ କୌଣସି ପୁରୁଷ ଦ୍ୱାରା ନିହତ ହୋଇପାରିବେ ନାହିଁ । କୃତି ଏହା ଫଳରେ ଭୟଙ୍କର ହୋଇ ନିଜ ଭ୍ରାତାମାନଙ୍କର ନିଧନ ପାଇଁ ଯୋଜନା କଲେ । ବନ୍ୟପଶୁ ଶିକାର ଆଳରେ ନିଜ ଭାଇମାନଙ୍କୁ ନେଇ ବନକୁ ଗଲେ ଏବଂ ଯେତେବେଳେ ସେମାନେ କ୍ଳାନ୍ତ, କ୍ଷୁଧାତୁର ସେମାନଙ୍କ ମଧ୍ୟରୁ ଦଶଜଣଙ୍କୁ ସେଠାରେ ହତ୍ୟା କଲେ । ଦ୍ୱିତୀୟବାର ସେହିପରି ଅବଶିଷ୍ଟ ଭାଇମାନଙ୍କୁ ନେଇ ବଣରେ ଅନ୍ୟ ଦଶଜଣଙ୍କୁ ହତ୍ୟା କଲେ । ଏହିପରି ଭ୍ରାତୃହତ୍ୟା ଚାଲିଲା । ଯେତେବେଳେ ସେମାନଙ୍କର ବ୍ୟଥିତା ମାତା ପୁତ୍ରମାନଙ୍କ କଥା ପଚାରନ୍ତି, ସେତେବେଳେ ଏକ ପ୍ରତାରଣାପୂର୍ଣ୍ଣ କଥାଦ୍ୱାରା ଦୁଇଭାଇ ଅସଲ ବକ୍ତବ୍ୟକୁ ଏଡାଇ ଦିଅନ୍ତି । ରାଜା ଦ୍ରୁମିଳ ଭ୍ରାତୃହତ୍ୟା କରିଥିବାର ସନ୍ଦେହ କରି ନିଜର ସୈନ୍ୟବଳକୁ ଦୁଇଭାଇଙ୍କୁ ହତ୍ୟା କରିବାକୁ ନିର୍ଦ୍ଦେଶ ଦେଇଥିଲେ । ତାଙ୍କର ଦୁଇଟି ସେନାପତି ଉଗ୍ରଶର୍ମା ଏବଂ କୁବଳ କୃତିବାସ ବିରୁଦ୍ଧରେ ପ୍ରବଳ ସଂଗ୍ରାମ କରି ନିହତ ହୋଇଥିଲେ । ନିଜର ଦକ୍ଷ ସେନାପତିଦ୍ୱୟ ନିହତ ହେବା ଫଳରେ ରାଜା ଦ୍ରୁମିଳ ଏବଂ ତାଙ୍କ ଜ୍ୟେଷ୍ଠ ପୁତ୍ର ପୃଥୁଳ କୃତ୍ତି ଏବଂ ବାସଙ୍କୁ ସୈନ୍ୟବଳ ଦ୍ୱାରା ଆକ୍ରମଣ କଲେ ଏବଂ ସେ ଦୁଇଜଣଙ୍କୁ ରାଜ୍ୟର ବହୁ ଦୂରକୁ ତଡି ଦେଲେ । କୃତ୍ତି ଏବଂ ବାସ ଏଣେ ତେଣେ ଭ୍ରମଣ କରି ଏକାମ୍ର ନାମକ ସ୍ଥାନକୁ ଆସିଲେ । ସେମାନେ ଏକାମ୍ରକୁ ଆସିବା କାଳରେ ପାର୍ବତୀ ଶିବଙ୍କର ଆଜ୍ଞାନୁସାରେ ଏକ ଗୋପାଳୁଣୀ ବେଶରେ ରହୁଥିଲେ ଏବଂ ପ୍ରତ୍ୟହ ଗୋସହସ୍ରେଶ୍ୱର-ଶିବଲିଙ୍ଗ ଉପାସନା କରୁଥିଲେ । ଘଟଣାକ୍ରମେ ଦୁଇ ଭାଇ ଗୋପାଳୁଣୀକୁ ଦେଖି ତାହାର ରୂପରେ ମୁଗ୍ଧ ହୋଇଗଲେ ଏବଂ ତାହାକୁ ବିବାହ କରିବାକୁ ମନସ୍ଥ କଲେ । ଗୋପାଳୁଣୀ ସଙ୍ଗେ ସଙ୍ଗେ ଶିବଙ୍କୁ ଭେଟି ଦୈତ୍ୟଭ୍ରାତା ଦ୍ୱୟଙ୍କର ମନ୍ଦଇଚ୍ଛା ଜଣାଇ ଦେଲେ । ଏ ଦୁଇଜଣ ପୁରୁଷଦ୍ୱାରା ନିଧନ ହୋଇପାରିବେ ନାହିଁ ବୋଲି ବରଲାଭ କରିଥିବାରୁ ପାର୍ବତୀ (ଜଣେ ନାରୀ ହିସାବରେ) ସେ ଦୁଇଜଣଙ୍କୁ ହତ୍ୟାକରି ଦେବମାନବ ସମାଜର ପ୍ରଭୁତ କଲ୍ୟାଣ କରିପାରିବେ ବୋଲି ଶିବ ପ୍ରକାଶ

କଲେ । ଶିବଙ୍କ ପରାମର୍ଶ ଅନୁସାରେ ପାର୍ବତୀ (ଗୋପାଳୁଣୀ ରୂପରେ) ଦୁଇ ଭାଇଙ୍କୁ ନିଜ ନିଜର ସ୍କନ୍ଧରେ ବହନ କରିବାକୁ ଅନୁରୋଧ କରିବେ ଏବଂ ଏହିପରି ସ୍କନ୍ଧରେ ଉପଦେଶନ କରି ଉପରୁ ଚାପ ପକାଇ ସେମାନଙ୍କୁ ହତ୍ୟା କରି ପାରିବେ । ଶିବଙ୍କର ଏହି ପରାମର୍ଶ କାର୍ଯ୍ୟକାରୀ ହେଲା ଏବଂ ଉଭୟ ଦୈତ୍ୟ ପାର୍ବତୀ/ଗୋପାଳୁଣୀ ଚାପରେ ଚାପି ହୋଇ ମରିଗଲେ । ସେହି ସ୍ଥାନରେ ଜଳ ଦେଖାଗଲା ଏବଂ ସ୍ଥାନଟିକୁ ଦେବୀ-ପାଦ-ହରା ବୋଲି କୁହାଗଲା । କୃତ୍ତିବାସ ଦୈତ୍ୟଙ୍କୁ ଏହିପରି କୌଶଳରେ ନିଧନ କରାଇଥିବାରୁ ଶିବ କୃତ୍ତିବାସ ନାମରେ ପରିଚିତ ହେଲେ । (୧୯)

ଏହି ଜନଶ୍ରୁତିଭିତ୍ତିକ ବିବରଣୀରେ ଐତିହାସିକ ଧାରା ଥିବାର ଲକ୍ଷ୍ୟ କରି ସ୍ୱର୍ଗତଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମତ ପ୍ରକାଶ କରିଥିଲେ;

Many of names given in the story sound like those of the Chalukya kings. The original names have either been corrupted or purposely distorted to suit the exigencies of a mythological story. xxx We can hardly expect from a mythological story the order or chronological scquence in which the Chalukya kings appear in their inscriptions, but these activities at Ekamra, when they occupied or attempted to occupy Orissa, descended to posterity as distant eehoes which have formed the basis of the mythological story. (20)

କିନ୍ତୁ କୃତ୍ତିବାସ ନାମ ସମ୍ପର୍କିତ ଜନଶ୍ରୁତିଭିତ୍ତିକ ବିବରଣୀକୁ ଏହିପରି ବିଶ୍ଳେଷଣ କରି ଏକାମ୍ରକ କ୍ଷେତ୍ରର ମୁଖ୍ୟଦେବତା ଶିବଙ୍କର ନାମ କୃତିବାସ ଥିବାର କଥାକୁ ଗ୍ରହଣ କରି ହେବନାହିଁ । ଏକାମ୍ର ପୁରାଣର ଲେଖକ ସପ୍ତମ ଶତାବ୍ଦୀରେ ଭୁବନେଶ୍ୱରରେ ଘଟିଥିବା ଏକ ଘଟଣା ସହିତ ସୁପରିଚିତ ଥିଲେ ବୋଲି ପାଣିଗ୍ରାହୀ ଯେଉଁ ଅନୁମାନ କରିଛନ୍ତି ତାହା ଅବାସ୍ତବ ନୁହେଁ । ତଥାପି କୃତ୍ତିବାସ ନାମକରଣ ଏହି ଧାରଣାରୁ ହୋଇଥିଲା ବୋଲି ଏ ଲେଖକ ଗ୍ରହଣ କରିବାକୁ କୁଣ୍ଠିତ ହୁଏ । ଐତିହାସିକ ଦୃଷ୍ଟିକୋଣରୁ ଜନଶ୍ରୁତିର ବିଶ୍ଳେଷଣ କରିବାକୁ ଯାଇ ଏହି ପୀଠର ମୁଖ୍ୟଦେବତାଙ୍କ ନାମ କାହିଁକି କୃତ୍ତିବାସ ହେଲା ତାହା ପାଣୀଗ୍ରାହୀ ସୂଚାଇ ନାହାନ୍ତି । ଏହିପରି ନାମକରଣର କି ଆବଶ୍ୟକତା ଥିଲା ତାହା ମଧ୍ୟ ଏ ବିଶ୍ଳେଷଣରୁ ଜଣାଯାଏ ନାହିଁ । ଜନଶ୍ରୁତିର ମୁଖ୍ୟ ଉଦ୍ଦେଶ୍ୟ ନଥିଲା ଚାଲୁକ୍ୟ, ଶଶାଙ୍କ ଏବଂ କାମରୂପ ନରେଶ ପରି ତ୍ରିଶକ୍ତିଙ୍କର ସପ୍ତମ ଶତକରେ ଭୁବନେଶ୍ୱରରେ ଯୁଦ୍ଧର ବିବରଣୀ ଦେବା । ଜନଶ୍ରୁତିର ମୁଖ୍ୟ ଉଦ୍ଦଶ୍ୟ ଥିଲା ଏକାମ୍ରକାଧିପତି ଶିବକୃତ୍ତିବାସ ନାମକରଣର ରହସ୍ୟ ଉଦ୍‌ଘାଟନ । ଶତାବ୍ଦୀ ଶତାବ୍ଦୀ

ଧରି ଶିବଙ୍କର ଏକାମ୍ର କ୍ଷେତ୍ରରେ ଏହି କୃତ୍ତିବାସ ନାମ ସୁପରିଚିତ ଥିଲା । ଏଣୁ ସତ୍ୟାନୁରୋଧରେ ଜନଶ୍ରୁତିକୁ ଅଧିକ ସତର୍କତାର ସହିତ ବିଶ୍ଳେଷଣ କରିବା ଆବଶ୍ୟକ ।

ସମ୍ଭବତଃ ଏହି ଜନଶ୍ରୁତି ଭିତ୍ତିକ ବିବରଣୀରେ ଏକାମ୍ର କ୍ଷେତ୍ରକୁ ଏକଦା କିପରି ଶିବ ଉପାସନା ପାଇଁ ବ୍ୟବହାର କରାଗଲା ଏବଂ ଏକାମ୍ର ମଧ୍ୟରେ ଥିବା ଏକ ନିର୍ଦ୍ଦିଷ୍ଟ ପ୍ରସିଦ୍ଧ ସ୍ଥଳକୁ ମୁଖ୍ୟଦେବତା ଶିବଙ୍କର ପୀଠ ରୂପେ ଗ୍ରହଣ କରିବା ପର୍ଯ୍ୟାୟ ସାଙ୍କେତିକ ଭାବରେ ରୂପ ଦିଆଯାଇଅଛି । ଏହି ବିବରଣୀ ପାର୍ବତୀ ଗୋପାଳୁଣୀ ବେଶରେ ଏବଂ ଦୈତ୍ୟରାଜ କୃତ୍ତିବାସ ମଧ୍ୟରେ ବିବାହକୁ ଉପସ୍ଥାପିତ କରେ । ସମ୍ଭବତଃ ଏକାମ୍ରକ ଶିବ କ୍ଷେତ୍ର ରୂପେ ପରିଚିତ ହେବା ମୂଳରେ ବୌଦ୍ଧ/ଶାକ୍ତ ତଥା ଅଣଆର୍ଯ୍ୟ ଆଦିମ ଧର୍ମତତ୍ତ୍ୱ ମଧ୍ୟରେ ସଂଘର୍ଷ ହିଁ ବର୍ତ୍ତମାନ । ଏହିପରି ବୌଦ୍ଧ-ଶାକ୍ତ-ଅଣ ଆର୍ଯ୍ୟ ଧର୍ମ ସମ୍ପ୍ରଦାୟର ବିବାଦରୁ ଶୈବଧର୍ମ ସୁଯୋଗ ନେଇ ଏକାମ୍ରକ ଠାରେ ପ୍ରସିଦ୍ଧ ହେଲା । ବିବରଣୀରେ ବର୍ଣ୍ଣିତ ବିବାଦରେ ନିଜେ ଶିବ କୌଣସି ପକ୍ଷରେ ନଥିଲେ । ବୌଦ୍ଧ-ଶାକ୍ତ ବିବାଦରେ ଶାକ୍ତ ବିଜୟ ପରେ ଶାକ୍ତମାନଙ୍କର ଅଣଆର୍ଯ୍ୟ ସମ୍ପ୍ରଦାୟର ସଂଗ୍ରାମରେ ଶାକ୍ତମାନଙ୍କର ବିଜୟପରେ, ଶୈବମାନେ ଶାକ୍ତମତକୁ ସ୍ୱାୟତକୁ ଆଣି କ୍ଷେତ୍ରକୁ ଅଧିକାର କଲେ । ଅଣଆର୍ଯ୍ୟ ପୀଠ (କୃତ୍ତିବାସ ଅଞ୍ଚଳ) ଶୈବ ଉପାସନାର ସ୍ଥଳ ରୂପେ ସୁପରିଚିତ ହେଲା । ଏହି ସ୍ଥଳଟି (ଏକାମ୍ରକ ମଧ୍ୟରେ ନିର୍ବାଚିତ ଶ୍ରେଷ୍ଠ ସ୍ଥାନ) ପ୍ରଥମେ ଏକ ଅଣଆର୍ଯ୍ୟ ଆଦିମଗୋଷ୍ଠୀ ଆୟତ୍ତରେ ଥିଲା ଏବଂ ଏହି ଆଦିମ ଅଞ୍ଚଳ ମଧ୍ୟରେ ମୁଖ୍ୟ ଉପାସ୍ୟ ଦେବତା/ବସ୍ତୁଥିଲେ ଏକ ପ୍ରାକୃତିକ ଶିଳା (Natural Stone) ଯାହାଙ୍କୁ ଶୈବମାନେ ଆପଣାର ସ୍ୱୟମ୍ଭୂଲିଙ୍ଗ ବୋଲି ବହୁକାଳରୁ ଦାବୀ କରୁଥିଲେ । କିନ୍ତୁ ଏହା ପ୍ରଥମରୁ ଆଦିମ ଅଣ ଆର୍ଯ୍ୟ ଆୟତ୍ତରେ ଉପାସନାର ବସ୍ତୁ ହୋଇଥିବାରୁ ଶୈବମାନଙ୍କର ଦାବୀ ପୁରଣ ହୋଇପାରୁ ନଥିଲା । ସମୟକ୍ରମେ ବୌଦ୍ଧ-ଶାକ୍ତମାନେ ଏହି କ୍ଷେତ୍ର ଉପରେ ଅଧିକାର ପାଇଁ ସଂଘର୍ଷ ଚଳାଇଥିଲେ । ଶୈବମାନେ ଏପରି ଏକ ପ୍ରାକୃତିକ ଶିଳା ଯୁଗଯୁଗ ଧରି ପୂଜିତ ହେଉଥିବାର ଲକ୍ଷ୍ୟ କରି ଏହାକୁ ସ୍ୱୟମ୍ଭୂ ଲିଙ୍ଗ ରୂପେ ଗ୍ରହଣ କରି ସ୍ଥାନଟିକୁ ଆପଣାର ଉପାସନାର ପୀଠରେ ପରିଣତ କରିବାକୁ ଉଦ୍ୟମ କରିଥିବେ । ସେମାନେ ଏହି ସୁଯୋଗ ଏକାମ୍ରକରେ ବୌଦ୍ଧ-ଶାକ୍ତ-ଅଣଆର୍ଯ୍ୟ ଆଦିମ ଗୋଷ୍ଠୀର ସଂଘର୍ଷ କାଳରେ ସହଜରେ ପାଇଗଲେ । ଶୈବମାନେ ଚତୁରତାର ସହିତ ଏହି ବିବାଦକୁ ବ୍ୟବହାର କରି ଏହି ସ୍ଥଳକୁ ଆପଣାର

ଉପାସ୍ୟ ଦେବତାର ପୀଠ ରୂପେ ସ୍ୱୀକାର କଲେ । କ୍ଷେତ୍ରକରଣ (Ksetraization) ର ଏହା ଏକ ଚମତ୍କାର ଉଦାହରଣ । ସମ୍ଭବତଃ ଏକାମ୍ରକଠାରେ ପ୍ରାଚୀନ କାଳର ଏହି ବିବାଦ ଏବଂ ଶୈବମାନଙ୍କର କ୍ଷେତ୍ର ଅଧିକାର ପାଇଁ ନୀରବ ପ୍ରଚେଷ୍ଟା ଲୋକମାନଙ୍କ ମଧ୍ୟରେ ପ୍ରଚାରିତ ହେଲା ଏବଂ ସପ୍ତମ ଶତାବ୍ଦୀରେ ଚାଲୁକ୍ୟ-ଗୌଡ଼-କାମରୂପ ରାଜାଙ୍କର ଏହି କ୍ଷେତ୍ରରେ ସଂଗ୍ରାମପରେ ଶିବ ପୂଜିତ ହେବାପରେ (ବା ମୁଖ୍ୟ ଦେବତା ରୂପେ ସ୍ୱୀକୃତ ହେବାପରେ) ଏପରି ଜନଶ୍ରୁତିର ସମ୍ପ୍ରସାରଣ ଘଟିଲା । ପରେ ଶିବଙ୍କର ଗଜାସୁର ନିଧନ ମଧ୍ୟ ସାଙ୍କେତିକ ଭାବରେ ଜନଶ୍ରୁତିରେ ସ୍ଥାନ ପାଇଗଲା । ତେବେ କୃତ୍ତିବାସ ନାମକରଣର ଅନ୍ୟ ଏକ ରହସ୍ୟ ଏଠାରେ ପ୍ରକାଶ କରାଯାଉଛି ।

ସମ୍ଭବତଃ ଏକାମ୍ରକର ଏକ ସ୍ଥଳରେ ଘଞ୍ଚ ଅରଣ୍ୟ ବହୁ ପ୍ରାଚୀନ କାଳରେ ଥିଲା । ସେଠାରେ ଏକ ପ୍ରକାର ବୃକ୍ଷ ପ୍ରବଳ ଭାବରେ ଦେଖିବାକୁ ମିଳୁଥିଲା । ସେହି ବୃକ୍ଷକୁ ବା ତାହାର ବକଳକୁ କୃତ୍ତି ବୋଲି କୁହାଯାଉଥିଲା । (୨୧) ପ୍ରାଚୀନ କାଳରେ ଶବର ପରି ଲୋକମାନେ ଏହି କ୍ଷେତ୍ରର ପ୍ରାକୃତିକ ଶିଳାକୁ କୃତ୍ତି ଦ୍ୱାରା ଆବୃତ କରି ପୂଜା କରୁଥିଲେ । ଏହିପରି କୃତ୍ତିର ବକଳ ଦ୍ୱାରା ଆବୃତ୍ତ ଉପାସ୍ୟ ପ୍ରାକୃତିକ ଶିଳାକୁ ଶୈବମାନେ ସ୍ୱୟମ୍ଭୂଲିଙ୍ଗ ବୋଲି ଗ୍ରହଣ କରି ଏହାକୁ କୃତିବାସ ବୋଲି କହୁଥିଲେ । ଖ୍ରୀଷ୍ଟୀୟ ସପ୍ତମ ଶତକ ପରେ ଏହି ନାମ ଅତ୍ୟନ୍ତ ଜନପ୍ରିୟ ଥିଲା ଏବଂ ସେତେବେଳେ ଶୈବମାନେ ଏକାମ୍ରକ ଠାରେ ପ୍ରତିଷ୍ଠିତ ହୋଇଯାଇଥିଲେ । ଯେହେତୁ ସେଠାରେ କୃତ୍ତି ବୃକ୍ଷ ପ୍ରବଳ ବଢ଼ିଥିଲା ଏବଂ ଉପାସ୍ୟ ପ୍ରାକୃତିକ ଶିଳା ଏହି ବୃକ୍ଷର ବକଳ ଦ୍ୱାରା ଆଚ୍ଛାଦିତ ହୋଇ ଶବରମାନଙ୍କ ଦ୍ୱାରା ଉପାସିତ ହେଉଥିଲା, ତେଣୁ ଶୈବମାନେ ସେହି ପ୍ରାଚୀନ ସ୍ମୃତିକୁ ପରିତ୍ୟାଗ ନକରି କୃତ୍ତିବାସ ବୋଲି ମଧ୍ୟ ଶିବଙ୍କୁ ସେଠାରେ ମୁଖ୍ୟ ଦେବତା ହିସାବରେ ପୂଜା କଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଶିବଙ୍କ ଦ୍ୱାରା ଦୈତରାଜ ଗଜାସୁର ବଧ, ଏକାମ୍ରକଠାରେ ଭିନ୍ନ ଭିନ୍ନ ଧର୍ମ ସଂପ୍ରଦାୟମାନଙ୍କର ବିବାଦ ଛାୟାରେ କୃତ୍ତିବାସ ଜନଶ୍ରୁତି (ଏକାମ୍ର ପୁରାଣ ଗର୍ଭିତ)ର ଉଦ୍ଭବ ଓ ବିକାଶ ଘଟିଥିଲା । ଏକାମ୍ର ପୁରାଣରେ ଏକଦା ଏକାମ୍ରକର ଏକ ଅଂଶରେ ଶବରମାନେ ଅତ୍ୟନ୍ତ ଶକ୍ତିଶାଳୀ ଥିଲେ ବୋଲି ସେମାନଙ୍କର ପ୍ରତିନିଧି ବଡୁ ନାମକ ଉପାସକ (ଶୈବ ପିତା ଏବଂ ଶବର ମାତାଠାରୁ ଜାତ) ଲିଙ୍ଗରାଜ ମନ୍ଦିରରେ ସେବା ପୂଜା ଅଧିକାର ପାଇଥିବାର ବର୍ଣ୍ଣନା ଅଛି । (୨୨) ଏଥିରୁ ଜଣାଯାଏ ଯେ ହୁଏତ ଅତୀତରେ ଏହି

କ୍ଷେତ୍ରର ମୁଖ୍ୟ ଉପାସ୍ୟ ଦେବତା ଶବରମାନଙ୍କ ଆୟତ୍ତରେ ଥିଲେ ଏବଂ ପରେ ଶୈବମାନେ ଉପାସ୍ୟ ଦେବତାଙ୍କୁ କୃତ୍ତିବାସ-ତ୍ରିଭୁବନେଶ୍ୱର ନାମରେ ପୂଜା କରିବା ପରେ ପ୍ରଥମରୁ ପରିଚିତ ପୂଜକ ବଡୁମାନଙ୍କୁ ମଧ୍ୟ ଏଥିରେ ଅଧିକାର ଦିଆଯାଇଥିଲା । କୃତ୍ତିବାସଙ୍କ ନାମକରଣ ଏବଂ ବଡୁମାନଙ୍କର ସେଠାରେ ସେବା ପୂଜା ଅଧିକାରରୁ ଏ କଥା ଅନୁମାନ କରାଯାଇପାରେ ଯେ ଏକାମ୍ରକର ଶବର ଉପାସିତ କୃତ୍ତି ଆଚ୍ଛାଦିତ ପ୍ରାକୃତିକ ଶିଳା ପରେ କୃତ୍ତିବାସ-ତ୍ରିଭୁବନେଶ୍ୱର ନାମରେ ପରିଚିତ ହେଲା । ଏକାମ୍ର ପୁରାଣରେ ସେହି ଅତୀତର ଛାୟା ହିଁ ପ୍ରକାଶିତ ।

କୃତ୍ତିବାସ ଏକାମ୍ରର ମୁଖ୍ୟ ଧର୍ମସ୍ଥଳ ଏବଂ ଏହି ମୁଖ୍ୟ ଉପାସ୍ୟ ଦେବତା କୃତ୍ତିବାସ/କୃତିବାସ ଭଟ୍ଟାରକା/ କୃତ୍ତିବାସେଶ୍ୱର ହିସାବରେ ପରିଚିତ ହେଲା । (୨୩) ଗଙ୍ଗ ରାଜତ୍ୱ କାଳରେ ୧୨୭୮ ଖ୍ରୀଷ୍ଟାବ୍ଦପରେ ଏହି ଏକାମ୍ରକ ଶୈବକ୍ଷେତ୍ରକୁ ଭୁବନେଶ୍ୱର ବୋଲି ପ୍ରକାଶ କରାଯାଇଥିଲା; ଏହାଦ୍ୱାରା ସମସ୍ତ ଏକାମ୍ରକ ଭୁବନରେ ଶୈବ ପୀଠ ନିର୍ମିତ ହୋଇଗଲା । (୨୪) ଗଙ୍ଗ-ଗଜପତି ଶିଳାଲିପି, ଏକାମ୍ର ପୁରାଣ, ଶାରଳା ମହାଭାରତରେ ଭୁବନେଶ୍ୱର ନାମର ସୂଚନା ରହିଛି । (୨୫)

॥ ଚାରି ॥

ଗଙ୍ଗରାଜତ୍ୱ କାଳରେ ଓଡ଼ିଶାର ବିଭିନ୍ନ ଧର୍ମକ୍ଷେତ୍ରର ଅଗ୍ରଗତି ପାଇଁ ରାଜଶକ୍ତି ସେବକଶକ୍ତି ଉଦ୍ୟମ ଚଳାଇଥିଲେ । ସେତେବେଳେ ଏକାମ୍ର ପୁରାଣ ଏହି ସ୍ଥଳର ଇତିହାସ ଉପରେ ଆଲୋକପାତ କଲା । ଏକାମ୍ରପୁରାଣରେ ସ୍ଥାନର ମୁଖ୍ୟଦେବତା ଭୁବନେଶ୍ୱର ବ୍ୟତୀତ ଲିଙ୍ଗରାଜ ବୋଲି ପ୍ରକାଶ କରାଗଲା । ମୂଳ ଶିବ ପୁରାଣରେ ଏକାମ୍ରକ କ୍ଷେତ୍ର ଭାରତବର୍ଷରେ ଖ୍ୟାତିଲାଭ କରିଥିବା ଦ୍ୱାଦଶ ଜ୍ୟୋତି ଲିଙ୍ଗ ମଧ୍ୟରେ ନଥିଲେ ।

୧. ସୌରାଷ୍ଟ୍ର-ସୋମନାଥ
୨. ଶ୍ରୀଶୈଳ-ମଲ୍ଲିକାର୍ଜ୍ଜୁନ
୩. ଉଜ୍ଜୟିନୀ-ମହାକାଳେଶ୍ୱର
୪. ଓଁକାର-ଅମରେଶ୍ୱର
୫. ହିମାଳୟ-କେଦାରେଶ୍ୱର
୬. ସେତୁବନ୍ଧ-ରାମେଶ୍ୱର
୭. ଦାକ୍ଷିଣାତ୍ୟ-ରାମଶଙ୍କର

୮. କାଶୀ-ବିଶ୍ୱନାଥ
୯. ଗୌତମୀତଟ-ଅମୂକ
୧୦. ଚିତାଭୂମି-ବୈଦ୍ୟନାଥ
୧୧. ଦାରୁକବନ-ନାଗେଶ
୧୨. ଶିବାଳୟ-ଘୁଷ୍ମେଶ୍ୱର

ଏ ସମସ୍ତ ସ୍ଥାନରେ ଲିଙ୍ଗପୂଜା ପ୍ରସିଦ୍ଧ ଥିଲା । ମାତ୍ର ଏ ସମସ୍ତ ଲିଙ୍ଗପୀଠ ମଧ୍ୟରେ ଏକାମ୍ରକର ଲିଙ୍ଗ ସ୍ଥାନ ପାଇ ନଥିବାରୁ ଏକାମ୍ରକ ଶିବ-ଲିଙ୍ଗର ପ୍ରାଧାନ୍ୟ ପାଇଁ ଏହାକୁ ଲିଙ୍ଗରାଜ ବୋଲି ପ୍ରକାଶ କରାଗଲା । ଏହାଦ୍ୱାରା କୃତ୍ତିବାସ-ଭୁବନେଶ୍ୱର ପୀଠର ପ୍ରାଧାନ୍ୟ ଭାରତବର୍ଷରେ ପ୍ରଚାରିତ ହୋଇଗଲା । ସ୍ୱର୍ଣ୍ଣାଦ୍ରି ମହୋଦୟରେ ତେଣୁ ପ୍ରକାଶ କରାଯାଇଥିଲା ।

''ଯାନି ବ୍ରହ୍ମନ୍‌ପଦ୍ମଯୋନେ ତ୍ୱୟୈ
ତତ୍ ଜ୍ୟୋତିର୍ଲିଙ୍ଗାନ୍ୟର୍ଜିତାନି ପୃଥ୍ବ୍ୟାଂ
ତାନ୍ୟେତସ୍ୟତ୍ୱଂଶଭୂତାତି ବିଦ୍ଧି
ତକ୍ରଳଂ ଶ୍ରୀଭୁବନେଶଂ ଚ ଲିଙ୍ଗଂ
ଲିଙ୍ଗାନାଂ ବୈଜ୍ୟୋତିଷାଂ ଦ୍ୱାଦଶାନାଂ
ରାଜହେ ତସ୍ୟଂସ୍ଥିତଂ ଲିଙ୍ଗରାଜଂ''

ଶୈବକ୍ଷେତ୍ର ଲିଙ୍ଗରାଜ ଏହିପରି ବିଭିନ୍ନ ପର୍ଯ୍ୟାୟରେ ଏକ ସୁପ୍ରସିଦ୍ଧ ଧର୍ମସ୍ଥଳ ରୂପେ ପରିଚିତ ହୋଇଥିଲା । ଆଜି ମଧ୍ୟ ଏହାର ବୈଶିଷ୍ଟ୍ୟ ଅପସରିଯାଇ ନାହିଁ ।

---

### ପ୍ରସଙ୍ଗ ନିର୍ଦ୍ଦେଶ


୧. ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର, Archaeological Remains at Bhubaneswar, 1961/1981, Kitab Mahal, Cuttack ଦେହେଜିଆ, ବିଦ୍ୟା, Early Stone Temples of Orissa, 1979, Vikas Publishing House, Delhi. ଡୋନାଲ୍ଡ୍‌ସନ୍, ଟମାସ, Hindu Temple Art of Orissa, Vol. I, II and III, 1987, Leiden.

୨. ଦାଶ, ସୂର୍ଯ୍ୟନାରାୟଣ, ''ଭୁବନେଶ୍ୱରରେ ଚୋଡ଼ଗଙ୍ଗଦେବଙ୍କ ଶିଳାଲିପି'' ଝଙ୍କାର, ଜୁଲାଇ, ୧୯୫୩, ପୃ - ୩୫୩-୫୬ । ସରକାର, ଦିନେଶ ଚନ୍ଦ୍ର, "Bhubaneswar inscriptions of Anantavarma Chodaganga", Epigraphia Indica (ଏହାପରେ ସର୍ବତ୍ର ସୂଚିତ EI), Vol. XXX, I (1953), p. 29-32.

ରାଜଗୁରୁ, ସତ୍ୟନାରାୟଣ; Inscriptions of Orissa (ed.), Vol.III, part - I and II, Vol - V, part - I, II and III.

ତ୍ରିପାଠୀ, ସ୍ନିଗଧା, "Ekamra-Bhubaneswar", Orissa Historical Research Journal (ଏହାପରେ ସୂଚିତ OHRJ), VOL. XXXII, No. I and II, p.133-155.

୩. ଭୁବନେଶ୍ୱରର ସ୍ୱର୍ଣ୍ଣକୂଟଗିରି ନାମ ଏକାମ୍ର ପୁରାଣ, ସ୍ୱର୍ଣ୍ଣାଦ୍ରି ମହୋଦୟ ଏବଂ ସାରଳା ମହାଭାରତରେ ସୂଚିତ ହୋଇଥିଲେ ମଧ ଗଙ୍ଗ-ଗଜପତି ଶିଳାଲିପି-ତାମ୍ରଲେଖରେ ଏ ନାମ ବ୍ୟବହାର ହୋଇନାହିଁ ।

୪. କ୍ରମିକ ନମ୍ବର - ୨ ଦ୍ରଷ୍ଟବ୍ୟ ।

୫. ଧଳ, ଉପେନ୍ଦ୍ର ନାଥ, (ସମ୍ପାଦକ), The Ekamra Puranam (Critical Edition), Nag Publishers, Delhi, 1986, p. 104 (ଚତୁର୍ଦ୍ଦଶ ଅଧ୍ୟାୟ)

୬. ତତ୍ରୈବ; ପୃ - ୧୨୯ (ସପ୍ତଦଶ ଅଧ୍ୟାୟ)

୭. ରଥ, ଗୋବିନ୍ଦ, (ସମ୍ପାଦକ), ସ୍ୱର୍ଣ୍ଣାଦ୍ରି ମହୋଦୟ, ୧୯୦୩ (Edward Press), ପୃ - ୩

୮. ସରକାର, ଦିନେଶ ଚନ୍ଦ୍ର, "Two plates from Kanas", E9, Vol. XXVIII, p.331.

ତ୍ରିପାଠୀ, ସ୍ନିଗ୍ଧା, "Anugul copper plate grant of Santikara Deva", E9, Vol. XL, part - III, p.113-118.

୯. E9, Vol. XXVIII, p.331.

୧୦. ତତ୍ରୈବ; ପୃ-୩୩୦

୧୧. ଧଳ, ଉପେନ୍ଦ୍ର ନାଥ (ସମ୍ପାଦକ), ପୂର୍ବୋକ୍ତ ପୁସ୍ତକ, ପୃ-୧୨୯, ପୃ - ୧୫୭ (ଏକବିଂଶ ଅଧ୍ୟାୟ)

୧୨. Inscriptions of Orissa, Vol. V, part. I, p.212.

୧୩. ମହାପାତ୍ର, କେଦାରନାଥ, ''ଭୁବନେଶ୍ୱର ପ୍ରାଚୀନ ନାମ ସକଳ'', ଉତ୍କଳ ସାହିତ୍ୟ, ଏପ୍ରିଲ, ୧୯୪୧ । ପୃ. ୫୨୪-୫୨୫ ।

୧୪. Lipner, Julius, Hindus, Their religious beliefs and practices, 1994, Routledge, II New Fetter Lane, London p.290.

୧୫. ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର, ପୂର୍ବୋକ୍ତ ପୁସ୍ତକ, ପୃ-୨୯-୩୨

୧୬. ତତ୍ରୈବ ।

୧୭. କ୍ରମିକ ନମ୍ବର - ୨ ଦ୍ରଷ୍ଟବ୍ୟ ।

୧୮. ବିଶ୍ୱକୋଷ (ନଗେନ୍ଦ୍ର ନାଥ ବସୁ ସମ୍ପାଦିତ)ରେ କୃତ୍ତିବାସ ଶବ୍ଦ ଅର୍ଥରେ ପ୍ରକାଶ କରାଯାଇଛି ।
ତ୍ରିପାଠୀ, ସ୍ନିଗ୍ଧା, OHRJ, Vol. XXXII, No.I and II. p. 146.

୧୯. ପାଣିଗ୍ରାହୀ, ପୂର୍ବୋକ୍ତ ପୁସ୍ତକ, ପୃ-୨୨୦-୨୨୨ ।

୨୦. ତତ୍ରୈବ; ପୃ ୨୨୨-୨୨୩ ।

୨୧. Sanskrit English Dictionary, ed. Monier Williams, 1987, p.304.
କୃତ୍ତିର ଅର୍ଥ ଏକ ବୃକ୍ଷ (Birch tree, Betula). A forest tree with smooth white bark and very durable wood-Betula)

୨୨. ଧଳ, ଉପେନ୍ଦ୍ର ନାଥ (ସମ୍ପାଦନା), ଏକାମ୍ର ପୁରାଣ, ପୃ. ୪୨୦-୪୨୫, ୬୨ ଅଧ୍ୟାୟ ।
ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର, History of Orissa (Hindu period), 1981, p. 343-44.

୨୩. କ୍ରମିକ ନମ୍ବର - ୨ ଦ୍ରଷ୍ଟବ୍ୟ

୨୪. ଅନନ୍ତ ବାସୁଦେବ ମନ୍ଦିର ୧୨୭୮ ଖ୍ରୀଷ୍ଟାବ୍ଦରେ ନିର୍ମାଣ ପରେ ଏକାମ୍ରକର ମୁଖ୍ୟ ଧର୍ମସ୍ଥଳ ଗୁଡ଼ିକରେ ଶୈବ ଆଧିପତ୍ୟ ଆସିଯାଇଥିଲା । ଏ ସମ୍ପର୍କରେ ପାଣିଗ୍ରାହୀଙ୍କ Archaeological remains at Bhubaneswar ଦ୍ରଷ୍ଟବ୍ୟ ।

୨୫. ସାରଳା ମହାଭାରତ (ସ୍ୱର୍ଗାରୋହଣ ପର୍ବ)- ଏକାମ୍ର ବନେ ପଶ୍ଚିମେ ଭୁବନେଶ୍ୱର ।
ଗଜପତି ପୁରୁଷୋତ୍ତମ ଦେବଙ୍କ ପୁରୀ ଶିଳାଲେଖରେ ଭୁବନେଶ୍ୱର, କୃତ୍ତିବାସ-କଟକର ଉଲ୍ଲେଖ ରହିଛି ।
Journal of Asiatic Society of Bengal, LXII, p.103.
ଦ୍ୱିତୀୟ ନରସିଂହ ଦେବ (ଗଙ୍ଗ ସମ୍ରାଟ)ଙ୍କ ୧୨୧୫ ଶକାବ୍ଦର ଅଲାଲପୁର ତାମ୍ରଲେଖରେ ଭୁବନେଶ୍ୱର ଉଲ୍ଲେଖ ଅଛି । E9, Vol. XXXI, p.23.



# ବିଡ଼ାଳ ନରସିଂହ

ବିଷ୍ଣୁଙ୍କର ଅବତାର ନରସିଂହ ଓଡ଼ିଶାରେ ବିଭିନ୍ନ ସ୍ଥାନରେ ପୂଜିତ । ପଶ୍ଚିମ ଓଡ଼ିଶାରେ ନରସିଂହଙ୍କର ଅନ୍ୟ ଏକ ରୂପ ଗିରିଜ ନରସିଂହ ବିଶେଷ ଆଦୃତ । ଏହାଙ୍କୁ ବିଡ଼ାଳ ନରସିଂହ ବୋଲି କୁହାଯାଏ । ସାରଳା ଦାସଙ୍କ ମହାଭାରତରେ ଏହି ଅଞ୍ଚଳର ଗିରିଜ ନରସିଂହଙ୍କୁ ଦକ୍ଷିଣ କୋଶଳର ନରସିଂହ ବୋଲି ବର୍ଣ୍ଣନା କରାଯାଇଛି । (୧) ସମ୍ବଲପୁର ଜିଲ୍ଲାର ପଦ୍ମପୁର ଅନ୍ତର୍ଗତ ପାଇକମାଳ ନିକଟସ୍ଥ ଗନ୍ଧମାର୍ଦନ ପାହାଡ଼ର ପାଦଦେଶରେ ବିଡ଼ାଳ ନରସିଂହ ମନ୍ଦିର ଅବସ୍ଥିତ । ଆଲୋଚ୍ୟ ପ୍ରବନ୍ଧରେ ଏହି ଅଞ୍ଚଳରେ ବିଡ଼ାଳ ନରସିଂହ ଉପାସନାକୁ କେନ୍ଦ୍ର କରି ଗଢ଼ିଉଠିଥିବା ଜନଶ୍ରୁତିର ବିଶ୍ଳେଷଣ ସହିତ ବିଡ଼ାଳ ନରସିଂହ ମନ୍ଦିର ନିର୍ମାଣକାଳ ତଥା ରାଜଶକ୍ତିର ଏହା ସହିତ ସଂଯୋଗର ଏକ ବିବରଣୀ ସ୍ଥାନ ପାଇଛି ।

ବିଡ଼ାଳ ନରସିଂହ (ନରସିଂହ ନାଥ) ମନ୍ଦିର ନିର୍ମାଣକାଳ ସମ୍ପର୍କରେ ବିଭିନ୍ନ ମତ ପ୍ରଦାନ କରାଯାଇଛି ।

୧. ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି ତାଙ୍କର ପୁସ୍ତକ ''ନରସିଂହ ଆରାଧନା''ରେ ପ୍ରକାଶ କରିଛନ୍ତି :-

ମଧ୍ୟପ୍ରଦେଶର ରାୟପୁର ଧର୍ମତା'ରି ତହସିଲ ସିହାୱା କର୍ଣ୍ଣେଶ୍ୱର ବା କାନେଶ୍ୱର ମନ୍ଦିରରୁ ମିଳିଥିବା ଶିଳାଲେଖ (ଶକ ସମ୍ୱତ ୧୧୧୪ ବା ଖ୍ରୀ: ୧୧୯୨)ରେ ଲେଖକ ସୂତ୍ରଧର ସୂପ ବୋଡ଼ାସମ୍ବର ଅନ୍ତର୍ଗତ ''ମାର୍ଜାର କେଶରୀ'' ବା ନୃସିଂହନାଥଙ୍କ ଆଶୀର୍ବାଦ କାମନା କରିଛନ୍ତି । ଏହି ନୃସିଂହ ପ୍ରଶସ୍ତିରେ ସେହି ସ୍ଥାନକୁ ଦେବହ୍ରଦ ତୀର୍ଥ ବୋଲି ମଧ୍ୟ କୁହାଯାଇଛି ।

ସୁବର୍ଣ୍ଣାଖ୍ୟା ପୁରୀ ବର୍ତ୍ତମାନର ସୋନପୁର । ଚିତ୍ରୋତ୍ପଳା (ମହାନଦୀର)

ଉତ୍ପତ୍ତିସ୍ଥଳ ଏହିଠାରେ । ସେହି ସ୍ଥାନରେ ସମସ୍ତ ପାପ କ୍ଷୟ ହୁଏ ବୋଲି ଲୋକ ବିଶ୍ୱାସ ରହିଛି । ଏହି ଶିଳାଲେଖରେ ଉଲ୍ଲିଖିତ ଭାନୁଦେବ ଓଡ଼ିଶାର ରାଜା ହୋଇଥାଇ ପାରନ୍ତି । ପୁରୀର ଜଣେ ରାଜା କୁଷ୍ଠ ରୋଗାକ୍ରାନ୍ତ ହୋଇ ଏଠାକୁ ପଳାଇଆସି ଏଠାରେ ହାଓ୍ୱାରେ ଆରୋଗ୍ୟ ହୋଇଥିବା ଜନଶ୍ରୁତି ଅଛି । ସିଂହ + ହାଓ୍ୱା = ସିଂହାଓ୍ୱା > ସିହାଓ୍ୱା ହୋଇଥିବା ସମ୍ଭବ । (୨)

ଲେଖକ ମହାଶୟ ଏହି ପ୍ରସଙ୍ଗଟି ହିରାଲାଲଙ୍କ ଆଲୋଚିତ ସିହାଓ୍ୱା ଶିଳାଲେଖ ଶୀର୍ଷକ ପ୍ରବନ୍ଧରୁ ଗ୍ରହଣ କରିଛନ୍ତି । (୩) କିନ୍ତୁ ହିରାଲାଲ ତାଙ୍କ ଆଲୋଚନାରେ ଯାହା ପ୍ରକାଶ କରିଛନ୍ତି, ଡକ୍ଟର ମହାନ୍ତି ତାହାକୁ ଠିକ୍ ଭାବରେ ବୁଝି ନଥିବା ସ୍ପଷ୍ଟ ଜଣାପଡ଼ିଯାଏ । ସେ ସମ୍ପର୍କରେ ପ୍ରଥମେ ଆଲୋଚନା କରାଯାଉ । ସିଂହଓ୍ୱା ସ୍ଥାନଟିର ନାମକରଣ ସିଂହ ନାମରୁ ହୋଇଥିଲା ଯୁକ୍ତିକଲେ ମଧ୍ୟ ଏହି ସିଂହ କର୍ଣ୍ଣଦେବଙ୍କର ପିତାମହ ସିଂହଦେବଙ୍କ ନାମାନୁସାରେ ବୋଲି ହିରାଲାଲ ତାଙ୍କର ଆଲୋଚନାରେ ପ୍ରକାଶ କରିଥିଲେ । ହିରାଲାଲଙ୍କ ଭାଷାରେ;

The present Raj family, according to its tradition, believes its first aucestor to have come from Orissa about Vikrama Samvat 1150 or 1093 A.D. and this curiously fits in well with the evidence afforded by the inscriptions under discussion.

Apparently then. Sinharaja was the first emigrant and he came about the end of 11th century A.D. or the beginning of the 12th century A.D. The Raj family story is to the effect that a Puri King having become a leper quitted that place and came to Sihawa which was merely a dense jungle where he found a spring of water by which he took a bath which removed his leprosy. (୪)

ଏହି କିମ୍ବଦନ୍ତୀର ଅନ୍ୟଏକ ରୂପ ମଧ୍ୟ ସେ ପ୍ରକାଶ କରିଛନ୍ତି । ଶେଷରେ ସେ ଯୁକ୍ତି କରିଛନ୍ତି -

Simharaja was installed king of that place and it is possible that the locality was named after him being called Simhavah Simhawah (the comfort of Simha) which finally was corrupted into Sihawa. (୫)

କାନେଶ୍ୱର ମନ୍ଦିର ଲିପିରେ ସେହି ସ୍ଥାନଟିକୁ ଦେବହ୍ରଦ ତୀର୍ଥ ବୋଲି ପ୍ରକାଶ କରାଯାଇଛି ।

ଏହିପରି ରୋଗରୁ ମୁକ୍ତି ଦେଉଥିବା ଦେବହ୍ରଦ ତୀର୍ଥ ବା ସିଂହାଓ୍ୱା ମହାନଦୀର

ଏକ ଉତ୍ସ । ହିରାଲାଲ ତାଙ୍କର ଆଲୋଚନାରେ ପ୍ରକାଶ କରିଥିଲେ ଯେ, ଯେଉଁ ମହାନଦୀ ଏହି ସ୍ଥାନରୁ ବାହାରିଛି ତାହା ସମ୍ପର୍କରେ କୁହାଯାଏ-ସୁବର୍ଣ୍ଣାଖ୍ୟା ପୁରୀ ପୁଣ୍ୟା ପୁଣ୍ୟୋ ମାର୍ଜାରକେଶରୀ କୋଶଳାୟାଂ ତ୍ରୟଃ ପୁଣ୍ୟାଃ ପୁଣ୍ୟ ଚିତ୍ରୋତ୍ପଳା ନଦୀ । ସୁବର୍ଣ୍ଣପୁରୀ ବର୍ତ୍ତମାନର ସୋନପୁର ଏବଂ ମାର୍ଜାରକେଶରୀ ନୃସିଂହନାଥଙ୍କର ଅନ୍ୟଏକ ନାମ-ଏହା ସମ୍ବଲପୁର ଅନ୍ତର୍ଗତ ବୋଡ଼ାସମ୍ବର ଜମିଦାରୀରେ ଅବସ୍ଥିତ । ଏହି ସ୍ଥାନ ପରିଭ୍ରମଣ କଲେ ସମସ୍ତ ପାପ କ୍ଷୟହୁଏ । ସିଂହାୱାର ବିସ୍ତୃତ ଅଞ୍ଚଳକୁ ପବିତ୍ର ପୀଠରୂପେ ଗ୍ରହଣ କରାଯାଇଛି । ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି ହିରାଲାଲଙ୍କର ଏହି ମନ୍ତବ୍ୟକୁ ବୁଝିବାକୁ ଯାଇ ସିଂହାୱାକୁ ନରସିଂହନାଥ ପୀଠ ସହିତ ପରିଚିତ କରିଛନ୍ତି । କିନ୍ତୁ ଏଥିରେ ତ୍ରୁଟି ରହିଯାଇଛି । ହିରାଲାଲ ତାଙ୍କ ଆଲୋଚନାରେ ସିଂହାୱା/ଦେବହ୍ରଦ ତୀର୍ଥରୁ ବାହାରିଥିବା ମହାନଦୀର ପ୍ରସିଦ୍ଧି ସମ୍ପର୍କରେ ଏକ ଶ୍ଳୋକ ଉପସ୍ଥାପନ କରିଛନ୍ତି । ଏହି ଶ୍ଳୋକରେ ବର୍ଣ୍ଣିତ ସ୍ଥାନ ଓ ଦେବତାଙ୍କୁ ସିଂହାୱା ସହିତ ଜଡ଼ିତ କରାଯାଇ ପାରିବ ନାହିଁ । ମହାନଦୀ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ହିରାଲାଲ ଏହି ପବିତ୍ର ପୀଠ ସମ୍ପର୍କରେ ଥିବା ଜନଶ୍ରୁତିରେ ପରିଚିତ ଶ୍ଳୋକଟିର ଉଦ୍ଧାର କରିଛନ୍ତି । କାନେଶ୍ୱର ମନ୍ଦିରର ଲିପିରେ ଏପରି ପ୍ରସଙ୍ଗର ସ୍ଥାନପାଇ ନାହିଁ । ସେ ଦୃଷ୍ଟିରୁ ବିଡ଼ାଳ ନରସିଂହ ୧୧୯୨ ଖ୍ରୀଷ୍ଟାବ୍ଦରେ ଏହି ଅଞ୍ଚଳରେ ପରିଚିତ ଥିବା କଥା ଆଦୌ ଗ୍ରହଣ କରିହେବ ନାହିଁ । ଲେଖକ ମହାଶୟ ମଧ୍ୟ ଏହି ଶିଳାଲେଖର ଷୋଳଧାଡ଼ିରେ ଥିବା ଏକ ଶ୍ଳୋକକୁ ଅନ୍ୟ ଅର୍ଥରେ ଗ୍ରହଣ କରିଛନ୍ତି ।

ଶ୍ଳୋକଟି ହେଲା - ''ବର୍ଦ୍ଧତାଂ ସର୍ବତୋ ନିତ୍ୟଂ ନୃସିଂହ କୃତିନା କୃତା ସୁତ୍ରଧାର ସୁପ ।'' ହିରାଲାଲ ଏହାର ଅର୍ଥ ମଧ୍ୟ ପ୍ରକାଶ କରିଛନ୍ତି । ତାଙ୍କ ମତରେ ସୂତ୍ରଧାର ସୁପ ଏହି ଶିଳାଲେଖର ଲେଖକ (ଖୋଦକ) ଏବଂ ନୃସିଂହ ନାମଧାରୀ ବ୍ୟକ୍ତି ଏହି ପ୍ରଶସ୍ତିର ରଚୟିତା । ଏଣୁ ଡକ୍ଟର ମହାନ୍ତି ଏହି ଶ୍ଳୋକରେ ଥିବା ନୃସିଂହ ନାମକ ରଚୟିତାଙ୍କୁ ନରସିଂହ ଦେବତା ଅର୍ଥରେ ଗ୍ରହଣ କରି ଭ୍ରମାତ୍ମକ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ଏସବୁ ଦୃଷ୍ଟିରୁ ତାଙ୍କର ନୃସିଂହନାଥ ପୂଜାର ସମୟକାଳ ସମ୍ପର୍କିତ ବିବରଣୀରେ ସତ୍ୟତା ନାହିଁ ।

୨. ନିରାକାର ମହାଲିକ ନୃସିଂହ ମନ୍ଦିରର ଭାସ୍କର୍ଯ୍ୟ ଓ ସ୍ଥାପତ୍ୟ ଅଧ୍ୟୟନରୁ ଏହା ପଣ୍ଡୁବଂଶୀ ରାଣୀ ବାସଟାଙ୍କ ଦ୍ୱାରା ନିର୍ମିତ ହୋଇଥିବ ବୋଲି ମତ ପ୍ରକାଶ କରିଛନ୍ତି । ଏହା ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରଠାରୁ ପ୍ରାଚୀନ ଏବଂ ଏହାର ଶୈଳୀକୁ ଲିଙ୍ଗରାଜ

ମନ୍ଦିରରେ ଅନୁକରଣ କରାଯାଇଛି । ଏହି କାଳରେ ପ୍ରଥମେ ପୁରୁଷୋତ୍ତମ ନରସିଂହ ଉପାସିତ ହେଉଥିଲେ । ପରେ ପାଟଣାର ରାଜା ବୈଜଳଦେବଙ୍କ ସମୟରେ ଏଠାରେ ବିଡ଼ାଳ ନରସିଂହ ଉପାସିତ ହୋଇଥିଲେ । (୬) ଶ୍ରୀଯୁକ୍ତ ମହାଳିକଙ୍କର ଯୁକ୍ତିକୁ ଆଂଶିକ ଭାବରେ ଗ୍ରହଣ କରାଯାଇପାରେ । ପଣ୍ଡୁବଂଶୀ ସମ୍ରାଟ ବାଳାର୍ଜ୍ଜୁନଙ୍କର ମାତା ପୁରୁଷୋତ୍ତମ ନରସିଂହ ଉପାସନା ଏହି ଅଞ୍ଚଳରେ ଆରମ୍ଭ କରିଥାଇ ପାରନ୍ତି । କିନ୍ତୁ ନରସିଂହନାଥଙ୍କର ବର୍ତ୍ତମାନ ଥିବା ମନ୍ଦିର ଏକାଦଶ ଶତକରେ ନିର୍ମିତ ସୋମବଂଶୀ ଲିଙ୍ଗରାଜ ମନ୍ଦିରର ଯଥେଷ୍ଟ ପରେ ନିର୍ମାଣ କରାଯାଇଥିବ । ଏ ସମ୍ପର୍କରେ ଦୀପକ ରଞ୍ଜନ ଦାସଙ୍କର ମତ ପ୍ରଣିଧାନଯୋଗ୍ୟ :

The Orissan version of the Nagar style takes its definite shape in the Narasimhanatha temple near Paikmala. Architectonically, its deula repreduces, in all essential details the deula of the Lingaraj Temple at Bhubaneswar. Minor differences as may be noticed in the number of mouldings of the baranda which in the Narasimhanatha is seven and in the Lingaraja ten, or in the number of bhumi stages which in the former is eight and in the later ten, could have been caused by the not too insignificant difference of height that exists between them and not by any appreciable differences in time separating their respective dates of construction. As a matter of fact the baranda with seven mouldings and the gandi with less than ten bhumis are found in temples post-dating the Lingaraja. (୭)

ମନ୍ଦିରର ସ୍ଥାପତ୍ୟକୁ ବିଚାରକୁ ନେଲେ ଦୀପକ ରଞ୍ଜନ ଦାସଙ୍କ ମତ ଏକାନ୍ତ ଗ୍ରହଣୀୟ ମନେହୁଏ ।

୩. ନୃସିଂହନାଥ ମନ୍ଦିରର ଜଗମୋହନର ଏକ ଶିଳାଲିପିରେ ବର୍ଣ୍ଣନା କରାଯାଇଛି ଯେ, ପାଟଣାର ରାଜା ବୈଜଳଦେବ ପାପହରଣ ତୀର୍ଥରେ ଗନ୍ଧମାର୍ଦ୍ଦନ ପର୍ବତରେ ବିଡ଼ାଳ ନରସିଂହ ସ୍ୱାମୀଙ୍କର ଦେଉଳ ତୋଳାଇଥିଲେ । ଏହି ଶିଳାଲିପିର ସମୟ ଖ୍ରୀଷ୍ଟାବ୍ଦ ୧୪୧୩ ମାର୍ଚ୍ଚ ୧୪ ତାରିଖ ବୋଲି ଆଲୋଚକମାନେ ଗ୍ରହଣ କରିଛନ୍ତି । (୮) କିନ୍ତୁ ଏହି ଶିଳାଲେଖର ତାରିଖ ଅନୁସାରେ ଏହି ମନ୍ଦିରର ନିର୍ମାଣକାଳ ନିର୍ଦ୍ଧାରଣକୁ ଅନେକ ଆଲୋଚକ ସନ୍ଦେହ କରିଛନ୍ତି । ବେଗ୍‌ଲାର୍ (J.D. Beglar) ଙ୍କର ୧୮୭୪-୭୬ ମଧ୍ୟରେ ଥିବା Report of Tours in the South Eastern Province ରେ ପ୍ରକାଶ କରାଯାଇଛି;

The inscription, it is true, is on a detached slab simply let into the temple outside, and may or may not belong to, but it certainly belongs to some temple which once atleast existed here (୯)

ଦୀପକ ରଞ୍ଜନ ଦାସ ମଧ୍ୟ ଏହି ଉପାଦାନଦ୍ୱାରା ବିଡ଼ାଳ ନରସିଂହନାଥ ମନ୍ଦିରର ସମୟ ନିର୍ଣ୍ଣୟକୁ ଗ୍ରହଣ କରିନାହାନ୍ତି ।

ବର୍ତ୍ତମାନ ପ୍ରଶ୍ନ ହେଉଛି ବୈଜ୍ଜଳଦେବଙ୍କ ଦ୍ୱାରା ନିର୍ମିତ ମନ୍ଦିରଟି କେଉଁଠି ? ଏ ସମ୍ପର୍କରେ ଲେଖକ କିଛି ଅନୁମାନ କରିବାକୁ ପ୍ରଲୁବ୍ଧ ହୋଇଛି । ଏକାଦଶ ଶତକର ପ୍ରଥମଭାଗ କୋଶଳର ରାଜନୈତିକ ବ୍ୟବସ୍ଥାର ସନ୍ଧି କାଳ । ସେତେବେଳେ ସୋମବଂଶୀ ରାଜାମାନେ ଉତ୍କଳରେ କ୍ଷମତା ବିସ୍ତାର କରିବାଯୋଗୁଁ ଏହି ଅଞ୍ଚଳ ପ୍ରତି ବିଶେଷ ଦୃଷ୍ଟି ଦେଇ ନଥିଲେ । ଉତ୍କଳରେ ଲିଙ୍ଗରାଜ ମନ୍ଦିର ନିର୍ମାଣ ପରେ ସୋମବଂଶୀ ରାଜାମାନେ ପ୍ରବଳଭାବେ ଶୈବାନୁରାଗୀ ହୋଇଯାଇଥିଲେ । କୋଶଳାଂଶ ତେଲୁଗୁଚୋଡ଼ ରାଜାମାନଙ୍କ ହାତରେ ୧୧୧୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରହିଥିଲା । ନରସିଂହନାଥ ମନ୍ଦିରଟି ଏକ ବୈଷ୍ଣବ ମନ୍ଦିରପରି ହୋଇଥିବାରୁ ମନେହୁଏ ଯେ ଏହା ସୋମବଂଶୀ ରାଜାମାନଙ୍କର କୀର୍ତ୍ତିନୁହେଁ । କାରଣ ସେମାନେ ଇଚ୍ଛାକରିଥିଲେ ଶୈବ ମନ୍ଦିର ନିର୍ମାଣ କରିଥାଆନ୍ତେ । ଏହି ଦୃଷ୍ଟିରୁ ଅନ୍ୟଏକ ଚିନ୍ତାଧାରାକୁ ଗ୍ରହଣ କରିଯାଇପାରେ । ୧୧୧୪-୧୫ ଖ୍ରୀଷ୍ଟାବ୍ଦ ବେଳକୁ ଗଙ୍ଗବଂଶୀ ନରପତି ଚୋଡ଼ଗଙ୍ଗ ଉତ୍କଳ ଅଧିକାର କରି ସୋମବଂଶୀ ଶାସନର ଅବସାନ କରାଇଥିଲେ ଏବଂ କ୍ଷମତା ସଂପ୍ରସାରଣ ପାଇଁ ପୁରୁଷୋତ୍ତମ କ୍ଷେତ୍ରର ବୃହତ୍ ବିଷ୍ଣୁ ମନ୍ଦିର ନିର୍ମାଣ କରାଇଥିଲେ । (୧୦) ଚୋଡ଼ଗଙ୍ଗଙ୍କ ରାଜତ୍ୱ କାଳରେ କୋଶଳାଂଶ କଳଚୁରି ସମ୍ରାଟ ଜାଜଲଦେବଙ୍କ ହାତକୁ ଆସିଥିଲା । ଚୋଡ଼ଗଙ୍ଗଙ୍କର ଇଚ୍ଛାସତ୍ତ୍ୱେ କଳଚୁରି କ୍ଷମତାକୁ ଏହି ଅଞ୍ଚଳରେ ସଙ୍କୁଚିତ କରାଯାଇପାରି ନଥିଲା । ଚୋଡ଼ଗଙ୍ଗଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ଜଟେଶ୍ୱର କାମାର୍ଣ୍ଣବ କଳଚୁରି ରାଜାଙ୍କ ଦ୍ୱାରା ପ୍ରବଳ ଯୁଦ୍ଧପରେ ପରାଜିତ ଏବଂ କିଛିକାଳ ବନ୍ଦୀ ହୋଇଥିଲେ । (୧୧) ଏହି କଳଚୁରି ବିଜୟ କଳଚୁରି ସାମନ୍ତ ରାଜା ତଳହାରୀ ମଣ୍ଡଳ ନରେନ୍ଦ୍ର ବ୍ରହ୍ମଦେବଙ୍କ ଦ୍ୱାରା ସମ୍ପାଦିତ ହୋଇଥିବାର ବିବରଣୀ ରହିଛି । (୧୨) ଖଡ଼ିଆଳ ଯୁବରାଜ, ପ୍ରତ୍ନତତ୍ତ୍ୱ ଅନୁରାଗୀ ଜିତାମିତ୍ର ସିଂହଦେଓ ତଳହାରୀ ମଣ୍ଡଳ ନରେନ୍ଦ୍ର ବ୍ରହ୍ମଦେବ ଏହି ବିଷ୍ଣୁ ମନ୍ଦିର (ନରସିଂହ ମନ୍ଦିର) ତାଙ୍କ ବିଜୟର ସ୍ମାରକୀ ସଦୃଶ ନିର୍ମାଣ କରାଇଥିଲେ ବୋଲି ମତଦେଇଛନ୍ତି । (୧୩) ବ୍ରହ୍ମଦେବ ଗଙ୍ଗବଂଶୀ

ସମ୍ରାଟ ଚୋଡ଼ଗଙ୍ଗଙ୍କର ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିର ନିର୍ମାଣପରେ ଏହି ପଦ୍ଧତିକୁ ଗ୍ରହଣ କରି ନରସିଂହନାଥ ମନ୍ଦିର ନିର୍ମାଣ କରାଇଥିବା କଥା ଅଧିକ ସମ୍ଭବ; କାରଣ ବର୍ତ୍ତମାନର ନରସିଂହନାଥ ମନ୍ଦିର ଦ୍ୱାଦଶ ଶତକର ଉତ୍କଳୀୟ ଶୈଳୀରେ ନିର୍ମିତ ଏବଂ ଏଥିରେ କଳଚୁରୀ ସ୍ଥାପତ୍ୟ ପଦ୍ଧତି ଗ୍ରହଣ କରାଯାଇ ନାହିଁ । ଉତ୍କଳୀୟ ପଦ୍ଧତିରେ ଏହି ମନ୍ଦିର ନିର୍ମାଣପରେ ପାଖାପାଖି ଅଞ୍ଚଳରେ କଳଚୁରି ପଦ୍ଧତିରେ ମନ୍ଦିର ଯେ ନିର୍ମିତ ହୋଇ ନଥିବ ଏହା କୁହାଯାଇ ନପାରେ । ଏପରି ନିର୍ମାଣର ଉଦ୍ଦେଶ୍ୟ କୋଶଳାଂଶରେ କଳଚୁରି ଶାସନ ପଦ୍ଧତିର ସଙ୍କେତ ସ୍ଥାପନ ତଥା ଜନମତକୁ ତୁଷ୍ଟ କରିବା ପାଇଁ ଉତ୍କଳୀୟ କଳିଙ୍ଗ ସ୍ଥାପତ୍ୟ ପ୍ରତି ସମ୍ମାନ ପ୍ରଦର୍ଶନ । ପାଖରେ ଥିବା ଡୁମେର ବାହାଲର ଭାସ୍କର୍ଯ୍ୟ କଳଚୁରି ସ୍ଥାପତ୍ୟର ଅଭ୍ରାନ୍ତ ନିଦର୍ଶନ । (୧୪) ଏହାର ଅଦୂରରେ ନାରାୟଣପୁରର ମନ୍ଦିରଟି ମଧ୍ୟ କଳଚୁରି ସ୍ଥାପତ୍ୟ । (୧୫) ସିଂହଦେଓଙ୍କ ମତାନୁସାରେ;

The Narasimhanatha temple is a Pancharath temple built in full fledged Kalinga style of temple architecture. It seems Brahmadeva utilised the Kalinga artisans who were captured in the war with the Ganga King Jatesvara of Kalinga, to build the Narasimhanatha temple and therefore a Kalinga style of temple architecture stood up datable to 12th. century A.D. (୧୬) ।

କିନ୍ତୁ ଏହି ସିଦ୍ଧାନ୍ତ ଗ୍ରହଣୀୟ ନୁହେଁ । ଯେଉଁମାନେ ଗଙ୍ଗସେନା ପକ୍ଷରୁ ହାରିଲେ ସେମାନେ ଯେ ମନ୍ଦିର ନିର୍ମାର ପଦ୍ଧତି ଜାଣିଥିଲେ ଏହା କହିହେବ ନାହିଁ ।

ଅନ୍ୟ ପକ୍ଷରେ ତଳହାରୀ ମଣ୍ଡଳ ନରେନ୍ଦ୍ର ବ୍ରହ୍ମଦେବ ଜଗନ୍ନାଥ ମନ୍ଦିର ନିର୍ମାଣ ପଦ୍ଧତିକୁ ଅନୁକରଣ କରିବାପାଇଁ କଳିଙ୍ଗ ସ୍ଥାପତ୍ୟ ଜାଣିଥିବା ପାଖାପାଖି ଅଞ୍ଚଳରୁ ଶିଳ୍ପୀ ଏବଂ ସ୍ଥପତି କାହିଁକି ଆଣି ନଥିବେ ? ସେତେବେଳକୁ କ'ଣ କଳିଙ୍ଗ ସ୍ଥାପତ୍ୟ କେବଳ କଳିଙ୍ଗ ଲୋକଙ୍କୁ ଜଣାଥିଲା ? ଏହା ସର୍ବଭାରତୀୟ ମନ୍ଦିର ନିର୍ମାଣ କଳା ହିସାବରେ ଦ୍ୱାଦଶ ଶତକ (ଖ୍ରୀଷ୍ଟୀୟ)ରେ ସୁପରିଚିତ ଥିଲା । ଏଣୁ କଳିଙ୍ଗ ଉତ୍କଳୀୟ କଳାର ଅନୁକରଣରେ ନରସିଂହ ମନ୍ଦିର କୋଶଳର ଏହି ଅଂଶରେ ନିର୍ମିତ ହୋଇଥିଲା । ଏହାଥିଲା କୋଶଳାଂଶରେ କଳଚୁରି କ୍ଷମତା ସଂପ୍ରସାରଣର ଏକ ମାଧ୍ୟମ । ନିଜେ ଚୋଡ଼ଗଙ୍ଗ ଉତ୍କଳ ଅଧିକାର କରି କ୍ଷମତା ପ୍ରତିଷ୍ଠା ଏବଂ ସଂପ୍ରସାରଣ ପାଇଁ ଯେଉଁ ବୃହଦ୍ ଜଗନ୍ନାଥ ମନ୍ଦିର ନିର୍ମାଣ କରାଇଥିଲେ ତାହା କଳିଙ୍ଗ କଳା ଓ ସ୍ଥାପତ୍ୟର ନମୁନା

ହୋଇ ରହିଥିଲା , (ଯେଉଁ ଦିଗରୁ ଚୋଡ଼ଗଙ୍ଗ ଉତ୍କଳ ଆଡ଼କୁ ଆସିଥିଲେ) । ଏହି ନିର୍ଦ୍ଦିଷ୍ଟ ସ୍ଥାନଟି ଏହାପୂର୍ବରୁ (କଳଚୁରି ଶାସନ ପୂର୍ବରୁ) ପୁରୁଷୋତ୍ତମ ନରସିଂହଙ୍କର ପୀଠ ହୋଇଥାଇପାରେ ଏବଂ ନିରାକାର ମହାଳିକଙ୍କର ମତକୁ ଆଂଶିକ ଭାବରେ ଗ୍ରହଣ କରି କୁହାଯାଇପାରେ ଯେ ପଣ୍ଡୁବଂଶୀ ରାଣୀ ଏଠାରେ ନବମ ଶତାବ୍ଦୀରେ ଏକ କ୍ଷୁଦ୍ର ମନ୍ଦିର ପୁରୁଷୋତ୍ତମ ନରସିଂହଙ୍କ ପାଇଁ ନିର୍ମାଣ କରିଥିବେ । କିନ୍ତୁ ପରବର୍ତ୍ତୀକାଳରେ ରାଜଶକ୍ତିର ଉଦାସୀନତା ଯୋଗୁଁ ଏହା ଜୀର୍ଣ୍ଣ ହୋଇଯାଇଥିଲା । ଏଣୁ କଳଚୁରି ରାଜାମାନେ ମନ୍ଦିର ନିର୍ମାଣ କରି ସେଠାରେ ପୁନର୍ବାର ପୁରୁଷୋତ୍ତମ ନରସିଂହ ଉପାସନା ପ୍ରବର୍ତ୍ତନ କରିଥିବେ । କିନ୍ତୁ କଳଚୁରି ରାଜାମାନେ ମଧ୍ୟ ଏହି ଅଞ୍ଚଳରେ ଅଧିକକାଳ କ୍ଷମତାଶାଳୀ ହୋଇପାରି ନଥିଲେ । ଗଙ୍ଗବଂଶୀ ସମ୍ରାଟ ଅନଙ୍ଗଭୀମଦେବଙ୍କ ସମୟରେ କୋଶଳାଂଶ ଏହି କଳଚୁରୀ ରାଜାମାନଙ୍କ କବଳରୁ ମୁକ୍ତିପାଇଲା ଏବଂ ଗଙ୍ଗ ସାମ୍ରାଜ୍ୟରେ ମିଶିଗଲା । (୧୭) ଫଳରେ ଏହି ମନ୍ଦିରଟି ଅବ୍ୟବସ୍ଥାରେ ପଡ଼ିରହିଲା । ପୁରୁଷୋତ୍ତମକ୍ଷେତ୍ରରେ ଯେପରି ଏକ ଆଦିବାସୀ ବିଗ୍ରହରେ ନରସିଂହ ଉପାଦାନ ଗର୍ଭିତ କରି ଜଗନ୍ନାଥ ବୋଲି ଗଙ୍ଗରାଜତ୍ୱର ଶେଷକାଳକୁ ଉପାସନା କରାଯାଇଥିଲା, ଏହି ଗନ୍ଧମାର୍ଦ୍ଦନ ପର୍ବତ ପାଖରେ ଥିବା କନ୍ଧମାନଙ୍କ ପୂଜିତ ଏକ ଦେବତାକୁ ହିନ୍ଦୁ ଦେବତାରେ ପରିଣତ କରି ବିଡ଼ାଳ ନରସିଂହ ନାମରେ ପୂଜା କରାଯାଇଥିଲା । (୧୮) ପୁରାତନ ମନ୍ଦିରର କିଛି ଅଂଶକୁ ବ୍ୟବହାର କରି ପାଟଣାର ରାଜା ବୈଜଳଦେବ ମନ୍ଦିରର ଜଗମୋହନ ତିଆରି କଲେ ଏବଂ କନ୍ଧ ସଂସ୍କୃତିକୁ ଗ୍ରହଣ କରି ସେମାନଙ୍କର ଦେବତାଙ୍କୁ ନରସିଂହ ନାମରେ ପୂଜାକଲେ । ଏହି ମନ୍ଦିରର ଜଗମୋହନ ଯେ ଅତି ପ୍ରାଚୀନ ମନ୍ଦିରର ଅଂଶବିଶେଷ ଏଥିରେ ସନ୍ଦେହ ନାହିଁ । ଏ ଦୃଷ୍ଟିରୁ ଦୀପକରଞ୍ଜନ ଦାସଙ୍କ ଚିନ୍ତାଧାରାକୁ ଏଠାରେ ଗ୍ରହଣ କରାଯାଇପାରେ :

Any discussion of the Mukhasala of the Narasimhanatha would remain incomplete if only a passing reference is made to the four pillars in the interior. These pillars are square in cross section and identical in design. The deceptive design on the shaft consists of an upwardly moving creeper with a demilotus medallion at the head. The capital is of the vase-and-foliage type. In Orissa pilaster bearing similar designs recures on the walls of the temples of the triratha order. But the introduction of the

Pancharatha temple synchronises with the disappearance of this type of pilasters from Orissa. The occurrence of such pillars in the Mukhasala of the Pancharathi deula of Narasimhanatha was therefore least expected. One may suggest that these pillars were re-employed to serve their present function after being queried from the ruins of an earlier temple. (୧୯)

ଏହି ଦୃଷ୍ଟିରୁ ବିଡ଼ାଳ ନରସିଂହ ନାଥଙ୍କର ମୁଖ୍ୟ ଦେଉଳ ଦ୍ୱାଦଶ ଶତକର ପ୍ରଥମ ଷଷ୍ଠ ଦଶନ୍ଧି ମଧ୍ୟରେ ନିର୍ମିତ ହୋଇଥିଲା ବୋଲି ଅନୁମାନ କରାଯାଇପାରେ । ଖୁବ୍ ସମ୍ଭବତଃ ପଞ୍ଚଦଶ ଶତକରେ ନବମ ଶତାବ୍ଦୀରେ ନିର୍ମିତ ମନ୍ଦିରର ଅଂଶବିଶେଷକୁ ବ୍ୟବହାର କରି ଜଗମୋହନଟି ନିର୍ମାଣ କରାଗଲା ।

ଯେଉଁ ଅଞ୍ଚଳରେ ନରସିଂହନାଥ ମନ୍ଦିର ମୁଣ୍ଡଟେକି ଉଠିଛି, ତାହା ଏକଦା ବୌଦ୍ଧ ସଂସ୍କୃତିର ଏକ ସ୍ମରଣୀୟ ପୀଠ ଥିଲା । ପଦ୍ମପୁର ଅଞ୍ଚଳ ପାଖରେ ଥିବା ସ୍ଥାନଟିକୁ ବୋଡ଼ା ସମ୍ବର ବୋଲି କୁହାଯାଏ ।

ଏହାର ପ୍ରକୃତ ନାମ ସମ୍ଭବତଃ ବୁଦ୍ଧ ସମ୍ବର । (୨୦) ସ୍ଥାନଟିର ପାଖରେ ମାଧ୍ୟମିକ ଆଚାର୍ଯ୍ୟ ନାଗାର୍ଜ୍ଜୁନଙ୍କର ପୀଠ ପୋ-ଲୋ-ମୋ-ଲୋ-କି-ଲି ବା ପରିମଳଗିରି (ଗନ୍ଧଗିରି ?) ଅବସ୍ଥିତ ଥିଲା ବୋଲି ଆଲୋଚକମାନେ ଗ୍ରହଣ କରିଛନ୍ତି । (୨୧) ଏସବୁକୁ ଗ୍ରହଣ କରି ବୁଦ୍ଧ ସମ୍ବରଙ୍କର ତାନ୍ତ୍ରିକ ସାଧନାର ପୀଠ ହିସାବରେ ଏହି ଅଞ୍ଚଳକୁ ଡକ୍ଟର ରାମପ୍ରସାଦ ମିଶ୍ର ଗ୍ରହଣ କରିଛନ୍ତି । (୨୨) ଏହା ଯଦି ଗ୍ରହଣୀୟ ହୁଏ, ବୌଦ୍ଧତନ୍ତ୍ରଯାନ ନରସିଂହନାଥ ମନ୍ଦିର ସହିତ କିପରି ଜଡ଼ିତଥିଲା ତାହା ସମ୍ପର୍କରେ ଗବେଷଣା କରାଯିବା ଉଚିତ୍ । ବିଡ଼ାଳ ନରସିଂହନାଥ ମୂର୍ତ୍ତିତତ୍ତ୍ୱରେ ଏବଂ ନରସିଂହନାଥ ମନ୍ଦିର କଳା ଓ ସ୍ଥାପତ୍ୟରେ ବୌଦ୍ଧଧର୍ମ ପ୍ରଭାବ ଥିବାର କଥା ବର୍ତ୍ତମାନ ଜଣାପଡୁ ନାହିଁ । ସମ୍ଭବତଃ ବୌଦ୍ଧଯୁଗର କିଛି ଅବଶେଷ ଉପରେ ବୈଷ୍ଣବ ଧର୍ମର ପ୍ରାଧାନ୍ୟ ଆରୋପ କରାଇବା ପାଇଁ ଏପରି ସ୍ଥାପତ୍ୟ ନିର୍ମାଣ କରାଯାଇଥିଲା । ମଧ୍ୟଯୁଗର ଏହି ପର୍ଯ୍ୟାୟରେ ବୌଦ୍ଧ-ଶୈବ-ବୈଷ୍ଣବ ବିବାଦ ଓଡ଼ିଶାରେ ଥିଲା । ତେଣୁ ବୈଷ୍ଣବମାନେ ସକ୍ରିୟ ହୋଇ ଏହି ଅଞ୍ଚଳରେ ଥିବା ବୌଦ୍ଧାବଶେଷକୁ ଧ୍ୱଂସ କରି ଦେଇଥିବେ । କିନ୍ତୁ ବୈଷ୍ଣବମାନେ ସକ୍ରିୟ ହୋଇ ମଧ ଏହି ଅଞ୍ଚଳର ଆଦିମ ସଂସ୍କୃତିକୁ ଉପେକ୍ଷା କରିପାରି ନଥିଲେ । ଏହି ମନ୍ଦିରରେ ପୂଜିତ ବିଡ଼ାଳ ନରସିଂହନାଥ ବିଗ୍ରହ, ପୂର୍ବରୁ ପୂଜିତ କନ୍ଧମାନଙ୍କର ଏକ ବିଗ୍ରହର ହିନ୍ଦୁ ସଂସ୍କରଣ । (୨୩) କନ୍ଧମାନେ ସେମାନଙ୍କର ଦେବତାର ସେବାପୂଜାରେ ଅଗ୍ରାଧିକାର ପାଇଁ ଏହି ଆର୍ଯ୍ୟକରଣକୁ

ଗ୍ରହଣ କରି ନେଇଥିଲେ ଓ ପୁରାଣ ସୃଷ୍ଟି କରାଯାଇଥିଲା । ସେହି ପୁରାଣର କଥାବସ୍ତୁ ଅଷ୍ଟାଦଶ ଶତକର ମଧ୍ୟଭାଗରେ ରଚିତ କନ୍ଧକବି ଯୁଗଦାସଙ୍କ ନୃସିଂହ ଚରିତରେ ଅତି ଚମତ୍କାର ଭାବରେ ବର୍ଣ୍ଣନା କରାଯାଇଛି । (୨୪) ଏହି ଜନଶ୍ରୁତି ଦୁଇଟି ପର୍ଯ୍ୟାୟରେ ସୃଷ୍ଟି ହୋଇଛି । ପ୍ରଥମେ ହିନ୍ଦୁମାନଙ୍କର ଚିନ୍ତାଧାରା ପ୍ରକାଶିତ ହୋଇଥିଲା । ଜନଶ୍ରୁତିଟିକୁ ନିମ୍ନରେ ପ୍ରକାଶ କରାଗଲା;

ତ୍ରେତୟା ଯୁଗରେ ଉଡ଼ଙ୍ଗ ମୁନିଙ୍କର ମାଳତୀ ନାମକ କନ୍ୟାକୁ ଲଙ୍କାର ରାବଣ ଧର୍ଷଣ କରି ଗୋଦାବରୀ ନଦୀରେ ଫିଙ୍ଗିଦେଇଗଲା । ଗୋଦାବରୀ ନଦୀ ତାହାକୁ ଦୟା ଦେଖାଇ କୂଳରେ ପହଞ୍ଚାଇ ଦେଇଗଲା । ଗଣପତିଙ୍କର ବାହନ ଇନ୍ଦୁର ମାଳତୀକୁ ପିତାମାତା ପାଖରେ ଛାଡ଼ିଦେବ କହି ବାଟରେ ବଳାତ୍କାର ଶୃଙ୍ଗାର କଲା । ମାଳତୀ କନ୍ୟା ଗର୍ଭରୁ ଏବଂ ରାବଣ ଇନ୍ଦୁର ଔରସରୁ ମୂଷିକ ଦୈତ୍ୟ ଜନ୍ମ ନେଇଥିଲା । ସେ ପ୍ରଥମେ ତାହାର ମାତାକୁ ଆହାର କଲା । ତା'ର କୋପରେ ସମଗ୍ର ପୃଥିବୀ ପ୍ରକମ୍ପିତ ହେବାରୁ ଅଯୋଧ୍ୟାର ରାମଚନ୍ଦ୍ରଙ୍କୁ ଦେବଦେବୀମାନେ ଅନୁରୋଧ କରନ୍ତେ ସେ ନରସିଂହ ରୂପରେ ତାହାକୁ ଗୋଡ଼ାଇଲେ । ଦୈତ୍ୟ ଭୟପାଇ ସର୍ବତ୍ର ବୁଲି ବୁଲି ଗନ୍ଧଗିରିର ଏକ ସୁଡ଼ଙ୍ଗରେ ଆଶ୍ରୟ ନେଲା । ନୃସିଂହ ଯେତେବେଳେ ଏଠାରେ ପ୍ରବେଶକଲେ, ଗନ୍ଧଗିରି ତାହାକୁ ଶରଣ ଦେଇଥିବାରୁ ତାଙ୍କ ପାଦତଳେ ଗୁହାରିକଲା । ତେଣୁ ରାମଚନ୍ଦ୍ର ମାର୍ଜ୍ଜାର କେଶରୀ ବେଶରେ ସୁଡ଼ଙ୍ଗ ପାଖରେ ମୂଷିକ ଦୈତ୍ୟକୁ ଜଗିରହିଲେ । ସେଠାରେ ତାଙ୍କର ପୀଠ ସୃଷ୍ଟି ହେଲା ।

ହିନ୍ଦୁମାନଙ୍କ ଦ୍ୱାରା ସୃଷ୍ଟ ଜନଶ୍ରୁତିକୁ ଗ୍ରହଣ କରି କନ୍ଧମାନଙ୍କର ପ୍ରତିନିଧି ସେମାନଙ୍କର ସୁବିଧା ନିମନ୍ତେ ଅନ୍ୟ ଏକ ଜନଶ୍ରୁତି ସୃଷ୍ଟି କଲେ;

ହରି ଓ ସହଦେବ ଶବର ଦୁଇଭାଇ ଶ୍ରୀ ନୃସିଂହନାଥ ଅଞ୍ଚଳରେ ବାସକରୁଥିଲେ । ସେମାନଙ୍କର ସ୍ତ୍ରୀ ଯଥାକ୍ରମେ ଯମୁନା ଓ ରୋଦନା ଗନ୍ଧଗିରି ବଣରୁ କନ୍ଦମୂଳ ଆଦି ଖୋଳି ଜୀବନଧାରଣ କରୁଥିଲେ । ଦିନେ ଯମୁନା କନ୍ଧୁଣୀ ପାପହରଣ ନାଳ କୂଳରେ ଗୋଟିଏ ବେଲଗଛକୁ ମାଡ଼ିଥିବା ପିଠକନ୍ଦା ଦେଖିବାକୁ ପାଇଲା । ଖଣତି ସାହାଯ୍ୟରେ ପିଠକନ୍ଦାକୁ ଖୋଳିବାବେଳେ ରକ୍ତ ବାହାରିବା ଦେଖି ଆଦିବାସୀ ରମଣୀଟି ଭୟପାଇ ତାହାର ସ୍ୱାମୀକୁ ଜଣାଇଲା । କନ୍ଧ ଦମ୍ପତ୍ତି ଯଥା ସମୟରେ ପହଞ୍ଚି ଦେଖିଲେ ଯେ ରକ୍ତ ପରିବର୍ତ୍ତେ କ୍ଷୀର ବାହାରୁଛି । ଶୂନ୍ୟରୁ ଆଦେଶ ହେଲା-''ରେ ହରିଆ ମୁଁ ତୋପ୍ରତି ପ୍ରସନ୍ନ ହୋଇଅଛି । ତୁ ମୋତେ ନେଇ ଏକ ମନ୍ଦିର ପ୍ରତିଷ୍ଠା କରି ରକ୍ଷାକର ।

ମୁଁ ମୂଷିକ ଦୈତକୁ ମାରିବା ପାଇଁ ମାର୍ଜ୍ଜାର କେଶରୀ ବେଶରେ ଏଠାରେ ଅପେକ୍ଷା କରି ରହିଲି ।'' ଏହାପରେ କଳା ମୁଗୁନି ପଥରର ବିରାଡ଼ି ମୂର୍ତ୍ତିଟିଏ ଗର୍ତ୍ତରୁ ବାହାରିଲା । ମୂର୍ତ୍ତିଟି ନେଇ ପାଟଣାର ତତ୍‌କାଳୀନ ମହାରାଜ ବୈଜଳଦେବଙ୍କୁ ଜଣାଇବାରୁ ସେ ଏକ ମନ୍ଦିର ନିର୍ମାଣ କରାଇଲେ । କନ୍ଧ ବଂଶଧରମାନେ ଏହି ଦେବତାଙ୍କ ପୂଜା ଆରମ୍ଭ କଲେ ।

ଏହି ଜନଶ୍ରୁତିର ବିଚାର/ବିଶ୍ଳେଷଣ ମାଧ୍ୟମରେ ସତ୍ୟର ସୂଚନା ମିଳିଥାଏ । ଜନଶ୍ରୁତିରେ ବର୍ଣ୍ଣିତ ପ୍ରସଙ୍ଗରେ ଦୁଇଟି ପରସ୍ପର ବିରୋଧୀ ସାଂସ୍କୃତିକ ଚିନ୍ତାଧାରାର ସମନ୍ୱୟ ପାଇଁ ଉଦ୍ୟମ କରାଯାଇଛି । ଏକ ପକ୍ଷରେ ପର୍ବତାଞ୍ଚଳରେ ପ୍ରସିଦ୍ଧ ମୂଷିକ ନାମକ ଜୀବ ସହିତ ଦୈତ୍ୟ ଓ ରାବଣ (ଏକ ସଂସ୍କୃତିର ସଙ୍କେତ); ଅନ୍ୟ ପକ୍ଷରେ ଏମାନଙ୍କର ଶତ୍ରୁ/ପ୍ରତିପକ୍ଷ ରାମଚନ୍ଦ୍ରଙ୍କ ଓ ତାଙ୍କର ବିଡ଼ାଳ ନରସିଂହ ରୂପ ଧାରଣ (ବିଡ଼ାଳ ମୂଷିକର ଶତ୍ରୁ) ଅନ୍ୟ ଏକ ସଂସ୍କୃତିର ସଙ୍କେତ । ଏହି ଦୁଇଟି ଚିନ୍ତାଧାରା ଆର୍ଯ୍ୟ ଓ ଅନାର୍ଯ୍ୟ ସଂସ୍କୃତିକୁ ଉପସ୍ଥାପନ କରନ୍ତି । କନ୍ଧମାନଙ୍କର ବିଡ଼ାଳ ନରସିଂହଙ୍କର ସଫଳ ଅନ୍ୱେଷଣରେ ଏବଂ ପରେ ଏକ ବୈଷ୍ଣବ ମନ୍ଦିରରେ ଏହାଙ୍କର ଉପାସନାରେ ଏହି ଚିନ୍ତାଧାରା ଦ୍ୱୟର ସମନ୍ୱୟ ହୋଇଛି । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ଏକ ହିନ୍ଦୁ ମନ୍ଦିରରେ ପୂର୍ବରୁ ପୂଜିତ କନ୍ଧ ଦେବତାକୁ ହିନ୍ଦୁ ଦେବତାରେ ପରିଣତ କରି ପୂଜା କରାଯାଇଥିଲା । ପରେ କନ୍ଧ ପୂଜକମାନଙ୍କୁ ହିନ୍ଦୁ ମନ୍ଦିରରେ ଅଗ୍ରାଧିକାର ବା ଏକମାତ୍ର ପୂଜକ ଭାବରେ ଗ୍ରହଣ କରିନେବା ପାଇଁ ଏହି ଜନଶ୍ରୁତିଟି ସୃଷ୍ଟି କରାଗଲା । ଏହାଦ୍ୱାରା ରାଜଶକ୍ତିର କ୍ଷମତା - ବିଧିସିଦ୍ଧ (Legitimation of Power) ଏବଂ ସାମାଜିକ ଶ୍ରେଣୀଗୁଡ଼ିକର ସାଂସ୍କୃତିକ ସମନ୍ୱୟ ପାଇଁ ଉଦ୍ୟମ ସଫଳ ହୋଇପାରିଲା । ବିଡ଼ାଳ ନରସିଂହଙ୍କର ମୂର୍ତ୍ତିଟିକୁ ବିଚାରକୁ ନେଲେ ଏହା ଏକ ଆଦିବାସୀ ବିଗ୍ରହର ପରିବର୍ତ୍ତିତ ରୂପ ବୋଲି ଗ୍ରହଣ କରିନେବାକୁ ପଡ଼େ ।

---

ପ୍ରସଙ୍ଗ ନିର୍ଦ୍ଦେଶ

୧. ସାରଳା ମହାଭାରତ, ସଭାପର୍ବ, ପୃ : ୫୧୪-୧୫
୨. ମହାନ୍ତି, ବିଚିତ୍ରାନନ୍ଦ, ନୃସିଂହ ଆରାଧନା, ଗ୍ରନ୍ଥମନ୍ଦିର, ୧୯୮୨, ପୃ-୧୪୫ ।
୩. Epigraphia India (ଏହାପରେ ସର୍ବତ୍ର ସୂଚୀତ EI), Vol. IX, P. 182-185.
୪. EI, Vol. IX, P. 184
୫. Ibid

୬. ମହାଳିକ, ନିରାକାର, ଶ୍ରୀ ନୃସିଂହନାଥ, ତତ୍ତ୍ୱ ମନ୍ଦିର ଓ କ୍ଷେତ୍ର ପରିଚୟ, ଆଗାମୀ ସାହିତ୍ୟ ସଂସଦ, ପଦ୍ମପୁର, ୧୯୮୪, ଚତୁର୍ଥ ପରିଚ୍ଛେଦ ।

୭. Das, D.R. Temples of Orissa, the study of a Sub-style, Agam Kala Prakashan, Delhi, 1982, P. 45.

୮. ମିଶ୍ର,ବିନାୟକ, Narasimhanatha stone inscription of Vaijjala Deva, Indian Historical Quarterly, Vol. XII, P. 485 ff.

୯. ବେଗ୍‌ଲାର୍‌ଙ୍କର ମତ ୧୮୮୧ରେ ଆଲେକ୍‌ଜାଣ୍ଡର କନିଂହମ୍‌ଙ୍କର Archaeological Survey of Indiaରେ ସ୍ଥାନ ପାଇଥିଲା ।
Beglar J.D., Report of Tours in the South Eastern Provinces, 1874-76, P. 142.

୧୦. ଦାଶ, କୈଳାସଚନ୍ଦ୍ର, "Gangeswar-Chodaganga and the temple of Purusottama-Jagannatha", Orissa Historical Research Journal (ଏହାପରେ ସର୍ବତ୍ର ସୂଚୀତ OHRJ) Vol. XXXII, Nos. III and IV P. 65-84.

୧୧. Sharma, R.K., The Kalachuris and Their Times, Sundeep Prakashan, Delhi, 1980, P. 52

୧୨. ତତ୍ରୈବ, EI, Vol. XIII, No. 96 and 100.

୧୩. Singh Deo, Jitamitra Prasad, Cultural Profile of South Kosala, Gyan Publishing House, Delhi, P. 251.

୧୪. ତତ୍ରୈବ, ପୃ. ୨୫୦-୨୫୧ ।

୧୫. ତତୈବ, ପୃ, ୨୫୧ । ପୃ. ୩୪୦-୩୪୨

୧୬. ତତ୍ରୈବ, ପୃ-୩୪୨ ।

୧୭. ଦାଶ, କୈଳାସଚନ୍ଦ୍ର, "Anangabhima" III, OHRJ, Vol. XXXV, No. 1 and II, P. 5-9
Panigrahi, K.C., "Sonepur stone inscription of Bhanudeva" OHRJ, Vol. X, No. IV, P. 8-9.

୧୮. Eschmann, A., "The Visnava typology of Hinduization and the origin of Jagannatha", The cult of Jagannatha and the Regional Tradition of Orissa, Edited by a Eschman, H. Kulke and G.C. Tripathy, 1978/86, P. 107.

୧୯. Das, D.R. ପୂର୍ବୋକ୍ତ ପୁସ୍ତକ, ପୃ-୩୩ ।

୨୦. Mishra, Rama Prasad, Sahajayana-A study of Tantric Bud-

dhism, Calcutta, 1991, P.-54.

୨୧. Sahu, N.K., Buddhism in Orissa, Utkal University, 1958, P. 100-101.

Mishra, R.P., ପୂର୍ବୋକ୍ତ ପୁସ୍ତକ, ପୃ- ୫୪ ।

୨୨. Mishra, R.P. ପୂର୍ବୋକ୍ତ ପୁସ୍ତକ, ପୃ-୫୪-୫୫ ।

୨୩. Eschmann, A., ପୂର୍ବୋକ୍ତ ପ୍ରବନ୍ଧ, ୧୯୭୮/୮୬, ପୃ-୧୦୭ ।

୨୪. ମହାଳିକ, ନିରାକାର, ପୂର୍ବୋକ୍ତ ପୁସ୍ତକ, ୧୯୮୪, ପୃ. ୯-୧୦ ।

ଯୁଗଦାସ ରଚିତ ନୃସିଂହଚରିତ ଅଧ୍ୟାପକ ନାରାୟଣ ପୃଷେଠ୍ ସମ୍ପାଦନା କରିଛନ୍ତି ।



# ବଣାଇ: ଭୂୟାଁ ଆଧିପତ୍ୟର ପୃଷ୍ଠଭୂମି

ଅତୀତର ଅନେକ ଘଟଣା ଆଜି ସୁସ୍ପଷ୍ଟ ନୁହେଁ । ଅତୀତର ରାଜନୈତିକ ସାଂସ୍କୃତିକ ଧାରା ବାଧାପ୍ରାପ୍ତ ଅବସ୍ଥାରେ ତାହାର ପଥ ବଦଳାଇଯାଇଛି । ତେଣୁ ଆଞ୍ଚଳିକ ସ୍ତରରେ କୌଣସି ସ୍ଥାନର ଅତୀତ ସମ୍ପର୍କରେ ଜାଣିବାର ଆବଶ୍ୟକତା ଥିଲେ ମଧ୍ୟ ଗବେଷକ ନିରାଶ ହୋଇଯାଏ । ଏହି ଇତିହାସର ଅବରୁଦ୍ଧ କୋଠରୀ ମଧ୍ୟକୁ ସତ୍ୟାନୁସନ୍ଧିତ୍ସୁ ସହଜରେ ପ୍ରବେଶ କରିପାରେ ନାହିଁ । ଜନଶ୍ରୁତି ଓ ଅନ୍ୟ ପ୍ରାମାଣିକ ତଥ୍ୟ ମଧ୍ୟରେ ସତ୍ୟର କ୍ଷୀଣ ରେଖା ଏପରି ଭାବରେ ଆଙ୍କି ହୋଇ ରହିଯାଏ ଯେ ତାହା ସହଜ ଦୃଷ୍ଟିରେ ଦେଖି ହୁଏ ନାହିଁ । ଓଡ଼ିଶାର ରାଜନୈତିକ ସାଂସ୍କୃତିକ ଇତିହାସର ଚର୍ଚ୍ଚା କ୍ଷେତ୍ରରେ-ନାନା ପ୍ରକାର ଅସୁବିଧା ଅନୁଭବ କରାଯାଇଛି । ତଥାପି ବର୍ଷ ବର୍ଷ ଧରି ନୂତନ ତଥ୍ୟର ଆବିଷ୍କାର ଓ ପୁରାତନ ତଥ୍ୟର ବାରମ୍ବାର ବିଶ୍ଳେଷଣ ଦ୍ୱାରା ଅତୀତ ଓଡ଼ିଶାର କିଛି ସ୍ମରଣୀୟ ଘଟଣାବଳୀ ସହିତ ଗବେଷକ ପରିଚିତ ହୋଇପାରିଛି । କିନ୍ତୁ ଓଡ଼ିଶାର ଧାରାବାହିକ ଇତିହାସ ପାଇଁ କ୍ଷୁଦ୍ର କ୍ଷୁଦ୍ର ଅଞ୍ଚଳଗୁଡ଼ିକର ଅତୀତର ଜୀବନଧାରା ଉପରେ ଗବେଷଣା କରିବାର ଆବଶ୍ୟକତାକୁ ଅସ୍ୱୀକାର କରି ହେବ ନାହିଁ । ଯେଉଁ ସମସ୍ତ ଅଞ୍ଚଳଗୁଡ଼ିକର ଅତୀତର ରାଜନୈତିକ- ସାଂସ୍କୃତିକ ଘଟଣା ପ୍ରବାହକୁ ନେଇ ଅତୀତ ଓଡ଼ିଶାର ରାଜନୈତିକ- ସାଂସ୍କୃତିକ ଘଟଣାବଳୀର ବୃହତ ଧାରା ପ୍ରବାହିତ, ସେ ସବୁ ମଧ୍ୟରେ ବଣାଇର ସ୍ଥାନ ଗୌଣ ନୁହେଁ । ତାହାର ପ୍ରାଚୀନ ଓ ମଧ୍ୟକାଳର ରାଜନୈତିକ ଓ ସାଂସ୍କୃତିକ ଜୀବନଧାରାର ସଂକ୍ଷିପ୍ତ ବିବରଣୀ ଏହି ନିବନ୍ଧରେ ସ୍ଥାନ ପାଇଛି ।

ଘନ ଅରଣ୍ୟଶଙ୍କୁଳ ଅତ୍ୟୁଚ୍ଚ ପାର୍ବତ୍ୟ ଭୂମି ବଣାଇ ପ୍ରାୟ ଏକ ହଜାର ଦୁଇଶହ ଛୟାନବେ ବର୍ଗ ମାଇଲ ଅଞ୍ଚଳ ପରିବ୍ୟାପ୍ତ । ଉତ୍ତରରେ ପ୍ରାଚୀନ ଗାଙ୍ଗପୁର ରାଜ୍ୟ ଓ ସିଂହଭୂମି ଅଞ୍ଚଳ, ପୂର୍ବରେ କେଉଁଝର ଓ ଦକ୍ଷିଣପଶ୍ଚିମରେ ବାମଣ୍ଡା ରାଜ୍ୟ ଅବସ୍ଥିତ ।

ମାଙ୍କଡ଼ନଚା, ବାଦାମଗଡ଼, ଜଙ୍ଗ୍ରା ଓ ଛେଳିଆଟୋକା ପ୍ରଭୃତି ପର୍ବତମାଳାରେ ଏହି ରାଜ୍ୟ ବେଷ୍ଟିତ । ପ୍ରାଚୀନ ଓ ମଧ୍ୟଯୁଗରେ ବଣାଇ ଏକ ମଣ୍ଡଳ ରୂପେ ପରିଚିତ ଥିଲା । ଏହି ବୃହତ ସାମ୍ରାଜ୍ୟ ଭାରତକୁ ପ୍ରାଚୀନ କାଳରେ କେତେକ ମଣ୍ଡଳରେ ବିଭକ୍ତ କରାଯାଇଥିଲା । ଖ୍ରୀଷ୍ଟୀୟ ନବମ-ଦଶମ ଶତକରେ ବଣାଇ ଏକ ମଣ୍ଡଳ ହିସାବରେ ପ୍ରସିଦ୍ଧ ଥିବାର ପ୍ରମାଣ ଐତିହାସିକମାନେ ଏକ ତାମ୍ରଫଳକ ବର୍ଣ୍ଣିତ ବିବରଣୀରୁ ସଂଗ୍ରହ କରିଛନ୍ତି । ବଣାଇ ସମ୍ପର୍କିତ ଏହି ତାମ୍ରଫଳକ ଦଶମ ଶତାବ୍ଦୀର ବୋଲି ଐତିହାସିକମାନେ ମତ ଦେଇଛନ୍ତି (୧) । ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ତାମ୍ରଫଳକରେ ବର୍ଣ୍ଣିତ ବଣାଇ ମଣ୍ଡଳକୁ 'ତଲାଇ ମଣ୍ଡଳ' ବୋଲି ପାଠ କରିଥିଲେ । କିନ୍ତୁ ପରେ ଏହି ପାଠର ବିଶୋଧନ କରାଯାଇ ବଣାଇ ମଣ୍ଡଳ ବୋଲି ଗ୍ରହଣ କରାଯାଇଥିଲା । ବଣାଇ ତାମ୍ରଫଳକରେ ବର୍ଣ୍ଣିତ ବିବରଣୀରୁ ସ୍ପଷ୍ଟ ଜଣାଯାଏ ଯେ ଅନ୍ତତଃ ଖ୍ରୀଷ୍ଟୀୟ ନବମ-ଦଶମ ଶତକରେ ଏହି ରାଜ୍ୟ ମୟୂର ବଂଶୀୟ ରାଜାମାନଙ୍କ ଦ୍ୱାରା ଶାସିତ ହୋଇଥିଲା । ଏହି ମଣ୍ଡଳର ଶାସକ ଥିଲେ ଉଦୟ ବରାହ । ସେ ଜଣେ ସାମନ୍ତ ରାଜା ଥିଲେ । କାରଣ ଜଣେ ସାମନ୍ତ ରାଜାଙ୍କର ଆବଶ୍ୟକ ଉପାଧିକାଳା ତାଙ୍କର ଥିବାର ସୂଚନା ତାମ୍ରଫଳକର ବିବରଣୀ ବହନ କରିଛି । ଉଦୟ ବରାହଙ୍କର ପୂର୍ବ ପୁରୁଷ ଥିଲେ ତେଜ ବରାହ ଓ ଉଦିତ ବରାହ । ଏହି ରାଜବଂଶ ଚିତ୍ରକୁଟ ନାମକ ସ୍ଥାନରୁ ବଣାଇକୁ ଆସି ଶାସନ କରିଥିଲେ । ମୟୂର ବଂଶୀୟ ରାଜାମାନେ ଯେଉଁ ଚିତ୍ରକୁଟର ସୂଚନା ତାମ୍ର ଫଳକରେ ଦେଇଛନ୍ତି ତାହାକୁ ଐତିହାସିକମାନେ ରାଜସ୍ଥାନର ଚିତୋର ବୋଲି ଗ୍ରହଣ କରିଥିଲେ ମଧ୍ୟ ନିର୍ଦ୍ଦିଷ୍ଟ ଭାବରେ ସେହି ସ୍ଥାନରୁ ମୟୂରବଂଶ ରାଜାମାନେ ଆସିଥିବା କଥାକୁ ଗ୍ରହଣ କରାଯାଇନାହିଁ । (୨) ତେବେ ଚିତ୍ରକୁଟ ଅଞ୍ଚଳଟି ମଧ୍ୟ ଦକ୍ଷିଣ ଭାରତରେ ଅବସ୍ଥିତ ହୋଇପାରେ । ତାମ୍ରଫଳକରେ ମୟୂର ଚିହ୍ନ ଥିବାରୁ ରାଜବଂଶକୁ ମୟୂର ବଂଶ ବୋଲି ପ୍ରକାଶ କରାଯାଇଛି । ଏହି ମୟୂର ବଂଶୀୟ ରାଜାମାନେ ସେତେବେଳର ସାର୍ବଭୌମ ଶାସକ ଭୌମକର ରାଜାମାନଙ୍କର ଅଧୀନସ୍ଥ ଥିଲେ ବୋଲି କୁହାଯାଇପାରେ; କାରଣ ସେହି କାଳରେ ଭୌମକର ଶାସନ ଅନ୍ତର୍ଗତ ଅନେକ ମଣ୍ଡଳ ଥିଲା । ସେ ସବୁ ମଧ୍ୟରେ ଐରାବତ ମଣ୍ଡଳ, ଯମଗର୍ତ୍ତ ମଣ୍ଡଳ, ଖିଚିଙ୍ଗ ମଣ୍ଡଳ, ଖିଞ୍ଜାଳିମଣ୍ଡଳ ଓ ଶ୍ୱେତକ ମଣ୍ଡଳ ପ୍ରସିଦ୍ଧ । ତେଣୁ ବଣାଇ ମଣ୍ଡଳ ଏହି ସାର୍ବଭୌମ ଶାସନ ଅଧୀନରେ ଥିବା ମତକୁ ଅସ୍ୱୀକାର କରାଯାଇନପାରେ । ବଣାଇରେ ମୟୂର ବଂଶୀୟ ରାଜାମାନେ କେତେକାଳ ଶାସନ କରିଥିଲେ ସେ

ସମ୍ପର୍କରେ ନିର୍ଭରଯୋଗ୍ୟ ପ୍ରାମାଣିକ ଉପାଦାନର ଅଭାବ ରହିଛି, କିନ୍ତୁ କଳଚୁରି ରାଜାମାନଙ୍କର ତାମ୍ର ଫଳକ ବିବରଣୀରୁ କିଛି ତଥ୍ୟ ଏ ସଂପର୍କରେ ସଂଗ୍ରହ କରାଯାଇପାରେ ।

କଳଚୁରି ରାଜବଂଶର ଏକ ଶାଖା ମଧ୍ୟପ୍ରଦେଶର ରାୟପୁର ବିଳାସପୁର ଅଞ୍ଚଳରେ ମଧ୍ୟ ଯୁଗରେ ଶାସନ କରିଥିଲେ । ଖ୍ରୀଷ୍ଟୀୟ ଦ୍ୱାଦଶ ଶତକର ଦ୍ୱିତୀୟ ଦଶନ୍ଧିରେ ପଶ୍ଚିମ କୋଶଳର ଅଧିକାଂଶ ଅଞ୍ଚଳ ସେମାନେ ନିଜ ଅଧିନକୁ ଆଣିଥିଲେ । କଳଚୁରି ସମ୍ରାଟ ଜାଜଲଦେବ (ଖ୍ରୀ ୧୦୯୦- ୧୧୨୦) ଏକ ସଫଳ ଦିଗବିଜୟରେ ଦକ୍ଷିଣ କୋଶଳକୁ ନିଜ ଆୟତ୍ତକୁ ଆଣିଥିବା ବିଷୟ ତାମ୍ରଫଳକ ଗୁଡ଼ିକର ବିବରଣୀରୁ ଜଣାପଡ଼ିଛି । ତାଙ୍କ ବଂଶୀୟ ସମ୍ରାଟ ଦ୍ୱିତୀୟ ପୃଥ୍ୱୀଦେବ (ଖ୍ରୀ. ୧୧୩୫- ୧୧୬୫)ଙ୍କର ଏକ ତାମ୍ରଫଳକରେ ବର୍ଣ୍ଣନା କରାଯାଇଛି ଯେ ଜଗପାଳ (ଜାଜଲଦେବଙ୍କର ସେନାପତି) ତାଙ୍କ ପ୍ରଭୁଙ୍କ ତରଫରୁ ମାୟୁରିକ ରାଜ୍ୟ ଅଧିକାର କରିଥିଲେ । (୩) ଐତିହାସିକମାନେ ଏହି ମାୟୁରିକ ରାଜ୍ୟକୁ ଭଞ୍ଜଭୂମି ମୟୂରଭଞ୍ଜ ସହିତ ଚିହ୍ନିତ କରିଛନ୍ତି । (୪) କିନ୍ତୁ ଏ ସିଦ୍ଧାନ୍ତକୁ ଗ୍ରହଣ କରାଯାଇପାରିବ ନାହିଁ । ମୟୂରଭଞ୍ଜ ଖ୍ରୀଷ୍ଟୀୟ ଦ୍ୱାଦଶ ଶତକରେ ପରିଚିତ ନଥିଲା । ପୁଣି ତାମ୍ର ଫଳକ ବିବରଣୀର ଲେଖକ ପ୍ରାଚୀନ ଭଞ୍ଜ ନାମକୁ ଏହି କାଳରେ ଉପେକ୍ଷା କରିବା ମଧ୍ୟ ଗ୍ରହଣୀୟ ନୁହେଁ । ମୟୂରଭଞ୍ଜ ଅଞ୍ଚଳଟି ଉତ୍କଳ ସମ୍ରାଟ ଚୋଡ଼ଗଙ୍ଗଦେବଙ୍କ ଅଧିନରେ ଏହି କାଳରେ ରହିଥିଲା । ଏସବୁ ଦୃଷ୍ଟିରୁ ମୟୂର ବଂଶୀୟ ରାଜାମାନେ ଦ୍ୱାଦଶ ଶତାବ୍ଦୀର ପ୍ରଥମ ଓ ଦ୍ୱିତୀୟ ଦଶନ୍ଧିରେ ମଧ୍ୟ ବଣାଇ ମଣ୍ଡଳରେ ଶାସନ କରୁଥିବାର ମତକୁ ଅସ୍ୱୀକାର କରିବାର କାରଣ ନାହିଁ । ଏହି ମୟୂରବଂଶୀ ରାଜାମାନେ ବଣାଇରେ ଶାସନ କାଳରେ (ଅନ୍ତତଃ ଦ୍ୱାଦଶ ଶତକବେଳକୁ) ବଣାଇର ସର୍ବ ପରାକ୍ରମଶାଳୀ ଗୋଷ୍ଠୀ ଭୂୟାଁମାନେ ରାଜନୀତିରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ଭୂୟାଁ ମୁଖ୍ୟ ସାବନ୍ତମାନେ ଶାସନ କ୍ଷେତ୍ରରେ ମାୟୁରିକ ରାଜ୍ୟ ବଣାଇରେ କ୍ଷମତାଶାଳୀ ଥିବାର ଅନେକ ପ୍ରମାଣ ରହିଛି:

(୧) କଳଚୁରି ରାଜାଙ୍କର ତାମ୍ରଫଳକର ବିବରଣୀରୁ ଜଣାଯାଇଛି ଯେ ମାୟୁରିକମାନଙ୍କ ସହିତ ସାବନ୍ତ ମଣ୍ଡଳେଶ୍ୱର ମଧ୍ୟ ପରାଜୟ ବରଣ କରିଥିଲେ । (୫)

(୨) ପଣ୍ଡିତ ମଦନ ମୋହନ ମିଶ୍ରଙ୍କ ରଚିତ କାଦମ୍ବ ଗାଥା ଏବଂ ପଣ୍ଡିତ

ଗୋପୀନାଥ ମିଶ୍ର କବି ଭୂଷଣଙ୍କ ରଚିତ ବଂଶାବଳୀ ଅନୁସାରେ କଦମ୍ବବଂଶୀ ଶାସନ ବଣାଇରେ ଆରମ୍ଭ ହେବା ପୂର୍ବରୁ ଏହା ପାଞ୍ଚ ଭାଗରେ ବିଭକ୍ତ ହୋଇ ପାଞ୍ଚଜଣ ଆଦିବାସୀ ଭୂୟାଁମାନଙ୍କ ଦ୍ୱାରା ଶାସିତ ହେଉଥିଲା । ଏହି ପାଞ୍ଚ ଭୂୟାଁ ମୁଖ୍ୟ ସାବନ୍ତ ନାମରେ ପରିଚିତ ଥିଲେ (୬) । କାଳକାଳ ପାଇଁ ରାଜବଂଶ ପରିବର୍ତ୍ତନ ସତ୍ତ୍ୱେ ଏହି ଭୂୟାଁ ଜମିଦାର (ସାବନ୍ତମାନେ) ପ୍ରାଧାନ୍ୟ ହରାଇନଥିଲେ । ୧୯୧୦- ୧୩ର ସେଟେଲମେଣ୍ଟ ରିପୋର୍ଟରେ ଭୂୟାଁମାନଙ୍କର ମୁଖ୍ୟ (ସାବନ୍ତ) କେବଳ ଜଣେ ଜମିଦାର ହିସାବରେ ଅଧିକାର ପାଇଥିଲେ । ତାଙ୍କ ଅଧିନରେ ବ୍ରାହ୍ମଣୀ ନଦୀର ପୂର୍ବ କୂଳର ରାଜ୍ୟର ଦକ୍ଷିଣ ଭାଗର ଏକ କ୍ଷୁଦ୍ର ଜମିଦାରୀ ରହିଥିଲା । ଏହା ୨୭ଟି ଗ୍ରାମର ମିଶ୍ରଣରେ ଗଠିତ (୭) ।

(୩) ଖ୍ରୀଷ୍ଟୀୟ ତ୍ରୟୋଦଶ ଶତକର ଦ୍ୱିତୀୟ ଦଶନ୍ଧିରେ କଳଚୁରି ରାଜାମାନଙ୍କ ଠାରୁ ସମ୍ବଲପୁର- ସୋନପୁର ଅଞ୍ଚଳକୁ ଗଙ୍ଗରାଜା ଅନଙ୍ଗଭୀମ ଅଧିକାର କରିବା ପରେ ବଣାଇ ଓ ଗାଙ୍ଗପୁର ରାଜ୍ୟ ବିଜୟ କରିଥିଲେ । ମାଦଳାପାଞ୍ଜିରେ ଏହା ଭୂୟାଁପୁରାଣ ବିଜୟ ନାମରେ ସୂଚିତ (୮) । ଏହା ଜଣାଇଦିଏ ଯେ ଭୂୟାଁମାନେ ବଣାଇରେ ଶାସନ କ୍ଷେତ୍ରରେ ପ୍ରତ୍ୟକ୍ଷ ଭାବରେ ପରାକ୍ରମୀ ଥିଲେ ।

ଏସବୁ ଦୃଷ୍ଟିରୁ ବଣାଇ ରାଜ୍ୟ ଶାସନ ଇତିହାସରେ ଭୂୟାଁ ଆଧିପତ୍ୟର ନାନା ପର୍ଯ୍ୟାୟକୁ ଅସ୍ୱୀକାର କରାଯାଇପାରିବ ନାହିଁ । ବଣାଇ ମଣ୍ଡଳରେ କଦମ୍ବ ବଂଶୀ ଶାସନ ଭୂୟାଁ ଆଧିପତ୍ୟର ଏକ ନୂତନ ପର୍ଯ୍ୟାୟ ଆରମ୍ଭ କରିଥିଲା । ବଣାଇ ମଣ୍ଡଳରେ କଦମ୍ବବଂଶୀ ଶାସନ ସମ୍ପର୍କରେ ନାନା ପ୍ରକାର ଜନରବ ଆଜି ପର୍ଯ୍ୟନ୍ତ ରହିଅଛି । ଏହି ସବୁ ଜନରବ ଭୂୟାଁ ଆଧିପତ୍ୟକୁ ସ୍ୱୀକାର କରିଥାଏ:

୧ - ପ୍ରଥମ ଜନଶ୍ରୁତି ଅନୁସାରେ ଆର୍ଯ୍ୟ ଜାତିର ଦୁଇ ଭାଇ ଶତ୍ରୁ ଦ୍ୱାରା ବିତାଡ଼ିତ ହୋଇ ଅନାର୍ଯ୍ୟ ଶାସିତ ବଣାଇରେ ପ୍ରବେଶ କଲେ । ଶତ୍ରୁମାନେ ଏହି ଦୁଇ ଜଣଙ୍କୁ ହତ୍ୟା କରିବା ପାଇଁ ମଧ୍ୟ ଅନୁସରଣ କଲେ । ଭୟଭୀତ ହୋଇ ସେ ଦୁଇ ଜଣ ବଣାଇରେ ପ୍ରବେଶ କରିଥିଲେ ଏବଂ ଆତ୍ମରକ୍ଷା ପାଇଁ ଶିବ ମନ୍ଦିରରେ ଆଶ୍ରୟ ନେଇଥିଲେ । ରାତ୍ରରେ ଶିବ (ବାଣେଶ୍ୱର)ଙ୍କୁ ଆରାଧନା କରି ଶୋଇଯାଇଥିଲେ । ସ୍ୱପ୍ନରେ ବାଣେଶ୍ୱର ସେ ଦୁଇ ଜଣଙ୍କୁ ଶତ୍ରୁ ଅନୁଧାବନ କରୁଥିବାରୁ ମନ୍ଦିର ନିକଟସ୍ଥ କଦମ୍ବଗଛ କୋରଡ଼ରେ ଲୁଚିଯିବାକୁ ନିର୍ଦ୍ଦେଶ ଦେଲେ । ଏ ନିର୍ଦ୍ଦେଶାନୁସାରେ ସେ ଦୁଇ ଭାଇ କଦମ୍ବ କୋରଡ଼ରେ ଆଶ୍ରୟ ନେଲେ । ରାତ୍ରି ପ୍ରଭାତ ହେବା ମାତ୍ରେ ହଠାତ୍

ଗୋଟିଏ ମୟୂର ଆସି ମନ୍ଦିରରୁ କଦମ୍ବ ଗଛ ଯାଏ ଧୂଳିରେ ପଡ଼ିଥିବା ଦୁଇ ଭାଇଙ୍କର ପଦଚିହ୍ନ ନିଜ ପୁଚ୍ଛରେ ପୋଛିଦେଇ ଉଡ଼ିଗଲା । କିଛି ସମୟ ପରେ ଶତ୍ରୁମାନେ ପଦଚିହ୍ନ ଠଉରାଇ ମନ୍ଦିରକୁ ଆସିଲେ । ମାତ୍ର ସେଠାରେ ସେମାନେ ଦୁଇଭାଇଙ୍କୁ ପାଇଲେ ନାହିଁ କିମ୍ବା ପାଖାପାଖି ସ୍ଥାନରେ କୌଣସି ଠାରେ ପଦଚିହ୍ନ ଦେଖିଲେ ନାହିଁ । ଏହିପରି ଅବସ୍ଥାରେ ହତାଶ ହୋଇ ଶତ୍ରୁମାନେ ପଳାଇଗଲେ । ଏଣେ ବାଣେଶ୍ୱର ବଣାଇର ଅନାର୍ଯ୍ୟ ରାଜାଙ୍କୁ ସ୍ୱପ୍ନରେ ତାଙ୍କ ଶରଣାର୍ଥୀ ଦୁଇଜଣ (ଆର୍ଯ୍ୟ ଯୁବକ) ସେହିଦିନଠାରୁ ବଣାଇର ଶାସକ ବୋଲି ନିର୍ଦ୍ଦେଶ ଦେଲେ । ସେ ଦୁଇ ଜଣଙ୍କୁ କଦମ୍ବ ଗଛ କୋରଡ଼ରୁ ଆଣି ବଣାଇ ସିଂହାସନରେ ଅଭିଷିକ୍ତ କରିବାକୁ ମଧ୍ୟ ବାଣେଶ୍ୱର ନିର୍ଦ୍ଦେଶ ଦେଲେ । ଏହି ନିର୍ଦ୍ଦେଶାନୁସାରେ ବଣାଇ ରାଜା ଅନାର୍ଯ୍ୟ ବାଣେଶ୍ୱର ସେବକ ଦୁଇ ଭାଇଙ୍କୁ ନେଇ ବାଣେଶ୍ୱରଙ୍କ ଛଡ଼ାଫୁଲରେ ଅଭିଷିକ୍ତ କରି ରାଜ୍ୟଭାର ଅର୍ପଣ କଲେ । ରାଜ୍ୟ ଦେବା ସମୟରେ ଅନାର୍ଯ୍ୟ ରାଜା ତାହାର ବାର୍ଷିକ ଶ୍ରାଦ୍ଧ ସ୍ୱରୂପ ତାହାର ପୂଜା କରିବା ପାଇଁ କଦମ୍ବରାଜାଙ୍କୁ ପ୍ରତିଜ୍ଞାବଦ୍ଧ କରାଇଥିଲା । (୯) । ମୟୂର ପାଦଚିହ୍ନ ଲିଭାଇ ଶତ୍ରୁ ହାତରୁ ରକ୍ଷା କରିଥିବାରୁ ସ୍ମାରକୀ ହିସାବରେ ମୟୂର ଚିହ୍ନ ନିଜ ଧ୍ୱଜରେ ବା ମୋହରରେ କଦମ୍ବ ରାଜା ଧାରଣ କଲେ । କଦମ୍ବ ଗଛରେ ଆଶ୍ରୟ ନେଇ ଜୀବନ ବଞ୍ଚାଇ ଥିବାରୁ ନିଜକୁ କଦମ୍ବବଂଶୀ ବୋଲି ଅଭିହିତ କଲେ ।

୨. ଦ୍ୱିତୀୟ ଜନଶ୍ରୁତିଟି ଖଣ୍ଡାଧାର ଜଳପ୍ରପାତ ପାଖରେ ଦଳବଦ୍ଧ ଭାବେ ରହୁଥିବା ପାଉଡ଼ି ଭୂୟାଁ (ଯେଉଁମାନଙ୍କର ବଣାଇରେ ପାଳିତ ହେଉଥିବା ଦଶହରା ପର୍ବ ସହିତ ନିବିଡ ସମ୍ପର୍କ ରହିଛି) ମାନଙ୍କ ଠାରୁ ସଂଗୃହୀତ (୧୦) । ବଣାଇ ଗଡ଼ଜାତର କୋଇଡ଼ା ଉପତ୍ୟକାର କୁଲା ଗ୍ରାମରେ କୁଲାଲ ଅସୁର ରହୁଥିଲା । ସେହି ଅସୁରର ସାତ ଝିଅ ଉଲଗ୍ନ ଅବସ୍ଥାରେ ମାଛ ଧରୁଥିଲେ । ସାତ ଜଣ ଭୂୟାଁ ଯୁବକ ପାରିଧିବେଳେ ସେମାନଙ୍କୁ ଦେଖି ଲଜ୍ଜା ନିବାରଣ ପାଇଁ ସାତଖଣ୍ଡ ଶାଢ଼ୀ ସେମାନଙ୍କ ପାଖକୁ ଫିଙ୍ଗି ଦେଲେ । ଯୁବତୀମାନେ ଲୁଗାପିନ୍ଧି ଘରକୁ ଫେରି ଯୁବକମାନଙ୍କୁ ଅତିଥି ଭାବରେ ଚର୍ଚ୍ଚା କରିବା କାଳରେ ଭାତ ଓ କୁକୁଡ଼ା ମାଂସ ଦେଇଥିଲେ । ସାତଜଣଙ୍କ ମଧ୍ୟରେ ଥିବା ସାନଭାଇ ବିଳମ୍ବରେ ଆସିଲା । କିନ୍ତୁ ଖାଦ୍ୟ ଖାଇବା ପରିବର୍ତ୍ତେ ସେ ଘୋଡ଼ାପିଠିରେ ବସି ବନସ୍ତ ମଧ୍ୟକୁ ପଳାଇ ଆସିଲା । ଯୁବତୀମାନେ ତାହାକୁ ଅନୁସରଣ କଲେ । ଭୂୟାଁ ଘୋଡ଼ା ଯେଉଁ ବାଟେ ଯାଇଥିଲା, ବନସ୍ତ ମଧ୍ୟରେ ଥିବା ଏକ ମୟୂର ତାର ପଛେ ପଛେ ଉଡ଼ି ଘୋଡ଼ାର ଟାପୁ ଚିହ୍ନ ଲିଭାଇ ଦେଇଥିଲା । ଯୁବତୀମାନେ କିଛି

ବାଟ ପରେ ଆଉ ବାଟ ପାଇଲେ ନାହିଁ । ସେମାନେ ଫେରିଆସି ଛଅଜଣ ଯୁବକଙ୍କୁ ବିବାହ କଲେ । ଅସୁର କନ୍ୟା ମାନଙ୍କୁ ବିବାହ କରିଥିବା ଛଅଜଣ ଯୁବକ ଜାତି ପରିତ୍ୟକ୍ତ ଭାବେ ବନସ୍ତ ମଧ୍ୟରେ ରହିଗଲେ । ମାତ୍ର ସାନ ଭୂୟାଁ ଯୁବକ ଖାଦ୍ୟ ନଖାଇ ନିଜ ଜାତି ରକ୍ଷା ନିମନ୍ତେ ପଳାଇ ଆସିଥିଲା । ସେ ବଣାଇ ରାଜଗାଦିରେ ଅଭିଷିକ୍ତ ହେଲା ।

୩- ଅନ୍ୟ ଏକ କିମ୍ବଦନ୍ତୀ ଅନୁସାରେ ଭୂୟାଁ ବଂଶର ସାତ ଭାଇଙ୍କ ମଧ୍ୟରେ ବିବାଦ ଲାଗିଲା । (୧୧) । ବିବାଦର ସମାଧାନ ଲାଗି ସେମାନେ ଗୋଟିଏ ସର୍ତ୍ତରେ ରାଜି ହେଲେ । କଦମ୍ବ ଗଛ ଡ଼ାଳରେ ଗୋଟିଏ ପେଚା ବସିଥିଲା । ଯେଉଁ ଭାଇ ଲକ୍ଷ୍ୟଭେଦରେ ସଫଳ ହୋଇ ପେଚାଟିକୁ ଏକାଥରକେ ମାରିଦେବ ସେହି ରାଜପଦରେ ଅଭିଷିକ୍ତ ହେବ । ଲକ୍ଷ୍ୟଭେଦରେ ସଫଳ ହୋଇଥିବା ଭାଇ ଜଣକ କଦମ୍ବ କେଶରୀ ପଦବୀ ଧାରଣ କରି ବଣାଇ ଗଡ଼ଜାତର ରାଜପଦରେ ଅଭିଷିକ୍ତ ହେଲା । ବଣାଇ ରାଜବଂଶର ଆଜି ପର୍ଯ୍ୟନ୍ତ ଯେଉଁ ଉତ୍ତରାଧିକାରୀମାନେ ଅଛନ୍ତି, ସେମାନଙ୍କ ନାମ ସହିତ କଦମ୍ବ କେଶରୀ ଉପାଧି ଯୋଡ଼ା ଯାଇଛି ।

୪- କବଡ଼େନ-ରାମସେ (L.E.B. Cobden- Ramsay) ଅନ୍ୟ ଏକ ଜନଶ୍ରୁତି ଏ ସମ୍ପର୍କରେ ପ୍ରକାଶ କରିଛନ୍ତି:

They say that they came from Sakaldwip or Ceylon and that the founder of the family was abandoned by his mother under a Kadamba tree. Being thus on the point of falling in to the hands of an enemy the infant was rescued by a Peacock which swallowed him and kept him in its craw until the danger was past. In gratitude for this service the peacock was adopted as the family emblem, In reference to their early connection with the Kadamba tree, the chiefs describe themselves as Kadamda Vamsi Rajputs. (୧୨)

ଏହିପରି ଏକ ଜନଶ୍ରୁତିକୁ ଉଦ୍ଧାର କରିଥିବା କବ୍‌ଡେନ୍- ରାମସେ ମହାଶୟ ପରେ ପରେ ପ୍ରକାଶ କରିଛନ୍ତି:

Looking, however, to their position as chiefs more powerful Bhuiya Vassals who hold the bulk of the land, command the militia of the State and claim the right of conferring the tika or token of its investiture on the chief it is possible that the Raja of Bonai was originally only the head of the Bhuiya tribe. (୧୩) ।

କବଡ଼େନ୍- ରାମସେଙ୍କର ଏହିପରି ମନ୍ତବ୍ୟକୁ ଅଗ୍ରାହ୍ୟ କରିବା ପାଇଁ ବର୍ତ୍ତମାନ

ଅନେକ ଉପାଦାନ ରହିଛି । ପ୍ରାଚୀନ କାଳରେ କଦମ୍ବବଂଶୀ ଶାସନ ଭାରତରେ ଥିଲା । ଯଦି ବଣାଇର କଦମ୍ବବଂଶୀ ରାଜାମାନେ ଭୂୟାଁ ମାନଙ୍କର ମୁଖ୍ୟ ଥିଲେ, ତେବେ କଦମ୍ବବଂଶୀ ବୋଲି ଦାବି କରିବା ଦ୍ୱାରା କେଉଁ ଉଦ୍ଦେଶ୍ୟ ସାଧିତ ହୋଇଥିବ ? ଏହି ରାଜାମାନେ ମୟୂରକୁ ଚିହ୍ନ ରୂପେ ଗ୍ରହଣ କରିବା ପରେ କ୍ଷମତା ପ୍ରତିଷ୍ଠାର ପଥ ସୁଗମ ହୋଇଥିବ । କିନ୍ତୁ କଦମ୍ବବଂଶୀ ବୋଲି ନିଜକୁ ପରିଚିତ କରିବା ଯୋଗୁ ସେମାନେ ଅନ୍ୟ ସ୍ଥାନରୁ ବଣାଇକୁ ଯାଇ ଶାସନ କରିଥିବାର ସ୍ପଷ୍ଟ ସୂଚନା ମିଳେ ।

ପ୍ରାଚୀନ କାଳରେ ଅର୍ଥାତ୍ ଖ୍ରୀଷ୍ଟୀୟ ଚତୁର୍ଥ- ପଞ୍ଚମ ଶତକରେ ଦକ୍ଷିଣ ଭାରତରେ ତୁଙ୍ଗଭଦ୍ରା ଅଞ୍ଚଳରେ ଯେଉଁ କଦମ୍ବବଂଶୀ ରାଜା ମୟୂର ଶର୍ମନ୍ ଶାସନ ପ୍ରତିଷ୍ଠା କରିଥିଲେ ତାହାଙ୍କର ବଂଶର ଉତ୍ପତ୍ତି ମୂଳରେ ଏହି କଦମ୍ବବୃକ୍ଷ ଓ ମୟୂର ପକ୍ଷୀ ମଧ୍ୟ ରହିଛନ୍ତି । (୧୪) ।

ତାଳଗୁଣ୍ଡ ଖମ୍ବ ଶିଳାଲିପି (ଖ୍ରୀଷ୍ଟୀୟ ପଞ୍ଚମ- ଷଷ୍ଠ ଶତକ)ରେ ଏହି ଦକ୍ଷିଣ ଭାରତୀୟ କଦମ୍ବବଂଶୀ ଶାସନ ଆରମ୍ଭ ସମ୍ପର୍କିତ ଜନଶ୍ରୁତି ସ୍ଥାନ ପାଇଛି (୧୫) । ତେବେ ଦକ୍ଷିଣ ଭାରତୀୟ କଦମ୍ବବଂଶୀ ଶାଖା ହିସାବରେ ବଣାଇର କଦମ୍ବ ବଂଶୀଙ୍କୁ ଗ୍ରହଣ କରିବା ପାଇଁ ବିଶେଷ ନିର୍ଭରଯୋଗ୍ୟ ପ୍ରାମାଣିକ ଉପାଦାନ ନାହିଁ । କାରଣ ଦକ୍ଷିଣ ଭାରତୀୟ ମୟୂରଶର୍ମନ୍ (କଦମ୍ବବଂଶୀ ଶାସନର ଆରମ୍ଭକର୍ତ୍ତା) ବ୍ରାହ୍ମଣ ଥିଲେ । କିନ୍ତୁ ବଣାଇର କଦମ୍ବବଂଶୀ ବ୍ରାହ୍ମଣ ଥିବାର ପ୍ରମାଣ ନାହିଁ (ଯଦିବା ବଣାଇର କଦମ୍ବବଂଶୀ ଶାସକ ବାହାରୁ ବଣାଇକୁ ପ୍ରବେଶ କରିଥିଲେ ବୋଲି ସମସ୍ତ ଜନଶ୍ରୁତି ଦାବୀ କରନ୍ତି) ।

ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଖ୍ରୀଷ୍ଟୀୟ ଦଶମ- ଏକାଦଶ ଶତାବ୍ଦୀର ବଣାଇକୁ ରାୟବଣରାଇ ବୋଲି ଅଭିଲେଖୀୟ ଉପାଦାନ ସାହାଯ୍ୟରେ ଚିହ୍ନିତ କରିଛନ୍ତି । ନିରାକାରପୁରରୁ ସଂଗୃହୀତ କଦମ୍ବବଂଶୀ ସମ୍ରାଟ ଉଦୟ ଖେଡ଼ିଙ୍କର ଏକ ତାମ୍ରଫଳକରେ ଏହି ରାୟବଣରାଇର ସୂଚନା ରହିଛି (୧୬) । ଏହି ରାୟବଣରାଇରୁ କଦମ୍ବବଂଶୀ କଳିଙ୍ଗର ଜୟନ୍ତୀପୁର ଠାରେ ଶାସନ କରିଥିଲେ । ରାଜଗୁରୁଙ୍କ ମତ ମଧ୍ୟ ଗ୍ରହଣୀୟ ନୁହେଁ । ଦଶମ- ଏକାଦଶ ଶତକରେ ମୟୂରବଂଶୀ ରାଜାମାନେ ବଣାଇରେ ଶାସନ କରୁଥିବାର ସୂଚନା ରହିଛି । ଏଣୁ ସେତେବେଳେ କଦମ୍ବବଂଶୀ ରାଜାଙ୍କୁ ବଣାଇରେ ଆବିଷ୍କାର କରାଯାଇନପାରେ । ଏହି ରାୟବଣରାଇ ଜୟନ୍ତୀପୁର ଠାରେ ଶାସନ କରୁଥିବା କଦମ୍ବବଂଶୀ ମାନଙ୍କର ଏକ ମୂଳସ୍ଥାନ ହୋଇପାରେ ଏବଂ

ଏହା ଦକ୍ଷିଣ ଭାରତର କୌଣସି ଏକ ସ୍ଥାନ ମଧ୍ୟ ହୋଇପାରେ । କାରଣ ଜୟନ୍ତୀପୁର ଠାରେ ଶାସନ କରୁଥିବା କଦମ୍ବବଂଶୀମାନଙ୍କ ପୂର୍ବରୁ ଦକ୍ଷିଣ ଭାରତରେ କଦମ୍ବବଂଶୀ ଶାସନ ସୁପରିଚିତ ଥିଲା । ଏହି ଦୃଷ୍ଟିରୁ ଗଙ୍ଗ ଅଭିଲେଖର ରାୟବଣରାଇ ନିର୍ଦ୍ଦିଷ୍ଟ ଭାବରେ ବଣାଇ ସହିତ ଚିହ୍ନିତ କରିବା ଏକ ସନ୍ଦେହଜନକ ସିଦ୍ଧାନ୍ତ ।

ବଣାଇରେ କଦମ୍ବବଂଶୀ ଶାସନ ଆରମ୍ଭ ସମ୍ପର୍କିତ ଜନଶ୍ରୁତିର ବୈଜ୍ଞାନିକ ବିଶ୍ଳେଷଣ ଆବଶ୍ୟକ । ତେବେ ଏ ସମସ୍ତ ଜନଶ୍ରୁତିରେ କେତୋଟି କଥା କୁହାଯାଇଛି ।

୧. ବଣାଇ ପ୍ରଥମେ ଅନାର୍ଯ୍ୟ/ଭୂୟାଁମାନଙ୍କର ରାଜ୍ୟ ଥିଲା ।

୨. ଏହି ଅଞ୍ଚଳ କଦମ୍ବ ବୃକ୍ଷ ଏବଂ ମୟୂର ପକ୍ଷୀ ପାଇଁ ପ୍ରାଚୀନ ଓ ମଧ୍ୟକାଳରେ ପ୍ରସିଦ୍ଧ ଥିଲା ।

୩. କଦମ୍ବବଂଶୀ ରାଜାମାନେ ବାହାରୁ ବଣାଇକୁ ପ୍ରବେଶ କରିଥିଲେ ଏବଂ ଭୂୟାଁମାନଙ୍କ ଠାରୁ କ୍ଷମତା ଛଡ଼ାଇଥିଲେ ପ୍ରଥମ ପର୍ଯ୍ୟାୟରେ । ପରେ ସେମାନେ ଭୂୟାଁମାନଙ୍କ ସହିତ ସୁସମ୍ପର୍କ ରଖି ଶାସନ କରିଥିଲେ ।

ବଣାଇର ରାଜନୈତିକ ସାଂସ୍କୃତିକ ଇତିହାସ ଚର୍ଚ୍ଚାର ଏକ ମୁଖ୍ୟ ଦିଗ ଭୂୟାଁ ଗୋଷ୍ଠୀ । ଭୂୟାଁମାନେ ବଣାଇ, ଗାଙ୍ଗପୁର ଓ ସିଂହଭୂମି ପ୍ରଭୃତି ଅଞ୍ଚଳର ପ୍ରଥମ ଅଧିବାସୀ ହିସାବରେ ପରିଚିତ । (୧୭) ସମ୍ଭବତଃ ବଣାଇଠାରେ ମୟୂର ବଂଶୀ ରାଜାମାନେ ରାଜତ୍ୱ କରିବା ପୂର୍ବରୁ ଭୂୟାଁ ମାନଙ୍କ ଦ୍ୱାରା ଏହା ଶାସିତ ହେଉଥିଲା । ସେମାନେ ହିଁ ଏହି ଅଞ୍ଚଳକୁ ବଣାଇ ନାମରେ ପ୍ରକାଶ କରିଥିବା କଥାକୁ ଅସ୍ୱୀକାର କରିହେବ ନାହିଁ । ବଣାଇ ତାମ୍ରଶାସନ ଅନୁସାରେ ମୟୂର ବଂଶର ଆଦିରାଜା ଉଦିତ ବରାହ ନିଜର ସୌର୍ଯ୍ୟ ଦ୍ୱାରା ଏଠାରେ କ୍ଷମତା ଅଧିକାର କରିଥିଲେ । ଏଣୁ ଏହି ରାଜବଂଶ ପୂର୍ବରୁ ଭୂୟାଁ ଶାସନ ପଦ୍ଧତିର ସ୍ଥିତିକୁ ଅବଜ୍ଞା କରାଯାଇ ପାରିବ ନାହିଁ । ଖୁବ୍ ସମ୍ଭବତଃ ଭୂୟାଁମାନେ ମୟୂର ବଂଶୀ ଶାସନକୁ ପ୍ରଥମେ ଅସ୍ୱୀକାର କରିଥିଲେ । କିନ୍ତୁ ମୟୂରମାନେ ଏହାର ଉପଯୁକ୍ତ ବ୍ୟବସ୍ଥା କରିଥିଲେ । ଏ ସମ୍ପର୍କରେ ଜନଶ୍ରୁତିରୁ ଉପାଦାନ ସଂଗ୍ରହ କରାଯାଇପାରେ ।

ବଣାଇବାସୀ ବଣାଇକୁ ବାଣାସୁର ରାଜ୍ୟ ବୋଲି କହି ଆସୁଛନ୍ତି । ବାଣେଶ୍ୱର ବଣାଇର ମୁଖ୍ୟ ଦେବତା । ଏହି ମନ୍ଦିରର ପଣ୍ଡା ଦେହୁରୀ ଭୂୟାଁ ବଂଶଜ । ପୁରାଣମାନଙ୍କରେ ବଳୀପୁତ୍ର ବାଣାସୁର ସମ୍ପର୍କରେ ବିସ୍ତାରିତ ଆଲୋଚନା ରହିଛି । ମହାଭାରତର ଖିଲଭାଗ ହରିବଂଶ ଏବଂ ବିଷ୍ଣୁ ପୁରାଣରେ ବାଣାସୁର ସମ୍ପର୍କରେ କିଛି

ବିବରଣୀ ରହିଛି । ଏହି ବିବରଣୀ ଅନୁସାରେ ଏକଦା କୁମାର ସ୍କନ୍ଦଙ୍କର ସୁନ୍ଦର ଶରୀରକୁ ଦେଖି ମହାପରାକ୍ରମୀ ବଳୀପୁତ୍ର ବାଣାସୁର ବିସ୍ମିତ ହେଲା ଏବଂ ରୁଦ୍ରଦେବଙ୍କର ପୁତ୍ର ବୋଲି ନିଜକୁ ଗ୍ରହଣ କରିବା ଲାଗି ତପସ୍ୟା କଲା । ଦୀର୍ଘବର୍ଷ ତପସ୍ୟା ପରେ ରୁଦ୍ରଦେବ ପ୍ରସନ୍ନ ହୋଇ ତାହାକୁ ନିଜର ପୁତ୍ର ହିସାବରେ ଗ୍ରହଣ କରିନେଲେ । ତାହାପରେ ସେ ରୁଧିରପୁର (ଶୋଣିତପୁର)ରେ ଅଗ୍ନି କୁମାର ମହାସେନଙ୍କ ପ୍ରାଦୁର୍ଭାବକୁ ଦମନ କରିବା ପାଇଁ ବାଣାସୁରର ରାଜଧାନୀ ସ୍ଥାପନ କଲେ । ଏହି ଶୋଣିତପୁର ରୁଦ୍ର- ଶିବଙ୍କ ଦ୍ୱାରା ସୁରକ୍ଷିତ । ଶିବଙ୍କ ପୁତ୍ର ରୂପେ ସ୍ୱୀକୃତ ହେବାପରେ ବାଣାସୁରକୁ କାର୍ତ୍ତିକେୟ ନିଜର ଅଗ୍ନିତୁଲ୍ୟ ତେଜସ୍ୱୀ ଧ୍ୱଜ ଓ ମୟୂର ବାହନ ପ୍ରଦାନ କରିଥିଲେ । ତ୍ରିକାଣ୍ଡ ଶେଷରେ ଏହି ଶୋଣିତପୁରକୁ ଦେବୀକୋଟ, ବାଣପୁର ଏବଂ ଉଷାବନ ବୋଲି ମଧ୍ୟ ନାମିତ କରାଯାଇଛି ।

ଦେବୀକୋଟକୁ କର୍ଣ୍ଣାଟକ ଅଞ୍ଚଳର ଦେବୀକୋଟ ସହିତ ଚିହ୍ନିତ କରାଯାଇଛି । କିନ୍ତୁ ଏହି ନାମ ମଧ୍ୟ ଭାରତର ଅନ୍ୟାନ୍ୟ ଅଞ୍ଚଳରୁ ମିଳିଥାଏ । ଦକ୍ଷିଣ ଭାରତରେ ଗୋଦାବରୀ କୂଳରେ ମଧ୍ୟ ଏହି ନାମର ରାଜଧାନୀ ଥିଲା । ଆସାମରେ ଏହି ନାମକୁ ଦୈତରାଜ ବୋଲି କୁହାଯାଇଛି । ଦେବୀକୋଟ ନାମ ବହନ କରୁଥିବା ଏହି ନଗର ଆସାମର ଦିନଜପୁର ଠାରେ ଥିଲା । ସେଥିପାଇଁ କାଳିକା ପୁରାଣରେ ଆସାମ (ପ୍ରାଗ୍ ଜ୍ୟୋତିଷ) ସମ୍ରାଟ ନାରକର ବନ୍ଧୁ ବାଣାସୁର ବୋଲି ସୂଚିତ ହୋଇଛି (୧୮)। ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ବାଣାସୁର ସ୍ଥାନ ଶୋଣିତପୁରର ସ୍ଥିତି ବଣାଇରେ ନଥିଲା । ତଥାପି ବଣାଇରେ ବାଣାସୁର ସମ୍ପର୍କିତ ଚିହ୍ନମାନ ଦେଖିବାକୁ ମିଳେ । ବ୍ରାହ୍ମଣୀ ନଦୀର ଉତ୍ତର ପଟରେ ଥିବା ତୁମକେଲା ଗ୍ରାମବାଟେ ନଦୀ ପାରହୋଇ ଦକ୍ଷିଣ ତଟକୁ ଗଲେ ତୀର୍ଥଘାଟ ନାମକ ସ୍ଥାନ ପଡ଼େ । ଏହା ପ୍ରାଚୀନ ଶୋଣିତପୁରର ପଥ ରୂପେ ସ୍ଥାନୀୟ ଜନଶ୍ରୁତିରେ ସୂଚିତ । ତୀର୍ଥଘାଟର ପ୍ରାୟ ତିନିଶହ ଗଜ ଦକ୍ଷିଣ ପଶ୍ଚିମକୁ ବାଣେଶ୍ୱର ମନ୍ଦିର ଅବସ୍ଥିତ । ଏହି ମନ୍ଦିରର ପୂର୍ବ ଦିଗରେ ବାଣାସୁରର ଦୁର୍ଗ ଥିଲା ବୋଲି କୁହାଯାଏ । ପୂର୍ବରେ ଥିବା ପୋଖରୀ ସେହି ଗଡ଼ର ସ୍ଥାନ ନିର୍ଦ୍ଦେଶ କରନ୍ତି । ମନ୍ଦିରର ଦକ୍ଷିଣ ପଶ୍ଚିମରେ ଗୋଟିଏ ଉଚ୍ଚକୁଦ ଉପରେ ଉଷାମେଢ଼ ଅବସ୍ଥିତ । ଏଥିରେ ବାଣକନ୍ୟା ଉଷା ରହୁଥିଲେ ବୋଲି କାଦମ୍ବଗାଥା ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ । ଗୋପୀନାଥ ମିଶ୍ର କବି ଭୂଷଣଙ୍କ ଲିଖିତ କାଦମ୍ବଗାଥାରେ ବାଣାସୁର କାଶୀ ଯାଇ ନୃତ୍ୟ ଗୀତରେ ଶିବଙ୍କୁ ସନ୍ତୁଷ୍ଟ କରି ବଣାଇକୁ ଆଣିଥିବାର ବର୍ଣ୍ଣନା ରହିଛି । ଶିବଙ୍କୁ

ଧରି ବାଣାସୁର ୨୨ ଦିନ ପରେ ତୀର୍ଥ ଘାଟରେ ପହଞ୍ଚିଲା । ଶିବଙ୍କ ପୂର୍ବ ନିର୍ଦ୍ଦେଶାନୁସାରେ ବାଣାସୁର ତାଙ୍କୁ ସାଙ୍ଗରେ ଧରି ଆଗେ ଆଗେ ଯିବା କାଳରେ ପଛକୁ ଚାହିଁପାରିବ ନାହିଁ । ମାତ୍ର ଶିବ ନଦୀ ପାଣିରେ ଡମ୍ବରୁଟି ଚାପିଦେଲେ । ଫଳରେ ଶବ୍ଦ ଶୁଭିଲା ନାହିଁ । ବାଣାସୁର ଚାହିଁବାକୁ ବାଧ୍ୟ ହେଲା । ଫଳରେ ଶିବ ଆଗକୁ ଯିବାକୁ ପ୍ରସ୍ତୁତ ନହୋଇ ସେହି ସ୍ଥାନରେ ଉପାସିତ ହେବାକୁ ଚାହିଁଲେ । ତେଣୁ ସେଠାରେ ମନ୍ଦିରର ନାମ ହେଲା ବାଣେଶ୍ୱର । ଏଥିରୁ ଜଣାଯାଏ ଯେ ସେହି ସ୍ଥାନଟି ପ୍ରଥମେ ଶୈବପୀଠ ନଥିଲା । କୌଣସି ରାଜଶକ୍ତିର ସହଯୋଗରେ ଏହାକୁ ଶୈବ ପୀଠରେ ପରିଣତ କରାଯାଇଛି । ମନେ ହୁଏ ବଣାଇ ଅଞ୍ଚଳରେ ଶାସନ ଆରମ୍ଭ କରିଥିବା ମୟୂର ବଂଶୀ ରାଜାମାନଙ୍କର ପ୍ରଥମ ସ୍ଥାନ ବାଣାସୁର ପୀଠ ସହିତ ଜଡ଼ିତ, କିମ୍ବା ବାଣାସୁରର କୀର୍ତ୍ତିକଳାପକୁ ଏହି ରାଜାମାନେ ସମ୍ମାନ ଦେଖାଇ ପୂର୍ବରୁ ଭୂୟାଁ ଅଧୀନସ୍ଥ ବଣାଇ ନାମକୁ ବାଣାସୁର ନାମ ସହିତ ଯୋଡ଼ି ଦେଇଥିବେ ।

ଏହାର ଏକମାତ୍ର ଯୋଗସୂତ୍ର ଏହି ରାଜାମାନଙ୍କର ମୟୂର ଚିହ୍ନ ପ୍ରତି ସମ୍ମାନ (ପରେ ସେଥିପାଇଁ ସେମାନେ ମାୟୁରିକ ରୂପେ ପରିଚିତ) । ବଣାଇ ଅଞ୍ଚଳରେ ମୟୂରର ବହୁଳତା ଏବଂ ବାଣାସୁରର ବାହନ ଏବଂ ଧ୍ୱଜ ମୟୂର । ପୁଣି ଏହି ରାଜାମାନେ ବଣାଇରେ ପ୍ରବେଶ କରି ଏହାକୁ ବାଣାସୁର ରାଜ୍ୟ ବୋଲି ପ୍ରଥମେ ପ୍ରକାଶ କରିବା ଦ୍ୱାରା ଭୂୟାଁମାନେ କେତେକାଂଶରେ ସନ୍ତୁଷ୍ଟ ହେଲେ । ଭୂୟାଁ ଜନଶ୍ରୁତି ଅନୁସାରେ ସ୍ରଷ୍ଟାଙ୍କର ଏକ ବିନ୍ଦୁରେତ ସ୍ଖଳିତ ହୋଇ ପୃଥିବୀରେ ପଡ଼ିଲା । ଏହା ମୟୂର ଡିମ୍ବର ଆକାର ଧାରଣ କଲା । ସେହି ଡିମ୍ବର ଶ୍ୱେତସାରରୁ ଭୂୟାଁମାନେ ଜନ୍ମ ନେଲେ (୧୯) । ଏଥିରୁ ଅନୁମାନ କରାଯାଇପାରେ ଯେ ଭୂୟାଁମାନେ ମୟୂର ଉପାସକ । ବଣାଇ ଅଞ୍ଚଳଟି ସମ୍ଭବତଃ ମୟୂରର ବହୁଳତା ପାଇଁ ପ୍ରସିଦ୍ଧ ଥିଲା । ଚିତ୍ରକୁଟରୁ ଆସିଥିବା ବରାହ ନାମଧାରୀ ରାଜାମାନେ ମଧ୍ୟ ମୟୂର ଉପାସକ । ସମ୍ଭବତଃ ଏହି ରାଜ ପରିବାରର ବାଣାସୁର ଜନଶ୍ରୁତି ପ୍ରତି ପୂର୍ବରୁ ଥିବା ସମ୍ମାନକୁ ଗ୍ରହଣ କରି ନବ ଶାସିତ ରାଜ୍ୟକୁ ବାଣାସୁର ରାଜ୍ୟ ବୋଲି ସେମାନଙ୍କ ତରଫରୁ ଘୋଷଣା କରାଯାଇଥିବ । ସେମାନଙ୍କର ମୟୂର ଚିହ୍ନ ପ୍ରତି ସମ୍ମାନ ଯୋଗୁ ଭୂୟାଁମାନେ ସେତେବେଳେ ସନ୍ତୁଷ୍ଟ ହୋଇଥିବେ । ସମ୍ଭବତଃ ସେହି କାଳରେ ବଣାଇରେ ପୂର୍ବରୁ ଥିବା ଭୂୟାଁ ଉପାସିତ ଏକ ଧର୍ମକ୍ଷେତ୍ରରେ ଶିବ ମନ୍ଦିର ନିର୍ମାଣ କରାଯାଇଥିଲା ଓ ତାହାକୁ ବାଣେଶ୍ୱର ବୋଲି ପ୍ରକାଶ କରାଯାଇଥିଲା । ଏହି ଶୈବ ମନ୍ଦିରରେ ପ୍ରଥମେ

ଭୂୟାଁ ପୂଜକମାନଙ୍କୁ ଉପାସନା କରିବା ଅଧିକାର ଦିଆଯାଇଥିଲା, କାରଣ ଶୈବ ପୀଠ ହେବା ପୂର୍ବରୁ ଏହା ସେମାନଙ୍କର ଅତି ପ୍ରାଚୀନ ଧର୍ମକ୍ଷେତ୍ର ରୂପେ ପରିଚିତ ଥିଲା । ତେଣୁ ସେମାନଙ୍କର ପୂର୍ବ ଅଧିକାରକୁ ସମ୍ମାନ ଦିଆଯାଇଥିଲା । ପରେ ପରେ ଭୌମରାଜାମାନଙ୍କର ଅଧୀନସ୍ଥ ହେବା ପରେ ଏହି ବରାହ ନାମଧାରୀ ରାଜାମାନେ ବୌଦ୍ଧ ଧର୍ମକୁ ଆଦର କରିଥିଲେ ।

ବରାହ ରାଜତ୍ୱ ପରେ ଏହି ମଣ୍ଡଳରେ ଶାସନ କରୁଥିବା କଦମ୍ବବଂଶୀ ରାଜାମାନେ ପ୍ରଥମେ ଭୂୟାମାନଙ୍କର କ୍ଷମତାକୁ ସଂକୁଚିତ କରିବାକୁ ଲାଗିଲେ । ମାତ୍ର ଭୂୟାଁ ମାନେ ପରାକ୍ରମଶାଳୀ ହୋଇ ରହିଲେ । କଦମ୍ବବଂଶୀ ରାଜାମାନେ ବାଧ୍ୟ ହୋଇ ଭୂୟାଁମାନଙ୍କୁ ଶାସନ କ୍ଷେତ୍ରରେ ସ୍ୱୀକାର କଲେ । କଦମ୍ବବଂଶୀ ଶାସନ କାଳରେ ଭୂୟାଁମାନେ କ୍ଷମତାଶାଳୀ ଥିବାର ସୂଚନା ପରମ୍ପରାରେ ରହିଯାଇଛି । କଦମ୍ବବଂଶୀ ରାଜାମାନେ ଭୂୟାଁ ମାନଙ୍କୁ ଅଭିଷେକ କରାଇବାର ଅଧିକାର ପ୍ରଦାନ କରିଥିଲେ । ସିଂହାସନ ଆରୋହଣ ପାଇଁ ନବନିଯୁକ୍ତ ରାଜା ଓ ରାଜଛତ୍ର ପ୍ରଥମେ ବାଣେଶ୍ୱର ମନ୍ଦିରକୁ ଯାଇଥାନ୍ତି । ବାଣେଶ୍ୱର ମନ୍ଦିରର ପୂଜକ ଜଣେ ଭୂୟାଁ । ରାଜା ନିଜ ହାତରେ ରାଜଛତ୍ର ବାଣେଶ୍ୱରଙ୍କ ଶିର ଉପରେ ଧାରଣ କରାନ୍ତି । ତାହାପରେ ରାଜାଙ୍କର ଛତ୍ର ଧାରକ ରାଜଛତ୍ର ନେଇ ରାଜାଙ୍କ ଶିର ଉପରେ ଧାରଣ କରାଏ । ରାଜା ସେହିପରି ଛତ୍ର ଶୋଭିତ ହୋଇ ଶୋଭାଯାତ୍ରାରେ ପ୍ରାସାଦକୁ ଫେରନ୍ତି (୨୦) । ଏଥିରୁ ପ୍ରଥମେ ସ୍ୱୀକାର କରାଯାଇପାରେ ଯେ ଭୂୟାଁ ଅଧୀନସ୍ଥ ଧର୍ମପୀଠରେ ବାଣେଶ୍ୱରଙ୍କ ସ୍ୱୀକୃତି ଦ୍ୱାରା ନବନିଯୁକ୍ତ ରାଜା ଶାସନ ଆରମ୍ଭ କରିଥିଲେ । ଏ ପରମ୍ପରା କଦମ୍ବବଂଶୀ ରାଜାମାନଙ୍କ ପୂର୍ବରୁ ନଥିଲେ ମଧ୍ୟ ବାଣେଶ୍ୱର (ଭୂୟାଁ ଉପାସିତ) ମୟୂରବଂଶୀ ଶାସନ କାଳରୁ ମୁଖ୍ୟ ଦେବତା ହିସାବରେ ପରିଚିତ ଥିଲେ । ଏ ପରମ୍ପରା ଜଗନ୍ନାଥଙ୍କ ସ୍ୱୀକୃତି ନେଇ ଅନଙ୍ଗଭୀମ (ଗଙ୍ଗବଂଶୀ ରାଜା)ଙ୍କ ଠାରୁ ପରବର୍ତ୍ତୀ ରାଜାମାନେ ଓଡ଼ିଶାର ଶାସକ ହୋଇଥିବାର କଥାକୁ ସ୍ମରଣ କରାଇଦିଏ (୨୧) । ପୁନଶ୍ଚ ଦରବାର ଅନୁଷ୍ଠିତ ହେବା କାଳରେ ସାବନ୍ତ ଭୂୟାଁ ରାଜାଙ୍କ କପାଳରେ ମାଟିର ଟୀକାଦିଏ ଏବଂ ରାଜା ବୋଲି ସ୍ୱୀକାର କରେ । ତାହାପରେ ମହାପାତ୍ର, ଦଣ୍ଡପାଟ ପ୍ରଭୃତି ଆସି ରାଜାଙ୍କୁ ପ୍ରଣାମ କରନ୍ତି । ଏଥିରୁ ରାଜ୍ୟ ଶାସନ ପାଇଁ ଭୂୟାଁ ମାନଙ୍କର ପ୍ରଥମ ସ୍ୱୀକୃତି ଆବଶ୍ୟକ ବୋଲି ସୂଚନା ମିଳିଥାଏ (୨୨) ।

ଭୂୟାଁମାନଙ୍କର ବଣାଇର ମନ୍ଦିରଗୁଡ଼ିକ ଉପରେ ସାର୍ବଭୌମ କ୍ଷମତା ବିସ୍ତାର କରିବା ସମ୍ପର୍କରେ ଡାଲ୍‌ଟନ ଏକ ସୁଚିନ୍ତିତ ମତ ଦେଇଛନ୍ତି:-

It is singular that these Hinduised Bhuiyas retain in their own hands the priestly duties of certain old shrines to the exclusion of Brahmins. This custom has no doubt descended in Bhuiya families from the time when Brahmans were not or had obtained no footing amongst them, and when, the religion of the land and the temples, were not Hindu, They are now indeed, dedicated to Hindu deities, but there are evidences of the temples having been originally ocupied by other images (୨୩) ।

ବଣାଇର ସାଂସ୍କୃତିକ ଧାରାରେ ଭୂୟାଁମାନଙ୍କ ପ୍ରାଧାନ୍ୟକୁ ଅନ୍ୟ ଏକ ପରମ୍ପରା ସାହାଯ୍ୟରେ ପ୍ରକାଶ କରାଯାଇପାରେ । ଦଶହରା ଉତ୍ସବ କାଳରେ ଏକ ନିର୍ଦ୍ଦିଷ୍ଟ ଭୂୟାଁ ପରିବାରର ଜଣେ ଉତ୍ତରାଧିକାରୀ ଦେହୁରୀଙ୍କ ଦ୍ୱାରା ପ୍ରତିମା (ଯାହାକୁ କନ୍ତଦେବୀ କୁହାଯାଏ) ଏକ ଗୁମ୍ଫାରୁ ବାହାର କରାଯାଇ ରାଜପ୍ରାସାଦକୁ ଅଣାଯାଏ ଏବଂ ଏହିଠାରେ ତାହା ତାନ୍ତ୍ରିକ ପଦ୍ଧତିରେ ଭୂୟାଁ ଆଦିବାସୀ ଓ ହିନ୍ଦୁମାନଙ୍କ ଦ୍ୱାରା ପୂଜିତ ହୁଏ । ଭୂୟାଁ ଆଦିବାସୀ ପ୍ରତିମାକୁ ମଦଭୋଗ ଦିଅନ୍ତି । ମଦରେ ବୁଡ଼ାଇ ଦିଅନ୍ତି । ବିଶ୍ୱାସ କରାଯାଉଛି ଯେ ଏହି ପ୍ରତିମାଟି ଅଷ୍ଟଧାତୁରେ ତିଆରି ହୋଇଛି । ଏହା ନିଦା ପିତଳ ଧାତୁ ପରି ଦେଖାଯାଏ (୨୪) । ଏହି ପ୍ରତିମାକୁ ସାରା ବର୍ଷ କାଳ ଖଣ୍ଡାଧାର ଜଳପ୍ରପାତ ନିକଟସ୍ଥ ପାହାଡ଼ ଗୁମ୍ଫାରେ ଲୁଚାଇ ରଖାଯାଏ । ପ୍ରତିମାକୁ ଗୁମ୍ଫାରୁ ବାହାର କରି ଆଣୁଥିବା ଦେହୁରୀ ଦଶହରା ପୂର୍ବର ପ୍ରଥମ ପୂର୍ଣ୍ଣମୀ ଦିନ ଗୁମ୍ଫା ମଧ୍ୟରୁ ପ୍ରତିମାକୁ କାଢ଼ି ଆଣନ୍ତି । ଏହା ବାଟରେ ଏଗାର ଖଣ୍ଡ ଗ୍ରାମ ମଧ୍ୟରେ ରାଜପ୍ରାସାଦକୁ ଅଣାଯାଏ । ରାଜପ୍ରାସାଦରେ ଗୋଟିଏ ରାତ୍ରି ରହିବା ପରେ ତାହା ପୁଣି ଏଗାର ଖଣ୍ଡ ଗ୍ରାମ ଦେଇ ଗୁମ୍ଫାକୁ ଅଣାଯାଏ । ଏହା ବଣାଇ ରାଜାପ୍ରାସାଦରେ ଏକଦିନ ରହେ । କନ୍ତଦେବୀ ଜଣେ କୃଷକ ଦ୍ୱାରା କନ୍ତସରା ଗ୍ରାମରୁ ଆବିଷ୍କୃତ ହୋଇଥିଲେ ଏବଂ ତାହା ବଣାଇ ରାଜାଙ୍କ ହସ୍ତରେ ଅର୍ପଣ କରାଯାଇଥିଲା । ଖୁବ୍ ସମ୍ଭବତଃ ଯଥେଷ୍ଟ ଅର୍ବାଚୀନ ହେଲେ ମଧ୍ୟ ଏହି ପରମ୍ପରାରେ ରାଜଶକ୍ତି- ଭୂୟାଁଶକ୍ତିର ରାଜନୈତିକ ସାଂସ୍କୃତିକ ପ୍ରାଧାନ୍ୟକୁ ସ୍ୱୀକାର କରାଯାଇଛି । ଏହାଦ୍ୱାରା ସାଂସ୍କୃତିକ ସମନ୍ୱୟ ହୋଇପାରିଛି । ହିନ୍ଦୁ ଓ ଆଦିବାସୀ- ସଂସ୍କୃତିର ସଂଗମ ଘଟିଛି ।

## ପ୍ରସଙ୍ଗ ନିର୍ଦ୍ଦେଶ


୧. ସାହୁ, ନବୀନ କୁମାର, Utkal University History of Orissa, Vol.1, 1964, p. 124

୨. ସାହୁ, ନବୀନ କୁମାର, ମିଶ୍ର ପ୍ରବୋଧ କୁମାର ଓ ସାହୁ ଯଜ୍ଞ କୁମାର, History of Orissa, 1985, p.151

୩. ଶର୍ମା, ଆର.କେ. The Kalachuris and their Times, 1980, p. 47

୪. ଶର୍ମା, ଆର.କେ.; ପୂର୍ବୋକ୍ତ ପୁସ୍ତକ, ପୃ- ୪୭ ।

୫. Corpus Inscriptionum Indi carum, Vol.IV, No. 88, Verse 9, 13.

୬. ଦାଶ, କୈଳାସଚନ୍ଦ୍ର, 'ସୁନ୍ଦରଗଡ଼ ଇତିହାସର ଏକ ବିସ୍ମୃତ ଅଧ୍ୟାୟ' ନବପତ୍ର (କଲଚରାଲ ଏକାଡେମୀ, ରାଉରକେଲା), ୧୭ଶ ବର୍ଷ, ୧୯୮୯, ୨ୟ ସଂଖ୍ୟା, ପୃ- ୩୫-୩୬ ।

୭. ଦାଶ, କୈଳାସଚନ୍ଦ୍ର; ପୂର୍ବୋକ୍ତ ପ୍ରବନ୍ଧ, ନବପତ୍ର, ୧୯୮୯, ୨ୟ ସଂଖ୍ୟା, ପୃ. ୩୫-୩୬ Gazetteer of India, Orissa, Sundergarh, Chapter.1 (drafted by K.S, Behera), p.313,

୮. ମାଦଳାପାଞ୍ଜି, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର, ୧୯୬୯ ପୃ-୩୦ ।

୯. ମହାନ୍ତ, ରବି; "ଗଡ଼ଜାତ ବଣାଇ: କିମ୍ବଦନ୍ତୀ ଓ ଇତିହାସର ଉଜ୍ଜ୍ୱଳ କେତୋଟି ପୃଷ୍ଠା", ସୁଲଗ୍ନା, ବାଣେଶ୍ୱର ସାହିତ୍ୟ ସଂସଦ, ରାଜା ଧରଣୀଧର କ୍ଲବର ମୁଖପତ୍ର, ବଣାଇଗଡ଼, ଡ଼ିସେମ୍ବର- ୧୯୯୦, ପୃ ୪-୬ ।

୧୦. "ବଣାଇ ସବ୍‌ଡିଭିଜନର ପାଉଡ଼ି ଭୂୟାଁ", ରାଉରକେଲା ରିପୋର୍ଟର, (ସମ୍ପାଦକ- ରଜନୀକାନ୍ତ ଦାସ) ଅକ୍ଟୋବର-୫, ୧୯୯୦, ପୃ-୩

୧୧. ତତ୍ରୈବ ।

୧୨. କବ୍‌ଡେନ୍ ରାମ୍‌ସେ (Cobden Ramsay, L.E.B., Feudatory States of Orissa, 1982, p. 143-144

୧୩. ତତ୍ରୈବ ।

୧୪. ନୀଳକଣ୍ଠ ଶାସ୍ତ୍ରୀ, କେ.ଏ. "The Kadambas,
The Vakataka- Gupta Age, (edited by R.C. Majumdar and A.S. Altekar), 1967/1986, p. 235-238.

୧୫. Epigraphia Indica, Vol. VIII, p. 34-36.

୧୬. ରାଜଗୁରୁ, ସତ୍ୟନାରାୟଣ, Inscriptions of Orissa, Vol.II 1960, p.2000, ଓଡ଼ିଶାର ଇତିହାସ, ପ୍ରଥମଖଣ୍ଡ, ପୃ-୩୫୭

୧୭. Dalton, E.T., Descriptive Ethonology of Bengal, 1872/1973, p. 140-141.

୧୮. Wilson, H.H. The Visnu Purana, A System of Hindu Mythology and Tradition, 1961, p.467

୧୯. ରାୟ, ଶରତଚନ୍ଦ୍ର "The Hill Bhuiyas of Orissa" 1935, p. 25

୨୦. ଦାଶ, ଶିବ ପ୍ରସାଦ, ସମ୍ବଲପୁରର ଇତିହାସ, ୧୯୬୯, ପୃ- ୪୫୬ ।

୨୧. (କ) ମାଦଳାପାଞ୍ଜି ୧୯୬୯, ପୃ ୨୬-୨୭ ।

(ଖ) Kulke, Hermann "Early Royal patronage of the Jagannatha Cult", in "The cult of Jagannath and the Regional Tradition of Orissa", edited by A, Eschmann, H. kulke and G.C. Tripathy, 1978, Chapter-VIII.

୨୨. ଦାଶ, ଶିବ ପ୍ରସାଦ, ପୂର୍ବୋକ୍ତ ପୁସ୍ତକ, ୧୯୬୯, ପୃ- ୪୫୬-୫୭

Dalton, E.T, ପୂର୍ବୋକ୍ତ ପୁସ୍ତକ, ପୃ- ୧୪୨; Cobden Ramsay, L.E.B. ପୂର୍ବୋକ୍ତ ପୁସ୍ତକ, ପୃ- ୧୦୪ ।

୨୩. Dalton, E.T., ପୂର୍ବୋକ୍ତ ପୁସ୍ତକ, ପୃ- ୧୪୨ ।

୨୪. କନ୍ତଦେବୀ ସମ୍ପର୍କିତ ତଥ୍ୟ ସାମ୍ବାଦିକ ରଜନୀକାନ୍ତ ଦାସ (ରାଉରକେଲା)ଙ୍କ ଦ୍ୱାରା ପିଟିଆଇ ସମ୍ବାଦରୁ ପରିବେଷିତ ।



## କନ୍ତ କୁମାରୀ

ବଣାଇ ଅଞ୍ଚଳର ଏକ ସ୍ମରଣୀୟ ଉତ୍ସବରେ ବଣାଇ ରାଜବଂଶ ପରମ୍ପରାନୁକ୍ରମରେ ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି । ଏହି ଉତ୍ସବର ମୁଖ୍ୟ ଉପାସ୍ୟଦେବୀ କନ୍ତ କୁମାରୀ । କନ୍ତକୁମାରୀ କୌଣସି ଏକ ପୁରାତନ ଧାତବ ବସ୍ତୁର ଗୋଲାକୃତି ଅଂଶ, ଯାହା ଏକଦା ଏକ କୃଷକ ଦ୍ୱାରା କନ୍ତସରା ଗ୍ରାମରୁ ଆବିଷ୍କୃତ ହୋଇଥିଲା ସେଥିପାଇଁ ବସ୍ତୁଟିର ନାମ କନ୍ତକୁମାରୀ ରଖାଯାଇଛି । 'ଖଣ୍ଡାଧାର' ପ୍ରକୃତି ଚିତ୍ର ଖଣ୍ଡକାବ୍ୟରେ ହରିହର ମହାପାତ୍ର ପ୍ରକାଶ କରିଥିଲେ- ବଣାଇ ଅଞ୍ଚଳରେ ଅତୀତରେ ଅତି ବୃହଦାକାର କଙ୍କଡ଼ା ଥିଲେ । ସେହି କଙ୍କଡ଼ା ଦେବତା ହିସାବରେ ପୂଜିତ ହେଉଥିଲେ । ତାଙ୍କ ଯୋଗେ ଖୋଦିତ ପ୍ରକାଣ୍ଡ ଆକାରର ଗର୍ତ୍ତମାନ ଖଣ୍ଡାଧାର ଠାରେ ଦେଖିବାକୁ ମିଳେ । ସେହି କଙ୍କଡ଼ା ଦେବତାଙ୍କୁ ଆଠଗଡ଼ବାସୀମାନେ ଚୋରି କରି ନେଇଯିବାରୁ ବଣାଇର ପୂର୍ବକାଳର ବୁଢ଼ାମାନେ ତହିଁର ଅନୁସନ୍ଧାନରେ ଯାଇ ଆଠଗଡ଼ରୁ "କନ୍ତକୁମାରୀ" ଦେବତାଙ୍କୁ ଆଣିଥିଲେ । ଏହା ପାହାଡ଼ୀ ଭୂୟାମାନେ କହନ୍ତି । ଇତିହାସର ବିଭିନ୍ନ କାଳରେ (ମଧ୍ୟଯୁଗର ନାନା ପର୍ଯ୍ୟାୟରେ) ବିଭିନ୍ନ ଭୂୟାଁମାନେ ଏହାର ଦାୟିତ୍ୱରେ ରହୁଥିଲେ । ବିଂଶ ଶତକର ଆଦ୍ୟ ଭାଗରେ ଖଣ୍ଡାଧାର ଜଳପ୍ରପାତ ନିକଟରେ ଜଲୋଗ୍ରାମର ଏକ ପାଉଡ଼ି ଭୂୟାଁ ଏହାର ଦାୟିତ୍ୱରେ ଥିଲେ । ଏହାର ଅଦ୍ଭୁତ ଆକୃତିକୁ ଦେଖି ଏହା ଦେବତ୍ୱ ଶକ୍ତି ବହନ କରିଥିବା କଥା ସର୍ବତ୍ର ପ୍ରସାରିତ ହୋଇଥିଲା । ତେଣୁ ନୃତତ୍ତ୍ୱବିଦ୍ ଶରତଚନ୍ଦ୍ର ରାୟ ମତ ଦେଇଛନ୍ତି :-

From its quaint shape it came to be regarded as the receptacle of mystic power or Divine energy and consequently the image of a deity.

ସାରା ବର୍ଷକାଳ ଉକ୍ତ ଦେହୁରି ପ୍ରତିମାଟିକୁ ଏକ ଗୋପନ ସ୍ଥାନରେ ରଖିଥାଏ ଏବଂ ବଣାଇର ଆଞ୍ଚଳିକ ପର୍ବ କାଳରେ ଏବଂ ମୁଖ୍ୟତଃ ଭୂୟାଁ ଉତ୍ସବ ଅବକାଶରେ ଏହାକୁ ବଣାଇକୁ ଅଣାଯାଏ । କେଉଁଝରର ଭୂୟାଁମାନେ ମଧ୍ୟ ଏହି କନ୍ତ କୁମାରୀ ଉପାସନା କରିଥିବାର ପ୍ରମାଣ ରହିଛି । ଦଶହରା ଉତ୍ସବକାଳରେ ଏହି ଉପାସନା ବଣାଇର ଏକ ମୁଖ୍ୟ ଆକର୍ଷଣ । କୃଷ୍ଣପକ୍ଷ ଅଷ୍ଟମୀ ପରେ ଏବଂ ଅମାବାସ୍ୟା ପୂର୍ବରୁ କୌଣସି ଏକ ଦିନରେ ଜଲୋ ଗ୍ରାମର ଦେହୁରି ବଣାଇ ରାଜପ୍ରାସାଦକୁ ଆସେ । ରାଜା ନିଜେ ଭଣ୍ଡାରରୁ ଏକ ମାଟିପାତ୍ରରେ ଶ୍ୱେତବର୍ଣ୍ଣର ଚାଉଳ ସାତଖଣ୍ଡ ହଳଦି ଏବଂ ସାମାନ୍ୟ ସିନ୍ଦୁର ଭରି ଦେଇ ଦେହୁରି ହାତକୁ ବଢ଼ାଇ ଦିଅନ୍ତି । ଏସବୁକୁ ଧରି ଦେହୁରି ନିଜ ବାସସ୍ଥାନକୁ ଫେରିଆସେ । ଆଗାମୀ ମହାଳୟା ଦିନ ଦେହୁରି ପ୍ରତିମା ଗୁପ୍ତଥିବା ସ୍ଥାନକୁ ଯାତ୍ରା କରେ ଏବଂ ସେଠାରେ ରାଜପ୍ରଦତ୍ତ ଦ୍ରବ୍ୟଗୁଡ଼ିକ ପ୍ରତିମା ଆଗରେ ଅର୍ପଣ କରିବା ପରେ ପ୍ରତିମାକୁ ଏକ କ୍ଷୁଦ୍ର ବାଉଁଶ ବାକ୍ସରେ ରଖି ସେହି ଜଲୋ ଗ୍ରାମକୁ ଆଣିଥାଏ ।

ଏଠାରେ ବହୁ ପାଉଡି ଭୂୟାଁ ଗ୍ରାମର ମୁଖ୍ୟମାନେ ଉପସ୍ଥିତ ହୁଅନ୍ତି । ପରଦିନ ଶିତଳ ଜଳରେ ପ୍ରତିମାକୁ ସ୍ନାନ କରାଇ ଏବଂ ଅରୁଆ ଚାଉଳ, କୁକୁଡ଼ା, ଶର୍କରା ପ୍ରଭୃତି ଭୋଗ ଅର୍ପଣରେ ଜଲୋର ଦେହୁରି କନ୍ତ କୁମାରୀଙ୍କୁ ବାକ୍ସରେ ରଖି ନିଜେ ବହନ କରିଥାଏ । ତାହାଙ୍କ ସଙ୍ଗରେ ଗୋଟିଏ ଦଳରେ ବହୁ ପାଉଡି ଭୂୟାଁ ଗ୍ରାମର ମୁଖ୍ୟମାନେ, ମାଦଳ, ବଂଶୀ ପ୍ରଭୃତି ଧରିଥିବା ଏକ ସଂଗୀତଜ୍ଞ ଦଳ ଥାଆନ୍ତି । ସେହିଦିନ ମଧ୍ୟାହ୍ନରେ ହଳଦିକୁଦର ନାମକ ଏକ ପଞ୍ଚସାହି- ଘଡ଼ିଆ ଭୂୟାଁ ଗ୍ରାମରେ ସେମାନେ ପହଞ୍ଚିଥାଆନ୍ତି । ଗ୍ରାମର ଭୂୟାଁ ଗୌନ୍ତିଆ ପ୍ରତିମାକୁ ହଳଦି ବହଳରେ ଏବଂ ବଳିଦାନ ଦ୍ୱାରା ଅଭିଷିକ୍ତ କରାନ୍ତି । ଏହାପରେ ପ୍ରତିମାକୁ ଗ୍ରାମର ଇଚ୍ଛୁକ ଲୋକଙ୍କ ଘରକୁ ପୂଜା ବଳି ଗ୍ରହଣ ପାଇଁ ନିଆଯାଏ । ଏହାପରେ କନ୍ତକୁମାରୀଙ୍କୁ ଧରି ଖୁଣ୍ଟଗାଁକୁ ଯାତ୍ରା କରିଥାନ୍ତି ଏବଂ ରାତ୍ରରେ ସେହି ସ୍ଥାନରେ ଜାଗିରିଦାର (ମହାପାତ୍ର)ଙ୍କ ଘରେ ବିଶ୍ରାମ କରନ୍ତି । ଏହି ଜାଗିରଦାର ଗୃହ ମଧ୍ୟରେ କନ୍ତକୁମାରୀ ସ୍ଥିତ ବାଉଁଶ ପେଟିକାଟି ରଖି ଦିଆଯାଏ ।

ପରଦିନ ପ୍ରଭାତରେ ଗଣ୍ଡ ମହାପାତ୍ର କନ୍ତକୁମାରୀଙ୍କ ପାଇଁ ଏକ ଛାଗଳ ବଳି ଦିଅନ୍ତି । ତାଙ୍କ ଘରୁ ଜଲୋଗ୍ରାମର ଦେହୁରି ପ୍ରତିମାକୁ ନେଇ ଖୁଣ୍ଟାଗାଁକୁଯାଇଥାଆନ୍ତି । ଖୁଣ୍ଟଗାଁର ଲୋକମାନେ କନ୍ତକୁମାରୀଙ୍କ ପାଇଁ ପଶୁବଳି ଦେଇଥାଆନ୍ତି ଏବଂ ଏହା

ସହିତ ଅନ୍ୟ ଭୋଗ ମଧ୍ୟ ଅର୍ପିତ ହୋଇଥାଏ । କୌଣସି ଗ୍ରାମରେ ପ୍ରତିମାଟି ଗୋଟିଏ ରାତ୍ରରୁ ଅଧିକ ରହିପାରେ ନାହିଁ ବୋଲି ଦେହୁରି ତାହାର ଉପାସ୍ୟ ଦେବୀଙ୍କୁ ଧରି ଅନ୍ୟ ଗ୍ରାମ ବିଚନାପଏଟ (?)କୁ ଯାଇଥାଏ- ଯେଉଁଠାରେ ଡେରା ଘରେ ଦେବୀ ରାତ୍ରରେ ବିଶ୍ରାମ ଗ୍ରହଣ କରନ୍ତି । ପ୍ରଭାତରେ ଏହି ଗ୍ରାମର ମୁଖ୍ୟ ନାୟକ (ଜଣେ ଗଣ୍ଡ)ଙ୍କର ଘର ତଥା ଅନ୍ୟ ଲୋକମାନଙ୍କର ଘରକୁ ଉପାସନା ପାଇଁ ପ୍ରତିମାକୁ ନିଆଯାଏ ।

ପ୍ରତ୍ୟେକ ଘରେ ଗୋଟିଏ ଛାଗଳ କିମ୍ବା ଏକ ବା ଏକାଧିକ କୁକୁଟ ଦେବୀଙ୍କ ନିକଟରେ ବଳି ଦିଆଯାଏ । ଏହା ସହିତ ଅନ୍ୟାନ୍ୟ ପୂଜା ଅର୍ପଣ ମଧ୍ୟ କରାଯାଏ । ଏହାପରେ ଦେହୁରି ପ୍ରତିମା ସହିତ ପୁଇଗାଁକୁ ଯାତ୍ରା କରନ୍ତି ଏବଂ ସେହି ଗ୍ରାମର ଢ଼େରାଘରେ ରାତ୍ରରେ ଦେବୀ ବିଶ୍ରାମ ଗ୍ରହଣ କରନ୍ତି ।

ପରଦିନ ପ୍ରଭାତରେ ଦେବୀଙ୍କୁ ସେହି ଗ୍ରାମର ଗଣ୍ଡ ମୁଖ୍ୟ (ନାୟକ)ଙ୍କ ଘରକୁ ଉପାସନା ପାଇଁ ନିଆଯାଏ ଏବଂ ପରେ ପରେ ଅନ୍ୟ ଯେଉଁମାନେ ଗ୍ରାମର ଉପାସନା କରିବାକୁ ଇଚ୍ଛା କରନ୍ତି ସେମାନଙ୍କ ଅନୁରୋଧରେ ଦେବୀଙ୍କୁ ସେହି ସେହି ସ୍ଥାନକୁ ନିଆଯାଇଥାଏ । ପ୍ରତ୍ୟେକ ସ୍ଥାନରେ ଦେବୀ ପୂର୍ବ ପରି ବଳି/ ପୂଜା ପ୍ରଭୃତି ନୈବେଦ୍ୟ ଗ୍ରହଣ କରିଥାଆନ୍ତି । ସନ୍ଧ୍ୟାକାଳରେ କନ୍ତଦେବୀ ବ୍ରାହ୍ମଣୀ ନଦୀ ଅତିକ୍ରମ କରି ଜୋକେଇକେଲା ଗ୍ରାମରେ ପ୍ରବେଶ କରନ୍ତି । ସେହି ଗ୍ରାମରେ ରାତ୍ରରେ ଗ୍ରାମ ପୂଜକ କାଲୋ (ପଞ୍ଚସାହି- ଘଡ଼ିଆ ଭୂୟାଁ) ଗୃହରେ ଦେବୀ ବିଶ୍ରାମ କରନ୍ତି ।

ପରଦିନ ପ୍ରଭାତରେ ବଳିନୈବେଦ୍ୟ ଅର୍ପଣ ପରେ କାଲୋଗୃହରୁ ଦେବୀଙ୍କୁ ଗ୍ରାମର ଅନ୍ୟ ଲୋକଙ୍କ ଗୃହକୁ ଉପାସନା ପାଇଁ ନିଆଯାଏ ଏବଂ ସେସବୁ ସ୍ଥାନରେ ମଧ୍ୟ ବଳି ଓ ନୈବେଦ୍ୟ ମଧ୍ୟ ଦିଆଯାଏ । ସଂଧ୍ୟାକାଳରେ କନ୍ତଦେବୀଙ୍କୁ ଜୋଙ୍କାଇ ଗ୍ରାମକୁ ନିଆଯାଏ ଏବଂ ରାତ୍ରରେ ମଣ୍ଡ ଘରରେ ରଖାଯାଏ । ପରଦିନ ପ୍ରଭାତରେ ପୂଜା ନୈବେଦ୍ୟ ଗ୍ରାମର ଗୌନ୍ତିଆ ଘରେ ଅର୍ପଣ ହେବା ପରେ (ଯେ କୁଲ୍‌ତା ଜାତିର ଲୋକ) ଦେବୀଙ୍କୁ ବିଭିନ୍ନ ଲୋକଙ୍କ ଘରକୁ ନିଆଯାଏ ଏବଂ ପୂଜା ଅର୍ପଣ କରାଯାଏ । ଏହାପରେ କନ୍ତଦେବୀଙ୍କୁ ବୋଡ୍ୟା ଗ୍ରାମକୁ ନିଆଯାଏ ଏବଂ ଯଦି ଅଷ୍ଟମୀ ତିଥି ଆରମ୍ଭ ହୋଇଯାଇଥାଏ, ତେବେ ଦେବୀଙ୍କୁ ସିଧା ବଣାଇଗଡ଼ ରାଜପ୍ରସାଦକୁ ନିଆଯାଏ ।

କିନ୍ତୁ ଯଦି ଏହି ଅଷ୍ଟମୀ ତା ପରଦିନ ପଡ଼େ, ତେବେ ଦେବୀଙ୍କୁ ସେହି ବୋଡ୍ୟା ଗ୍ରାମରେ ରାଜାଙ୍କ ଖମାର ଘରେ କିମ୍ବା ଶସ୍ୟ ଅମଳ ସ୍ଥାନରେ ପ୍ରଭାତ ପର୍ଯ୍ୟନ୍ତ

ରଖାଯାଏ ଏବଂ ପ୍ରଭାତରେ ବଳିଦାନ ଅର୍ପଣ ପରେ ଗ୍ରାମର ଅନ୍ୟ ଲୋକଙ୍କ ଘରକୁ ଦେବୀଙ୍କୁ ନିଆଯାଏ । ସନ୍ଧ୍ୟାବେଳକୁ ଏହି ଦଳ ଯାତ୍ରା କରି ରାତ୍ରରେ କନ୍ତମେଲ (ବଣାଇଗଡ଼ଠାରୁ ଏକମାଇଲ ଦୂର) ଗ୍ରାମକୁ ଦେବୀଙ୍କୁ ନେଇଥାନ୍ତି । ସେହି ଗ୍ରାମର ରାସ୍ତାରେ ଏକ ମାଟିର ବେଦିକାରେ ଦେବୀଙ୍କୁ ପୂଜା ଅର୍ପଣ କରାଯାଏ । ଉପରେ ଏକ ଚନ୍ଦ୍ରାତପ ଟଣାଯାଇଥାଏ, ଆଲୋକ ସୁସଜ୍ଜା ହୋଇଥାଏ । ରାଜା, ଅନ୍ୟାନ୍ୟ ସଦସ୍ୟ ତଥା ସମ୍ମାନୀୟ ଦର୍ଶକମାନଙ୍କର ଉପବେଶନ ପାଇଁ ସ୍ଥାନ ସୁରକ୍ଷିତ ଥାଏ ।

ଏହି ଦଳ ସେଠାରେ ପ୍ରବେଶ ମାତ୍ରେ ରାଜାଦଳ ସେମାନଙ୍କୁ ସ୍ୱାଗତ କରନ୍ତି । ଜଲୋଗ୍ରାମର ଦେହୁରି ରାଜାଙ୍କ ନିକଟକୁ ପ୍ରତିମା ସହିତ ଆସି ପ୍ରଣାମ କରନ୍ତି ଏବଂ ତାଙ୍କର, ରାଣୀଙ୍କର, ପରିବାରର, ପରିଚାରକମାନଙ୍କର, ହସ୍ତୀମାନଙ୍କର, ଅଶ୍ୱମାନଙ୍କର, ରାଜ୍ୟ ସମସ୍ତଙ୍କର ଶୁଭାଶୁଭ ପଚାରନ୍ତି । ରାଜା ଦେହୁରିର ସମସ୍ତ ପ୍ରଶ୍ନରେ ଅସ୍ତିବାଚକ ଉତ୍ତର ଦିଅନ୍ତି । ରାଜା ମଧ୍ୟ ସେହି ଦେହୁରି ତଥା ତାହା ପରିବାରର ମଙ୍ଗଳ/ ଶୁଭାଶୁଭ କଥା ଏବଂ ପାଉଡ଼ି ଭୂୟାଁମାନଙ୍କର ଶୁଭାଶୁଭ କଥା ପଚାରନ୍ତି । ପ୍ରତ୍ୟେକ ପ୍ରଶ୍ନରେ ଦେହୁରି ଅସ୍ତିବାଚକ ଉତ୍ତର ଦିଅନ୍ତି ।

ଏହାପରେ ଦେହୁରି ରାଜା ଧରିଥିବା ଏକ ନୂତନ ବସ୍ତ୍ରରେ ପ୍ରତିମାକୁ ରଖନ୍ତି । ରାଜା ପ୍ରସ୍ତୁତ ହୋଇଥିବା ରୌପ୍ୟ ସିଂହାସନରେ ବସ୍ତ୍ର ଥିବା ପ୍ରତିମାକୁ ରଖନ୍ତି । ରାଜାଙ୍କ ହାତକୁ ପ୍ରତିମାଟି ବଢ଼ାଇଦେବା ବେଳେ ରାଜାଙ୍କୁ ଦେହୁରି କହେ- ଏହିଠାରେ ତୁମର ଦେବତା; ଆମ୍ଭେ ଗିରିଖୋଲରେ ରଖିଥିଲୁ, ପରୀକ୍ଷା କର ଏବଂ ଦେଖ ତୁମର ପ୍ରତିମା ଭଗ୍ନ ଅବସ୍ଥାରେ କିମ୍ବା ଅବିକଳ ଅବସ୍ଥାରେ ରହିଛି । ରାଜା ପ୍ରତିମାକୁ ଲକ୍ଷ୍ୟ କରି କହନ୍ତି- ଏହା ଠିକ୍ ରହିଛି । ଏହାପରେ ପ୍ରତିମାକୁ ଅମାତ ହାତକୁ ବଢ଼ାଇ ଦିଅନ୍ତି । ଏହି ଅମାତ ରାଜା ପୁରୋହିତ ହିସାବରେ କାମ କରନ୍ତି । ଅମାତ ପ୍ରତିମାକୁ ମାଟି ବେଦିକାରେ ବସାଇ ରାଜପ୍ରଦତ୍ତ ନୈବେଦ୍ୟ ଦ୍ୱାରା ଉପାସନା କରନ୍ତି । ଏହି ଉପଲକ୍ଷେ ଦୁଇଟି ଛାଗଳ- ବର୍ଣ୍ଣ ନୀଳ ଓ ଲୋହିତ ଏବଂ ଉଭୟଙ୍କର ଶିଂଘ ରହିଥାଏ । ଉଭୟଙ୍କର ଉଚ୍ଚତା ସମାନ । ଏହାକୁ ରାଜା ଯୋଗାଇ ଥାଆନ୍ତି । ଦୁଇଟି ଛାଗଳ ପାଖାପାଖି ଠିଆ ହୋଇ ରହନ୍ତି ଏବଂ ଗୋଟିଏ ଖଡ଼ଗାଘାତରେ ଦୁଇଟିର ମୁଣ୍ଡ କଟାଯାଏ । ଏହି କାର୍ଯ୍ୟ ବାରିକ କରିଥାଏ । ରାଜାଙ୍କ ତରଫରୁ ଏପରି ବଳିଦାନ ପରେ ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ଆସୁଥିବା ବହୁତ କୁକୁଡ଼ା ମଧ୍ୟ ଏଠାରେ ବଳି ଦିଆଯାଏ । ଏହା ସହିତ କଖାରୁ, ମୁର୍କି (ପିରାମିଡ୍ ସଦୃଶ ପିଷ୍ଟକ) ଏବଂ ଅନ୍ୟାନ୍ୟ

ମିଷ୍ଟ ପଦାର୍ଥ ଦେବୀଙ୍କୁ ନୈବେଦ୍ୟ ଆକାରରେ ଅମାତ୍ୟ ଦେଇଥାଏ । ଲୋକମାନେ ମାନସିକ କରି ଦେବୀଙ୍କୁ ନୈବେଦ୍ୟ ଦେଇଥାଆନ୍ତି ଏବଂ କୁହାଯାଏ ଯେ ଲୋକମାନଙ୍କର ମାନସିକ ଇଚ୍ଛା ପୂରଣ ହୋଇଥାଏ । ଏହାପରେ କନ୍ତକୁମାରୀଙ୍କୁ ଏକ ତ୍ରିଛକୀ ରାସ୍ତା ପାଖର ବସ୍ତି କଞ୍ଜୁଲିକୁ ନିଆଯାଏ । ଏହି ସ୍ଥାନରେ ମଧ୍ୟ ବିଭିନ୍ନ ଲୋକଙ୍କ ତରଫରୁ ବଳି ଦିଆଯାଉଥାଏ । ଏହି ନୈବେଦ୍ୟ, ବଳିପୂଜା ଅମାତ କରିଥାଏ । ଏହାପରେ ପ୍ରତିମାକୁ ବହନ କରି କସାରୀ ଘରକୁ ନିଆଯାଏ- ଯେଉଁଠାରେ ଦେବୀଙ୍କର ସ୍ୱତନ୍ତ୍ର ଉପାସନା କରାଯାଏ । ସେଠାରୁ ଦେବୀଙ୍କୁ ‘‘କୁମାରୀ ପରି ଦେବୀଙ୍କ ଆସ୍ଥାନକୁ ନିଆଯାଏ । ସେଠାରେ ମଧ୍ୟ ତାହାଙ୍କୁ ବଳିପୂଜା ଦ୍ୱାରା ତୁଷ୍ଟ କରାଯାଏ । ପରିଶେଷରେ ପ୍ରତିମାକୁ ରାଜ ପ୍ରାସାଦରେ ନିର୍ମିତ ଏକ କ୍ଷୁଦ୍ର ବେଦିକାରେ ଅଧିଷ୍ଠିତ କରାଯାଏ । ଏଠାରେ ମଧ୍ୟ କନ୍ତଦେବୀଙ୍କ ପାଇଁ ବ୍ୟାପକ ବଳିପୂଜାର ବ୍ୟବସ୍ଥା ଥାଏ ।

ପରଦିନ ପ୍ରଭାତରେ ଅର୍ଥାତ ନବମୀ ଦିନରେ ବଳିଦାନ/ ଉତ୍ସବ ପରେ ରାଜା ନିଜ ସ୍କନ୍ଧରେ କନ୍ତକୁମାରୀଙ୍କୁ ବହନ କରି ନିଜ ପ୍ରାସାଦର ଭିତର କକ୍ଷକୁ ନେଇଯାନ୍ତି- ଯେଉଁଠାରେ ତାଙ୍କ ପରିବାରର ସଦସ୍ୟଗଣ ମିଷ୍ଟକାଦି ଦ୍ୱାରା କନ୍ତକୁମାରୀଙ୍କୁ ସନ୍ତୁଷ୍ଟ କରନ୍ତି । ପରିଶେଷରେ ରାଜପ୍ରସାଦର ଭିତର ବାରଣ୍ଡାରେ ଅମାତ ପ୍ରତିମାକୁ ମଦରେ ବୁଡ଼ାଇ ଗାଧୋଇ ଦିଅନ୍ତି ଏବଂ ତଣ୍ଡୁଳ, ମିଷ୍ଟକାଦି ନୈବେଦ୍ୟ ଦେବୀଙ୍କୁ ଦେଇଥାଆନ୍ତି । ମଇଁଷି ପ୍ରଭୃତି ବଳିଦାନ ମଧ୍ୟ କରାଯାଏ, ଏକ ବା ଏକାଧିକ ମେଣ୍ଢା ଏବଂ ଷୋହଳ ବା ଅଧିକ କୁକୁଡ଼ା ଦେବୀଙ୍କ ନିକଟରେ ବଳିଦାନ କରାଯାଏ । ଏହାପରେ କନ୍ତକୁମାରୀଙ୍କୁ ରାଜାଙ୍କ ଛତ୍ର ଗମ୍ଭୀରା ମଧ୍ୟକୁ ନିଆଯାଏ । ସେଠାରୁ ରାଜାଙ୍କର ନିଜ ସମ୍ପର୍କୀୟମାନଙ୍କ ଗୃହକୁ ଦେବୀଙ୍କୁ ନିଆଯାଏ, ବଣାଇଗଡ଼ର ଅନ୍ୟ ଲୋକମାନଙ୍କ ଗୃହକୁ ମଧ୍ୟ ଦେବୀଙ୍କୁ ନିଆଯାଏ । ଶେଷରେ ଅମାତ ଗୃହରେ ଦେବୀ ପ୍ରବେଶ କରନ୍ତି । ଅମାତ କନ୍ତଦେବୀଙ୍କୁ ନିଜଘରୁ ଦେହୁରି ହାତକୁ ଦେଇଦିଅନ୍ତି । ଦେହୁରି ପ୍ରତିମାକୁ ବଣାଇଗଡ଼ସ୍ଥ ବାହାରଗଡ଼ ମଧ୍ୟର ବିଭିନ୍ନ ଗୃହ ମଧ୍ୟକୁ ବୁଲାଇ ନିଅନ୍ତି । ଶେଷରେ ପ୍ରତିମାକୁ ବ୍ରାହ୍ମଣୀ କୂଳକୁ ଅଣାଯାଏ ଯେଉଁଠାରେ ରାଜାଙ୍କର ବେହେରା (ପାଣଜାତୀୟ) ଦେହୁରି ହାତକୁ ଏକ ଛାଗଳ ଏବଂ କୁକୁଟ ଦେଇଥାଏ । ଦେହୁରି ଏସବୁକୁ ଦେବୀଙ୍କ ନିକଟରେ ବଳି ଦେଇଥାଏ । ଏହି ପାଣ ବେହେରା ଅସ୍ପୃଶ୍ୟ ହୋଇଥିବାରୁ ପ୍ରତିମାକୁ ସ୍ପର୍ଶ କରିପାରେ ନାହିଁ କିମ୍ବା ନିଜ ହାତରେ ଦେବୀଙ୍କୁ ନୈବେଦ୍ୟ ଦେଇପାରେ ନାହିଁ, ସେ କିଛିଦୂରରୁ ସାତୋଟି ପିଠା (ନିମଚକୁଳି) ଦେଇଥାଏ । ଏହି

ସୁବିଧା ପାଣ ବେହେରା ପାଇବାର ଏକ କାରଣ ରହିଛି । କୁହାଯାଏ ଦୂର ଅତୀତରେ ଏହି ପାଣ ବେହେରାର ଜନୈକ ପୂର୍ବ ପୁରୁଷ ପ୍ରଥମେ ପ୍ରତିମାକୁ କନ୍ତସରା ଗ୍ରାମରୁ ଆବିଷ୍କାର କରିଥିଲେ ବୋଲି ତାହାର ବଂଶଧରମାନେ ଏହି ଅଧିକାର ପାଇଛନ୍ତି ।

ଜଲୋଗ୍ରାମର ଦେହୁରି କନ୍ତକୁମାରୀଙ୍କୁ ବାଉଁଶ ପେଟିକାରେ ରଖି, ପାଉଡ଼ି ମୁଖ୍ୟମାନଙ୍କ ଗହଣରେ ବ୍ରାହ୍ମଣୀ ନଦୀର ଅପର ପାର୍ଶ୍ୱକୁ ଯାଇଥାନ୍ତି- ଯେଉଁଠାରେ ରାତ୍ରକାଳ ସେମାନେ ଏକ କେଉଟ ଜାତିର ଲୋକ ଘରେ ବିତାଇଥାଆନ୍ତି । ପରମ୍ପରା ଏତେ ଦୃଢ଼ ଯେ ଯଦି କୌଣସି ବର୍ଷ କେଉଟ ଘରେ ପ୍ରବେଶ କରିବାକୁ ସକାଳ ହୋଇଗଲା କନ୍ତକୁମାରୀ ସହ ଥିବା ଦଳଟି ନିଶ୍ଚିତ ଭାବରେ ସେହି କେଉଟ ଘରେ କିଛିକ୍ଷଣ ବିତାଇବାକୁ ପଡ଼ିବ, ଏହା ଏକ ପ୍ରଥା ଯାହାଙ୍କୁ ଭାଙ୍ଗି ହେବ ନାହିଁ । ପ୍ରାତଃକାଳରୁ ଦେବୀଙ୍କୁ ସ୍ନାନ କରାଇ ଦେହୁରି ବଳି ନୈବେଦ୍ୟ ଦେଇଥାଏ । ଏହାପରେ ଘରକୁ ଘର ଦେହୁରି କନ୍ତକୁମାରୀଙ୍କୁ ବୁଲାଇନିଏ- ଯେଉଁଠାରେ ଲୋକମାନେ ବଳିପୂଜା ପାଇଁ ଆଗ୍ରହର ସହ ଅପେକ୍ଷା କରିଥାଆନ୍ତି । ଦଳଟି କ୍ରମେ କ୍ରମେ ନଳେଇ, ଟଙ୍କଜୁଡ଼ା, ବ୍ରାହ୍ମଣ ଗାଁ, ଅମାତପଡି, କୁରଦା, ଭୁଗ୍ର, ଗୋଡୁଆ, ଧୁରି, କଲଉପୋଷ, ଜୋଡ଼ିବାହା, କନ୍ତକୁଦର ଅତିକ୍ରମ କରି ଶେଷରେ କୋଜାଗର ପୂର୍ଣ୍ଣମା ଦିନ ଜଲୋ ଗ୍ରାମକୁ ଫେରିଯାଆନ୍ତି । ଯେଉଁ ଯେଉଁ ଗ୍ରାମ ଦେଇ କୁମାରୀ ଜଲୋକୁ ଫେରନ୍ତି, ସେ ସବୁ ସ୍ଥାନରେ ଯଥେଷ୍ଟ ବଳି ନୈବେଦ୍ୟ ଦ୍ୱାରା ତାଙ୍କୁ ତୁଷ୍ଟ କରାଯାଏ ।

ଜଲୋଗ୍ରାମରେ ପ୍ରବେଶ କରିବା ପରେ କନ୍ତକୁମାରୀଙ୍କୁ ଅରଣ୍ୟର ଏକ ବୃକ୍ଷକୋଳରେ ରଖାଯାଏ । ବଣାଇ ଅନ୍ତର୍ଗତ ପ୍ରାୟ ସାତୋଟି ଗ୍ରାମର ପାଉଡ଼ି ଭୂୟାଁ ଜଲୋ ଠାରେ ଉପସ୍ଥିତ ହୋଇ ଏହି କୋଜାଗର ପୂର୍ଣ୍ଣିମା ଦିନ ବଳି ନୈବେଦ୍ୟ ଦ୍ୱାରା ଦେବୀଙ୍କୁ ଉପାସନା କରନ୍ତି । ଦିନ ମଧ୍ୟରେ ଦେହୁରି ଘରର ଅଗଣାରେ ଦେବୀଙ୍କୁ ବଳି ନୈବେଦ୍ୟ ଦ୍ୱାରା ତୁଷ୍ଟ କରାଯାଏ । ଭାତ ଏବଂ ମାଂସ ରନ୍ଧନ ହୋଇ ସମସ୍ତଙ୍କ ମଧ୍ୟରେ ବଣ୍ଟାଯାଏ । ଶେଷରେ ସମସ୍ତେ ସେଠାରୁ ବିଦାୟ ନିଅନ୍ତି ।

ଦେହୁରି ଏବଂ ତାଙ୍କ ପରିବାରର କେବଳ ଜଣେ ସଦସ୍ୟ କନ୍ତକୁମାରୀଙ୍କୁ ନେଇ ତାହାଙ୍କର ଗୁପ୍ତ ସ୍ଥାନକୁ ଯାତ୍ରା କରନ୍ତି । ଦେହୁରି ନିଜ ପରିବାରର କେବଳ ଜଣେ ସଦସ୍ୟଙ୍କୁ ଏହି ଗୋପନ ସ୍ଥାନକୁ ନେଇଥାଏ; କାରଣ ଦେହୁରି ମରିବା ପରେ ସେହି ବ୍ୟକ୍ତିଟି ଦେବୀଙ୍କୁ ଗୁପ୍ତସ୍ଥାନରୁ ବାହାର କରିପାରିବ । ଊନବିଂଶ ଶତକର ଆଦ୍ୟପାଦରେ ବଣାଇର ଅମାତ ପରି ଏହି ଦେହୁରି ୨୦-୩୦ ଟଙ୍କା କନ୍ତକୁମାରୀ

ପୂଜା ପାଇଁ ପାଉଥିଲା । ଏହି ଅର୍ଥର କିଛି ଅଂଶ ଦେବୀ ପ୍ରତ୍ୟାବର୍ତ୍ତନ କାଳରେ ଜଳୋଠାରେ ଉପସ୍ଥିତ ପାଉଡ଼ି ଭୂୟାଁ ଉତ୍ସବରେ ଖର୍ଚ୍ଚ ହୋଇଥାଏ ।

ଶରତଚନ୍ଦ୍ର ରାୟ ଏ ଉତ୍ସବ ସମ୍ପର୍କରେ ମତ ଦେଇଛନ୍ତି:

This annual tribal gathering although originating in a mere accident, namely the discovery of a peculiarly shaped metal, bids fair to develop in time into a great socio- political and socio- religious congress of the tribe.

ବଣାଇରେ କନ୍ତକୁମାରୀ ଉପାସନା ଆମ ସାମାଜିକ- ସାଂସ୍କୃତିକ ଇତିହାସର ଏକ ଅନାଲୋଚିତ ଅଧ୍ୟାୟ । ବଣାଇରାଜା ଏହି ଉତ୍ସବରେ ଯୋଗଦାନ କରି କନ୍ତକୁମାରୀ, ପାଉଡ଼ି ଭୂୟାଁ ଜାତିର ଇଷ୍ଟଦେବୀ ଅନ୍ଧାରି ଓ କୁଆଁରୀ (ଯେଉଁମାନେ କୋଇଡ଼ା ପ୍ରଗଣାରେ ପାଉଡ଼ି ଭୂୟାଁମାନଙ୍କର ଅଧିଷ୍ଠାତ୍ରୀ ଦେବୀ)ଙ୍କୁ ପୃଷ୍ଠପୋଷକତା, ଉପାସନା କରିବା ଦ୍ୱାରା, (ଯେଉଁ ବଳି ଦ୍ୱାରା ଅତି ପ୍ରାଚୀନ କୋହ୍ଲବୀର ମହାବୀରଙ୍କ ଆତ୍ମାକୁ ସନ୍ତୁଷ୍ଟ କରାଯାଏ) ଏହା ସ୍ପଷ୍ଟ ଯେ ବଣାଇରେ ଆର୍ଯ୍ୟ- ଅଣ ଆର୍ଯ୍ୟ ବାସୀମାନଙ୍କର ସାମାଜିକ- ସାଂସ୍କୃତିକ ଏକୀକରଣ ରାଜନୈତିକ କ୍ଷମତା ବିଧିସିଦ୍ଧ ପାଇଁ ବିଶେଷ ଭୂମିକା ନେଇଛି । ଏହି ଆର୍ଯ୍ୟ କରଣ ଆଦିବାସୀ ଦେବଦେବୀଙ୍କୁ ହିନ୍ଦୁ ଦେବଦେବୀରେ ରୂପାନ୍ତରିତ କରିବା ସଙ୍ଗେ ସଙ୍ଗେ ସାଂସ୍କୃତିକ ଐକ୍ୟ ପ୍ରତିଷ୍ଠାରେ ବିଶେଷ ସାହାଯ୍ୟ କରିଥିଲା ।

(କନ୍ତକୁମାରୀ ସମ୍ପର୍କିତ ବିବରଣୀ ପ୍ରଥମେ ରାଉରକେଲାର ପୂର୍ବତନ ପି.ଟି. ଆଇ ସମ୍ବାଦଦାତା ଶ୍ରୀଯୁକ୍ତ ରଜନୀକାନ୍ତ ଦାସ ମୋର ଦୃଷ୍ଟି ଆକର୍ଷଣ କରିଥିଲେ । ଦାସଙ୍କ ବିବରଣୀ ଅନୁସାରେ କନ୍ତକୁମାରୀଙ୍କୁ ଗୁମ୍ଫାରୁ ଆଣୁଥିବା ବ୍ୟକ୍ତିଟିର ନାମ ପଣ୍ଡଲ ଦେହୁରି । ଏ ସମ୍ପର୍କିତ ବିସ୍ତାରିତ ବିବରଣୀ ଶରତଚନ୍ଦ୍ର ରାୟଙ୍କ ୧୯୩୫ ମସିହାରେ ରଚିତ "The Hill Bhuiyas of Orissa" ପୁସ୍ତକରେ ସ୍ଥାନ ପାଇଥିଲା, ଲେଖକ ଏ ଉଭୟଙ୍କ ନିକଟରେ ତଥ୍ୟ ପାଇଁ କୃତଜ୍ଞ ।)

---

ପ୍ରସଙ୍ଗ ନିର୍ଦ୍ଦେଶ


୧. 'ଖଣ୍ଡାଧାର' ୧୯୫୬, ବାମଣ୍ଡା, ପୃ-୨୨

୨. ରାୟ, ଶରତଚନ୍ଦ୍ର, The Hill Bhuiyas of Orissa, 1935




# ବେଦବ୍ୟାସ

॥ ଏକ ॥

ପ୍ରାଚୀନ ଗାଙ୍ଗପୁର ସୀମା ମଧ୍ୟରେ କଲିକତା- ନାଗପୁର ରେଳଲାଇନର ପାନ୍‌ପୋଷ ଷ୍ଟେସନଠାରୁ ଏକ ମାଇଲ ଦୂରରେ ଉତ୍ତର ଦିଗରେ ବେଦବ୍ୟାସ ତୀର୍ଥ ଅବସ୍ଥିତ । ସ୍ଥାନଟି ୨୨°-୧୪' ଉତ୍ତର ଅକ୍ଷାଂଶ ଏବଂ ୮୪°-୪୮' ପୂର୍ବ ଦ୍ରାଘିମାରେ ଅବସ୍ଥିତ । ଏହିଠାରେ ରାଞ୍ଚିରୁ ବାହାରିଥିବା ଶଙ୍ଖ ଏବଂ ସିଂହଭୂମିରୁ ବାହାରିଥିବା କୋଇଲି ନାମକ ଦୁଇଟି ନଦୀ ମିଳି ବ୍ରାହ୍ମଣୀ ବୋଲି ପରିଚିତ ହୋଇଛନ୍ତି । ସଙ୍ଗମପରେ ଏକ ଗଣ୍ଡ ଅଛି । ଗଣ୍ଡରେ ଗ୍ରୀଷ୍ମ ଋତୁରେ ମଧ୍ୟ ଗଭୀର ଜଳ ରହିଥାଏ । ଦୁଇ ନଦୀର ସଙ୍ଗମକୁ ଲାଗି ଶଙ୍ଖ ନଦୀର ପଶ୍ଚିମ ଦିଗରେ ବେଦବ୍ୟାସ ପାହାଡ଼ ଅବସ୍ଥିତ । ଏହି ପାହାଡ଼ର ଗୁମ୍ଫାଟି ବେଦବ୍ୟାସ ଋଷିଙ୍କର ଆଶ୍ରମ ବୋଲି ଜନଶ୍ରୁତି ଦାବି କରେ । ଗୁମ୍ଫା ଭିତରୁ ପ୍ରଥମେ କୁହୁଡ଼ି ନିସୃତ ହୁଏ ଏବଂ କ୍ରମେ ଚାରିପାଖକୁ ପ୍ରସାରିତ ହୁଏ । କୁହୁଡ଼ି ଅନେକ ସମୟ ପର୍ଯ୍ୟନ୍ତ ରହେ । ଶଙ୍ଖ ଓ କୋଇଲି ସଙ୍ଗମର ଯେଉଁ ପାହାଡ଼ରେ ବେଦବ୍ୟାସଙ୍କର ଆଶ୍ରମ ଅଛି ସେହି ପାହାଡ଼ର ନାମ ''ପାରଶର ଘୁଟୁକୁରା'' । ପାହାଡ଼ର ପଶ୍ଚିମ ପାଖ ମୂଳରେ ''ସରସ୍ୱତୀ କୁଣ୍ଡ'' । ଏହି କୁଣ୍ଡରୁ ସ୍ୱତଃ ନିର୍ଗତ ଝର ପାହାଡ଼ର ଉତ୍ତର ପାର୍ଶ୍ୱଦେଇ ବ୍ରାହ୍ମଣୀ ନଦୀରେ ପଡ଼ିଛି । କୋଇଲି ନଦୀର ପୂର୍ବ କୂଳରେ ''ଗୌତମୀ ଘୁଟୁକୁରା'' (ଅନ୍ୟ ଏକ ପାହାଡ଼) ଅବସ୍ଥିତ । ଜନଶ୍ରୁତି ଅନୁସାରେ କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ ଏହିଠାରେ ଜନ୍ମଗ୍ରହଣ କରିଥିଲେ ।

ଏହି ଅଞ୍ଚଳଟି ଚେଦୀ ରାଜ୍ୟ ଉପରିଚର ବସୁଙ୍କ ରାଜ୍ୟ ଅନ୍ତର୍ଗତ ବୋଲି ଜନଶ୍ରୁତି ଦାବି କରେ । କୋଇଲି କୂଳରେ ଛେଣ୍ଡ ବସ୍ତିର ଉତ୍ତର ଦିଗରେ ଥିବା ଗଡ଼କୁ ଦାସରାଜାର ଗଡ଼ବୋଲି ଦାବି କରାଯାଏ । (୧) ଏହି କୂଳରେ ଦାସରାଜାର ବଂଶଧର

କୈବର୍ତ୍ତ ସମ୍ପ୍ରଦାୟ ବସବାସ କରନ୍ତି । ବେଦବ୍ୟାସ ତୀର୍ଥ ସମ୍ପର୍କିତ କିମ୍ବଦନ୍ତୀରୁ ଜଣାଯାଏ ଯେ ପୁରାକାଳରେ ପରାଶର ଋଷିଙ୍କୁ ଏକ  କୈବର୍ତ୍ତ ବାଳିକା ନାଉରୀ ରୂପେ ନଦୀ ପାର କରାଉଥିଲା । ନଦୀ ମଝିରେ ପରାଶର କାମ ପ୍ରବୃତ୍ତି ଚରିତାର୍ଥ କରିବାକୁ ଇଚ୍ଛା କଲେ ଓ ସେହି କାର୍ଯ୍ୟ ଅଦୃଶ୍ୟରେ ସାଧନା କରିବା ନିମନ୍ତେ କୁହୁଡ଼ି ସୃଷ୍ଟି କଲେ । ସେହି କାରଣରୁ ବେଦବ୍ୟାସ ଗୁମ୍ଫାରୁ ପ୍ରଥମେ କୁହୁଡ଼ି ବାହାରି ଚତୁର୍ଦ୍ଦିଗରେ ପ୍ରସାରିତ ହେଲା । ଏହି କୈବର୍ତ୍ତ ବାଳିକାର ଗର୍ଭରୁ ବେଦବ୍ୟାସଙ୍କର ଜନ୍ମ । ପରାଶର ବାଳିକାକୁ ତପ ପ୍ରଭାବରେ ବ୍ରାହ୍ମଣୀରେ ପରିଣତ କଲେ । ଏହି ବ୍ରାହ୍ମଣୀର ନାମ ଅନୁସାରେ ନଦୀରନାମ ବ୍ରାହ୍ମଣୀ ରଖାଗଲା । (୨) ବେଦବ୍ୟାସ ଜନ୍ମସ୍ଥାନ ସମ୍ପର୍କିତ ଜନଶ୍ରୁତିଟି କବି ଗଙ୍ଗାଧର ମେହେର ତାଙ୍କ ''କବିତା କଲ୍ଲୋଳ''ର ବେଦବ୍ୟାସ ଶୀର୍ଷକ କବିତାରେ ଏବଂ L.E.B. Cobden Ramsay ତାଙ୍କର Feudatory States of Orissa ପୁସ୍ତକରେ ସ୍ଥାନ ଦେଇଥିଲେ (୩)  ନିଜେ କବ୍‌ଡ଼େନ ରାମ୍‌ସେ ଗାଙ୍ଗପୁର ସମ୍ପର୍କିତ ତଥ୍ୟାବଳୀ ସାର୍ ଉଇଲିୟମ ହଣ୍ଟରଙ୍କ ରଚିତ Statistical Account of Bonai and Gangpur States ରୁ ସଂଗ୍ରହ କରିଥିବାର ଜଣାଯାଇଛି । ଏଣୁ ଅନ୍ତତଃ ଅଷ୍ଟାଦଶ ଊନବିଂଶ ଶତକରେ ଏହି ଜନଶ୍ରୁତିଟି ମଧ୍ୟ ପ୍ରଚଳିତ ଥିଲା ବୋଲି ବିନା ଦ୍ୱିଧାରେ କୁହାଯାଇପାରେ ।

॥ ଦୁଇ ॥

କୃଷ୍ଣ ଦ୍ୱୈପାୟନ ବେଦବ୍ୟାସଙ୍କର ପ୍ରକୃତ ଜନ୍ମସ୍ଥାନ ସମ୍ପର୍କରେ ସଂସ୍କୃତ ମହାଭାରତର ଆଦିପର୍ବ, ଶିବ ମହାପୁରାଣ, ଦେବୀ ଭାଗବତ ପୁରାଣ ଏବଂ ସାରଳା ମହାଭାରତର ଆଦିପର୍ବରେ ବିସ୍ତାରିତ ଆଲୋଚନା ହୋଇଛି । (୪) ଏହି ସମସ୍ତ ସାହିତ୍ୟିକ ଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ ବ୍ୟାସ କାଳୀ ନାମକ କୈବର୍ତ୍ତ ବାଳିକା ଗର୍ଭରୁ ଜନ୍ମଗ୍ରହଣ କରିଥିଲେ । (୫) ତାଙ୍କର ପିତା ଥିଲେ ପରାଶର ।

ପୂର୍ବକାଳରେ ଚେଦୀ ରାଜ୍ୟର ରାଜା ଉପରିଚର ମୃଗୟା କରିବାକୁ ଯିବାକାଳରେ ରାସ୍ତାରେ ହଠାତ କାମାବିଷ୍ଟ ହେଲେ ଏବଂ ସେହି ସମୟରେ ସ୍ଖଳିତ ରେତ ଏକ ଶ୍ୱେନ ପକ୍ଷୀକୁ ପ୍ରଦାନ କରି ତାହାକୁ ନିଜ ରାଣୀକୁ ହସ୍ତାନ୍ତର କରିବାକୁ ନିର୍ଦ୍ଦେଶ ଦେଲେ । ଆକାଶ ମାର୍ଗରେ ଯିବାବେଳେ ଶ୍ୱେନପକ୍ଷୀ ମୁହଁରୁ ତାହା ଯମୁନା ନଦୀରେ ପଡ଼ିଲା ଏବଂ ତାହାକୁ ଏକ ମତ୍ସୀ (ଯେକି ଶାପଭ୍ରଷ୍ଟା ଅପ୍‌ସରା) ଭକ୍ଷଣ କରି ଅନ୍ତଃସତ୍ତ୍ୱା ହେଲା । ଏକ କୈବର୍ତ୍ତ ଏହି ମତ୍ସୀକୁ ଧରି ନେଇଗଲା ଏବଂ ପରେ

ତାହାର ଗର୍ଭରୁ ଦୁଇଟି ମାନବ ସନ୍ତାନ ଦେଖି ଆଶ୍ଚର୍ଯ୍ୟ ହୋଇଥିଲା । ଗୋଟିଏ ପୁତ୍ର ଓ ଅନ୍ୟଟି ଦୁହିତା । ପୁତ୍ରକୁ ପାଳନ ପାଇଁ ରାଜାଙ୍କ ପାଖକୁ ପଠାଇ ଦେଇଥିଲା । କିନ୍ତୁ ଦୁହିତାକୁ ନିଜେ ପାଳନ କରିଥିଲା ।

ଏହି କନ୍ୟାର ନାମ କାଳୀ ଓ ମତ୍ସ୍ୟଗନ୍ଧା । ଏକଦା ପରାଶର ମୁନି ତୀର୍ଥଯାତ୍ରା ପାଇଁ ଯମୁନା ନଦୀ କୂଳରେ ପହଞ୍ଚିଲେ । ସେ କୈବର୍ତ୍ତ୍ୟକୁ ନଦୀ ପାର ପାଇଁ କହିଲେ । ଏହି କାଳରେ କୈବର୍ତ୍ତ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ଥିଲା । ତେଣୁ ନିଜର କନ୍ୟା ମତ୍ସ୍ୟଗନ୍ଧାକୁ ମୁନିଙ୍କୁ ନଦୀ ପାର କରିବାକୁ କହିଲା । ମତ୍ସ୍ୟଗନ୍ଧା ନୌକାରେ ମୁନିଙ୍କୁ ନେଇ ଯମୁନାରେ ନୌକା ଚଲାଇଲା । ଯମୁନାର ହିଲ୍ଲୋଳ ଏବଂ ମତ୍ସ୍ୟଗନ୍ଧାର ଯୌବନ ମୁନିଙ୍କୁ ମୁଗ୍ଧ କରିଥିଲା । ସେ ତାହାର ଶରୀର ସ୍ପର୍ଶ କରନ୍ତେ, ବାଳିକା ସେପରି କାର୍ଯ୍ୟରୁ ବିରତ ହେବାକୁ ଅନୁରୋଧ କଲା । କିନ୍ତୁ ପରାଶର କାମାନ୍ଧ ଥିଲେ । ସେଥିପାଇଁ ତପ ପ୍ରଭାବରେ ପ୍ରଥମେ ତାହାକୁ ଉତ୍ତମ ଗନ୍ଧାରେ ପରିଣତ କଲେ ଏବଂ ଘନ କୁହୁଡ଼ିର ଜାଲ ସୃଷ୍ଟି କରି ତାହା ସହିତ ଯୌନ ସମ୍ପର୍କ ରକ୍ଷା କଲେ । ଏହି ସମ୍ପର୍କ ରକ୍ଷା କାଳରେ ଋଷି ତାହାକୁ ଜଣାଇ ଦେଇଥିଲେ ଯେ ସେ ଅସୀମ ରୂପବତୀ ହୋଇଯିବ ଏବଂ ତାଙ୍କରି ଆଶିର୍ବାଦରୁ ତାହାର ଗର୍ଭରୁ ବହୁ ତେଜସ୍ୱୀ ବାଳକ ଜନ୍ମନେବ । ଏହାର ଲାଳନପାଳନ କରିବାକୁ ପଡ଼ିବ ନାହିଁ । ଏହା ମଧ୍ୟ ତାହାର କୁମାରୀ ଜୀବନରେ ଦାଗ ଆଣିବ ନାହିଁ । ଏହାପରେ ସଂଭୋଗ କରି ପରାଶର ମୁନି ଚାଲିଯିବା ପରେ ମତ୍ସ୍ୟଗନ୍ଧା ଋଷିସୃଷ୍ଟ ଯମୁନାର ଦ୍ୱିପରେ ଏକ ତେଜସ୍ୱୀ ବାଳକ ଜନ୍ମଦେଲା । ଦ୍ୱିପରେ ଜନ୍ମ ହୋଇଥିବାରୁ ତାହାର ନାମ ଦ୍ୱିପାୟନ ରଖାଯାଇଥିଲା । ବାଳକ ଜନ୍ମ ହେବା ପରେ ନିଜ ମାତାଙ୍କ ଠାରୁ ତପ କରିବା ପାଇଁ ଆଜ୍ଞା ମାଗି ଚାଲିଗଲା । ଏହି କୃଷ୍ଣ ଦ୍ୱୈପାୟନ ପ୍ରଥମେ ଋଷିମାନଙ୍କ ଠାରୁ ବେଦ ଅଧ୍ୟୟନ କରିଥିଲେ । ପରେ ସରସ୍ୱତୀ ନଦୀ ତଟରେ ସେ ମଧ୍ୟ ଆଚାର୍ଯ୍ୟ ହିସାବରେ କିଛିଦିନ ବିତାଇଥିଲେ । ଶେଷ ପର୍ଯ୍ୟାୟରେ ସେ ହିମାଳୟ ଗିରିଗୁହା ମଧ୍ୟରେ ଅବସ୍ଥାନ କରି ପୁରାଣ ଇତିହାସ ରଚନା ଆରମ୍ଭ କରିଥିଲେ । (୬)

॥ ତିନି ॥

ଏହି ଆଲୋଚନାରୁ ସ୍ପଷ୍ଟ ଜଣାଯାଏ ଯେ, ଯମୁନା ନଦୀର ଦ୍ୱିପରେ ପରାଶର ଆତ୍ମଜ କୃଷ୍ଣ ଦ୍ୱୈପାୟନ ଜନ୍ମଗ୍ରହଣ କରିଥିଲେ । ଗାଙ୍ଗପୁରରେ ଥିବା ବେଦବ୍ୟାସ ତୀର୍ଥ ସମ୍ପର୍କିତ କିମ୍ବଦନ୍ତୀ ଏହି ପୌରାଣିକ ବିବରଣୀକୁ ସମ୍ପୂର୍ଣ୍ଣ ଭାବେ ଗ୍ରହଣ କରେ ନାହିଁ । ଏଣୁ କିମ୍ବଦନ୍ତୀର ସତ୍ୟତାର ଆଲୋଚନା ଏ ପ୍ରସଙ୍ଗରେ ଏକାନ୍ତ ଆବଶ୍ୟକ ।

ଯଦି କୃଷ୍ଣ ଦ୍ୱୈପାୟନ ବ୍ୟାସ ବ୍ରାହ୍ମଣୀ ନଦୀର ଏହି କୂଳରେ ଜନ୍ମଗ୍ରହଣ କରିଥିଲେ; ତେବେ ଏହି ସ୍ଥାନଟି ତାଙ୍କ ଜନ୍ମକାଳର ନାମ ଅନୁସାରେ ନାମିତ ହେବା କଥା ।କିନ୍ତୁ ବେଦବ୍ୟାସ ବୋଲି ନାମ ଦେବା ଦ୍ୱାରା ଏହା ନିର୍ଦ୍ଦିଷ୍ଟ ଭାବରେ କେଉଁ ବେଦବ୍ୟାସଙ୍କର ପୀଠକୁ ସୂଚିତ କରୁଛି, ତାହା ଜାଣିବା କଷ୍ଟକର । ବ୍ୟାସ ଶବ୍ଦଟି ବିଭିନ୍ନ ଋଷିମାନଙ୍କ ପାଇଁ ବ୍ୟବହାର କରାଯାଇଛି । (୭) ଏଣୁ ଏପରି ନାମକରଣ କୃଷ୍ଣ ଦ୍ୱୈପାୟନଙ୍କର ଜନ୍ମସ୍ଥାନର ବାସ୍ତବତା ସମ୍ପର୍କରେ ଥିବା ନିବିଡ଼ ରହସ୍ୟକୁ ଆହୁରି ଅନ୍ଧକାରଚ୍ଛନ୍ନ କରୁଛି । ପୁଣି ପୌରାଣିକ ଉପାଦାନରେ ଏପରିକି ସାରଳା ଦାସଙ୍କ ମହାଭାରତରେ କୃଷ୍ଣ ଦ୍ୱୈପାୟନଙ୍କ ଜନ୍ମସ୍ଥାନ ଯମୁନାକୂଳ ବୋଲି ସୂଚିତ ହୋଇଥିବାସ୍ଥଳେ ତାହାକୁ ବ୍ରାହ୍ମଣୀ କୂଳକୁ ଆଣିବା ଏକ ଐତିହାସିକ ସିଦ୍ଧାନ୍ତର ଅପଳାପ । ପୁଣି ପରାଶର ମତ୍ସ୍ୟଗନ୍ଧା ନାମ୍ନୀ କୈବର୍ତ୍ତ କନ୍ୟା ସହିତ ଯୌନ ସମ୍ପର୍କ ରକ୍ଷା କରିବା ପାଇଁ ତାହାକୁ ବ୍ରାହ୍ମଣୀରେ ପରିଣତ କରିଥିବାରୁ ନଦୀର ନାମ ବ୍ରାହ୍ମଣୀ ରଖାଗଲା ବୋଲି ଯେଉଁ ତଥ୍ୟ ଜନଶ୍ରୁତିରେ ସ୍ଥାନ ପାଇଛି ତାହା ମଧ୍ୟ ଏହି ନଦୀ ସମ୍ପର୍କରେ ପ୍ରକୃତ ସତ୍ୟକୁ ପ୍ରକାଶ କରିନଥାଏ । ଏହି ଦୃଷ୍ଟିରୁ ଯଦି ନଦୀର ନାମକରଣ ହୋଇଥାଆନ୍ତା, ନିଜେ କୃଷ୍ଣ ଦ୍ୱୈପାୟନ ବ୍ୟାସ ମହାଭାରତର ଆଦିପର୍ବରେ ନିଜ ଜନ୍ମସ୍ଥାନକୁ ଯମୁନାର ଦ୍ୱିପ ଏବଂ ଭୀଷ୍ମପର୍ବରେ ନଦୀମାନଙ୍କ ମଧ୍ୟରେ ବ୍ରାହ୍ମଣୀ ନଦୀର ନାମ ଉଲ୍ଲେଖ କରିନଥାନ୍ତେ । ସେ ସିଧାସଳଖ ଏ ପ୍ରସଙ୍ଗଟି ଅର୍ଥାତ ନିଜ ଜନ୍ମସ୍ଥାନ ବ୍ରାହ୍ମଣୀ କୂଳରେ ବୋଲି କହିପାରିଥାନ୍ତେ । ଏଥିରୁ ତାଙ୍କ ଜନ୍ମସ୍ଥାନ ରହସ୍ୟ ସହିତ ବ୍ରାହ୍ମଣୀ ନଦୀର କୌଣସି ସମ୍ପର୍କ ନାହିଁ ବୋଲି ବୁଝିବାକୁ ହେବ । ମହାଭାରତ ରଚନା ପୂର୍ବରୁ ଏହି ସ୍ଥାନଟି ବୈଦିକ ବ୍ରାହ୍ମଣମାନଙ୍କର ପୀଠ ହୋଇଥିବାରୁ ପରବର୍ତ୍ତୀ କାଳରେ ଦୁଇଧାରର ସଙ୍ଗମର ନାମ ସ୍ତ୍ରୀ ଲିଙ୍ଗରେ ବ୍ରାହ୍ମଣୀ ବୋଲି କୁହାଯାଇଛି । (ଏହି ସ୍ଥାନଟି କିପରି ପ୍ରଥମେ ବୈଦିକ ବ୍ରାହ୍ମଣମାନଙ୍କର ପୀଠଥିଲା ତାହାପରେ ଯଥା ସ୍ଥାନରେ ସୂଚିତ ହୋଇଛି ।)

କୋଇଲ ନଦୀର କୂଳରେ ଛେଣ୍ଡ ବସ୍ତିର ଉତ୍ତରରେ ଏକ ଗଡ଼ର ଭଗ୍ନାବଶେଷ ଏବେ ମଧ ଦେଖିବାକୁ ମିଳେ । ଜନଶ୍ରୁତିରେ ଏହା ଦାସରାଜା ଗଡ଼ରୂପେ ପରିଚିତ (୮) । ଗଡ଼ମଧ୍ୟସ୍ଥ ଏକ ଅଣଓସାରିଆ ଖାଇ ପୂର୍ବରୁ ପଶ୍ଚିମକୁ ଗତିକରି କୋଇଲ ନଦୀରେ ପଡ଼ିଛି । ଖାଇର ଉଭୟ ପାର୍ଶ୍ୱ ଖଣ୍ଡି ଭିତରେ ଥିବା ଶିଳାଶ୍ରେଣୀକୁ ଦେଖିଲେ ଗଡ଼ର ପ୍ରାଚୀନତା ଅନୁମାନ କରାଯାଇପାରେ । ଖାଇର ଦକ୍ଷିଣ ଭାଗ ଉଚ୍ଚ ମାଟିସ୍ତୁପ ମଧ୍ୟରେ ଗଡ଼ଶିରୀ ଅର୍ଥାତ୍ ଗଡ଼ଦେବୀ ଉଚ୍ଚବୃକ୍ଷାଦି ମେଳରେ ବିଦ୍ୟମାନ । ଛୋଟଛୋଟ

ପ୍ରାଚୀନ ଭଙ୍ଗାଇଟା ଏଣେତେଣେ ଉଭୟ ପାର୍ଶ୍ୱରେ ପଡ଼ିଛି (୯) । ଏହି ଅଞ୍ଚଳରେ ମଧ୍ୟ କୈବର୍ତ୍ତ ସମ୍ପ୍ରଦାୟ ବାସ କରୁଛନ୍ତି । ଏସବୁ ସତ୍ତ୍ୱେ ଏହି ଅଞ୍ଚଳକୁ ଉପରିଚର ବସୁଙ୍କ ଶାସିତ ଚେଦୀ ରାଜ୍ୟ ବୋଲି ସ୍ୱୀକାର କରାଯାଇପାରିବ ନାହିଁ ।

ମହାଭାରତର ଆଦିପର୍ବରେ କୃଷ୍ଣ ଦ୍ୱୈପାୟନଙ୍କର ଜନ୍ମସ୍ଥାନ ସମ୍ପର୍କରେ ଆଲୋଚନା ରହିଛି । ଏଥିରେ ଚେଦୀ ସମ୍ରାଟ ଉପରିଚର୍ ବସୁଙ୍କର ରାଜ୍ୟ ଓ ଶାସନ ବିଷୟରେ ବର୍ଣ୍ଣନା ରହିଛି । ତାହାଙ୍କର ରାଜଧାନୀକୁ ଶୁକ୍ତିମତୀପୁର ବୋଲି ପ୍ରକାଶ କରାଯାଇଛି । ଏହା ଶୁକ୍ତିମତୀ ନଦୀ କୂଳରେ ଅବସ୍ଥିତ । ଯମୁନାର ଏକ ଶାଖା ନଦୀକୁ ଅତୀତରେ ଶୁକ୍ତିମତୀ ବୋଲି ନାମିତ କରାଯାଇଥିଲା । ଏହି ନଦୀ ବୁନ୍ଦେଲଖଣ୍ଡ ଅଞ୍ଚଳରେ ପ୍ରବାହିତ ଥିବା ଆଧୁନିକ କେନ୍ ନଦୀ ସହିତ ଚିହ୍ନିତ କରାଯାଇଛି । ଐତିହାସିକ ହେମଚନ୍ଦ୍ର ରାୟ ଚୌଧୁରୀ ପାର୍ଜିଟରଙ୍କ ମତକୁ ଗ୍ରହଣ କରି ପ୍ରକାଶ କରିଛନ୍ତି —

Pargiter places Chedi along the south bank of the Jumna. from the Chambal on the north- west as far as Karwi on the south-east, its limits south wards may have been the plateau of Malwa and the hills of Bundelkhand.

ଐତିହାସିକ ଦୀନେଶ ଚନ୍ଦ୍ର ସରକାର ଶୁକ୍ତିମତୀପୁର ସମ୍ପର୍କରେ ମତ ପ୍ରକାଶ କରିଛନ୍ତି —

The Suktimati is the modern ken, a tributary of the Jumna,, flow-ing through Bundelkhand. On its bank stood a city of the same name (Pali- sotthivati) which was the ancient capital of the Chedi people (୧୧)

ଏହି ନଦୀର ଉତ୍ପତ୍ତି ସମ୍ପର୍କରେ କୁହାଯାଇଛି:

ଶୁନୀ ଲଜ୍ଜା ଶୁକ୍ତିମତୀ ଶକୁଲୀ ତ୍ରିଦିବାକ୍ରମୁଃ

ରକ୍ଷପାଦାତ୍ ପ୍ରସୂତାସ୍ତା ନଦ୍ୟୋ ମଣିନିଭୋଦକାଃ । (୧୨)

ରକ୍ଷପାଦ ପର୍ବତରୁ ନିର୍ଗତ ଶୁକ୍ତିମତୀ ନଦୀ । ଏହି ରକ୍ଷପାଦ ପର୍ବତର ଅବସ୍ଥିତି ସମ୍ପର୍କରେ ଦୀନେଶ ଚନ୍ଦ୍ର ସରକାର ମତ ଦେଇଛନ୍ତି ।

The Riksavat was that part of Vindhya range which lies to the north of Narmada and runs from the Malwa region right upto the sources of that river as well as of the Mahanadi. (୧୩) ।

କୃଷ୍ଣ ଦ୍ୱୈପାୟନଙ୍କର ଜନ୍ମସ୍ଥାନକୁ ଚେଦୀ ରାଜ୍ୟ ଅନ୍ତର୍ଗତ ଯମୁନା ନଦୀର

ଶାଖା ଶୁକ୍ତିମତୀ ନଦୀ ନିକଟରେ ସ୍ଥିର କରାଯାଇପାରେ । ଐତିହାସିକ ନବୀନ କୁମାର ସାହୁ ଏହି ମତକୁ ଗ୍ରହଣ ନକରି ପ୍ରକାଶ କରିଛନ୍ତି —

ଶୁକ୍ତିମତୀ ହେଉଛି ଆଧୁନିକ ବଲାଙ୍ଗୀର ଜିଲ୍ଲାରେ ପ୍ରବାହିତ ଶୁକତେଲ ନଦୀ । ଏହି ନଦୀ ଝର ଶିରାଳ ଗନ୍ଧମାର୍ଦ୍ଦନ ପର୍ବତରୁ ଉଦ୍ଭବ ହୋଇ ମହାନଦୀ ଓ ତେଲ ନଦୀର ସଂଗମ ନିକଟରେ ତେଲ ସହିତ ମିଶିଛି । ତେଲ ଓ ଶୁକତେଲ ଯଥାକ୍ରମେ ତେଲବାହ ଓ ଶୁକ୍ତିମତୀ ନାମରେ ପ୍ରାଚୀନ ସାହିତ୍ୟରେ ପରିଚିତ । ଆଧୁନିକ ବଲାଙ୍ଗୀର ଜିଲ୍ଲାରେ ତେଲ ଶୁକତେଲ ଅବବାହିକାରେ ପ୍ରାଚୀନ ଚେଦୀ ରାଜ୍ୟର ଅବସ୍ଥିତି ନିରୂପଣ କରାଯାଇପାରେ । ସେହି ରାଜ୍ୟର ରାଜଧାନୀ ଶୁକ୍ତିମତୀ ଏବେ ନିଶ୍ଚିହ୍ନ ହୋଇଯାଇଛି । ଶୁକତେଲ କୂଳସ୍ଥ ଶକମା ସମ୍ଭବତଃ ତାହାର ସ୍ମାରକୀ । (୧୪)

ସେ ଏହି ଦୃଷ୍ଟିରୁ ଉପରିଚର ବସୁଙ୍କ ଶାସିତ ଚେଦୀ ରାଜ୍ୟ ଦକ୍ଷିଣ କୋଶଳ ମଧ୍ୟରେ ଅବସ୍ଥିତ ବୋଲି ମତ ଦେଇଛନ୍ତି । ଐତିହାସିକ ସ୍ୱର୍ଗତଃ ସାହୁଙ୍କର ମତକୁ ଖଣ୍ଡନ କରିବା ପାଇଁ ଅନେକ ଉପାଦାନ ରହିଛି । ପୁରାଣ ବର୍ଣ୍ଣିତ ଶୁକ୍ତିମତୀ ପର୍ବତକୁ ସେ ଶୁକ୍ତିମତୀ ନଦୀ ଅର୍ଥରେ ଗ୍ରହଣ କରିଛନ୍ତି ।

ଏ ସମ୍ପର୍କରେ ଥିବା ଶ୍ଳୋକଟିକୁ ଦିନେଶ ଚନ୍ଦ୍ର ସରକାର ଉଦ୍ଧାର କରିଛନ୍ତି ।

ଋଷିକୁଲ୍ୟା କୁମାରୀ ଚ ମନ୍ଦଗା ମନ୍ଦବାହିନୀ<br>
କୃପା ପଲାଶିନୀ ଚୈବ ଶୁକ୍ତିମଦ୍ ପ୍ରଭବାଃ ସ୍ମୃତା । (୧୫)

ଏହି ଶୁକ୍ତିମତ ପର୍ବତ ସମ୍ପର୍କରେ ସରକାର ମଧ୍ୟ ମତ ଦେଇଛନ୍ତି-

The name of the Suktima is preserved in that of the Sakti hills in Raigrah, Madhya Pradesh and possibly in that of the Suktel river which joins the Mahanadi near sonepur in Orissa. The name Suktimat was probably applied to the chain of hills that extends from Sakti in Raigarh to the Dalma hills in the old Manbhum district. (୧୬)।

ମହାଭାରତର ଭୀଷ୍ମ ପର୍ବରେ ଭାରତୀୟ ନଦୀମାନଙ୍କ ନାମ ଉଲ୍ଲେଖ ହୋଇଅଛି । ଏଥିରେ ବ୍ରାହ୍ମଣୀ ନଦୀର ନାମ ସହିତ ଅନ୍ୟ ନଦୀର ନାମ ରହିଛି । ଏଥିରେ ଥିବା କୁମାରୀ ଋଷିକୂଲ୍ୟା ଚ ମାର୍କଣ୍ଡେୟ ପୁରାଣର ଋଷିକୁଲ୍ୟା କୁମାରୀଂ ଚ ବୋଲି ବର୍ଣ୍ଣିତ ହୋଇଛି । ଉଭୟ ନଦୀ ଛୋଟନାଗପୁର ମାଳଭୂମିର ବୋଲି ମଧ୍ୟ ମତ ଦିଆଯାଇଛି । (୧୭)

ଦିନେଶଚନ୍ଦ୍ର ସରକାରଙ୍କ ମତକୁ ଉଦ୍ଧାର କରି ମଧ୍ୟ ଖରିଆର ଯୁବରାଜ ଜିତାମିତ୍ର ପ୍ରସାଦ ସିଂହଦେଓ ଶୁକ୍ତିମତକୁ ନଦୀ ଅର୍ଥରେ ଗ୍ରହଣ କରିଛନ୍ତି । (୧୮) କିନ୍ତୁ ଏହି ସିଦ୍ଧାନ୍ତ ଗ୍ରହଣୀୟ ନୁହେଁ । ଶୁକ୍ତିମତ ପର୍ବତରୁ ପ୍ରବାହିତ ନଦୀମାନଙ୍କର ବର୍ଣ୍ଣନା ଏବଂ ଋକ୍ଷପାଦ ପର୍ବତରୁ ଜାତ ଶୁକ୍ତିମତୀ ନଦୀର ବର୍ଣ୍ଣନା ପୁରାଣମାନଙ୍କରେ ସ୍ୱତନ୍ତ୍ର ଭାବରେ ସ୍ଥାନ ପାଇଛି । ତେଣୁ ଆଲୋଚକମାନେ ଉଭୟ ପ୍ରସଙ୍ଗକୁ ଅଧ୍ୟୟନ କରି ସିଦ୍ଧାନ୍ତ ନେବା ଉଚିତ ।

॥ ଚାରି ॥

ସୁନ୍ଦରଗଡ଼ରେ ପ୍ରଚଳିତ ଜନଶ୍ରୁତିର ଐତିହାସିକ ଦିଗକୁ ଗ୍ରହଣକରି ଏତିକିମାତ୍ର କୁହାଯାଇପାରିବ ଯେ ସୁଦୂର ଅତୀତରେ ସୁନ୍ଦରଗଡ଼ ଅଞ୍ଚଳରେ ଚେଦୀ ବଂଶର ଏକ ଶାଖା ଶାସନ କରିଥାଇପାରନ୍ତି । ଏପରି ସମ୍ଭାବନାକୁ ଅନେକ କାରଣରୁ ଗ୍ରହଣ କରାଯାଇପାରେ ।

(୧) ଖ୍ରୀଷ୍ଟୀୟ ଏକାଦଶ- ଦ୍ୱାଦଶ ଶତକରେ କଳଚୁରି ରାଜାମାନେ ପଶ୍ଚିମ କୋଶଳରେ ଆଧିପତ୍ୟ ବିସ୍ତାର କରିବା ପୂର୍ବରୁ ଚେଦୀ ରାଜା ବୋଲି ପରିଚିତ ଥିଲେ । କଳଚୁରି କ୍ଷମତା ସମଗ୍ର ସୁନ୍ଦରଗଡ଼ରେ ବିସ୍ତାର ଲାଭ କରିଥିଲା ।

(୨) ସୁନ୍ଦରଗଡ଼ରେ ଶାସନ କରୁଥିବା ପାରମାର ବଂଶୀ ରାଜା ହମ୍ମିରଦେବ କଳଚୁରି -ଚେଦୀ ସମ୍ବତ ବ୍ୟବହାର କରିଥିବାର ସୂଚନା ତାଙ୍କ ପ୍ରଦତ୍ତ ବରପାଲି ତାମ୍ରଫଳକରୁ ସଂଗ୍ରହ କରାଯାଇପାରେ । (୧୯)

ଏହିପରି କୌଣସି କାରଣରୁ ସୁନ୍ଦରଗଡ଼ ଚେଦୀ ରାଜ୍ୟ ଅନ୍ତର୍ଗତ ବୋଲି ଜନଶ୍ରୁତିରେ ସ୍ଥାନ ପାଇଛି । ତେବେ ଚେଦୀ ସମ୍ରାଟ ଉପରିଚର ବସୁଙ୍କର ଶାସନ କାଳରେ ତାଙ୍କ ରାଜ୍ୟ ମଧ୍ୟରେ ସୁନ୍ଦରଗଡ଼ ନଥିଲା କିମ୍ବା ଶୁକ୍ତିମତୀ ପଶ୍ଚିମ କୋଶଳରେ ପ୍ରବାହିତ ହୋଇନଥିଲା । କୋଇଲ କୂଳରେ ଛେଣ୍ଡ ବସ୍ତିର ଉତ୍ତରରେ ଥିବା ଗଡ଼ ଏକ ପ୍ରାଚୀନ ରାଜବଂଶର ରାଜନୈତିକ କେନ୍ଦ୍ର ବୋଲି ସ୍ୱୀକାର କରାଯାଇପାରେ । ଛେଣ୍ଡବସ୍ତି ପାଖର ବିସ୍ତାରିତ ଅଞ୍ଚଳରେ ପ୍ରାଚୀନ ବସତିର ଚିହ୍ନ ଏବେ ମଧ୍ୟ ରହିଛି । ଏହା ଏକଦା ଏକ ଉନ୍ନତ ସଭ୍ୟତାର ପ୍ରାଣକେନ୍ଦ୍ର ଥିଲା ବୋଲି ଏଥିରୁ ସୂଚିତ ହୁଏ । ସମ୍ଭବତଃ ଶଙ୍ଖ ଓ କୋଇଲର ସଙ୍ଗମସ୍ଥଳରେ ପରାଶର ନାମକ ବେଦଜ୍ଞଙ୍କର ପୀଠ ଥିବା କାଳରେ ଯେଉଁ ରାଜବଂଶ ଏଠାରେ ଶାସନ କରୁଥିଲେ ସେମାନଙ୍କ ଅଧିନରେ ଗାଙ୍ଗପୁରର ବହୁଳାଂଶ ରହିଥିଲା । ଏହି ରାଜବଂଶ ସହିତ ଆଦିବାସୀମାନେ ସୁସମ୍ପର୍କ

ରଖୁଥିଲେ । ପୁଣି ଅତୀତରେ ବ୍ରାହ୍ମଣୀ ନଦୀ ସୁନାବ୍ୟା ଥିବାରୁ କୈବର୍ତ୍ତ ସମ୍ପ୍ରଦାୟର ବସତି ପାଇଁ ଏହା ଏକ ସୁନିର୍ବାଚିତ ସ୍ଥାନ ଥିଲା । କୋଇଲି ନଦୀଟି ମଧ୍ୟ ଋଷିମାନଙ୍କ ନଦୀ ବୋଲି ପୁରାଣରେ ପ୍ରକାଶ କରାଯାଇଛି । ଏହାର ଆଦିନାମ ଥିଲା ଋଷିକୂଲ୍ୟା । ପରାଶର ଓ ଗୌତମ ପ୍ରଭୃତି ବେଦଜ୍ଞ (ଯେଉଁମାନେ କୋଶଳ ସମ୍ରାଟ ହିରଣ୍ୟନାଭ ଶିଷ୍ୟ କୃତିଙ୍କର ଶିଷ୍ୟ) ଙ୍କର ଏହା ଥିଲା ସାଧନାସ୍ଥଳ (୨୦) । ପରବର୍ତ୍ତୀ କାଳରେ ଋଷି ଶବ୍ଦଟି ଜନଶ୍ରୁତିରେ ବାଦ୍‌ଯାଇ କୂଲ୍ୟା ବିକୃତ ଉଚ୍ଚାରଣ ଦ୍ୱାରା କୋଇଲରେ ପରିଣତ ହୋଇଛି । ପୁରାଣରେ ବର୍ଣ୍ଣନା କରାଯାଇଛି —

ଋଷିକୁଲ୍ୟା କୁମାରୀ ଚ ମନ୍ଦଗା ମନ୍ଦବାହିନୀ
କୃପା ପଲାଶିନୀ ଚୈବ ଶୁକ୍ତିମତ ପ୍ରଭବାଃ ସ୍ମୃତାଃ ।

ଏହି ଋଷିକୂଲ୍ୟା ଶୁକ୍ତିମତ ପାଦ ସଂଜାତ । କୋଇଲ ନଦୀର ପୂର୍ବ କୂଳର ପାହାଡ଼ ଜନଶ୍ରୁତିରେ ଗୌତମୀ ଘୁଟୁକୁରା ନାମରେ ପରିଚିତ । ଏଥିରୁ ଅତୀତରେ କୋଇଲ କୂଳର କେତେକ ସ୍ଥାନ ବେଦଜ୍ଞ ଋଷିମାନଙ୍କର ସାଧନାସ୍ଥଳ ରୂପେ ପରିଚିତ ଥିଲା ବୋଲି ଜଣାଯାଏ । ଅତୀତରେ ଏହିପରି ପ୍ରସିଦ୍ଧ ଥିବା ସ୍ଥାନକୁ ସେଥିପାଇଁ ବେଦବ୍ୟାସ ବୋଲି ପ୍ରକାଶ କରାଯାଇଥିଲା । ପରେ ହୁଏତ ମହାଭାରତର ବିଷୟକୁ ନେଇ କୈବର୍ତ୍ତ ସମ୍ପ୍ରଦାୟ ପକ୍ଷରୁ ଶଙ୍ଖ ଓ କୋଇଲର ସଙ୍ଗମ ସ୍ଥଳଠାରୁ ନୌକା ଚଳାଚଳ ଓ ଅନ୍ୟାନ୍ୟ ସୁବିଧା ପାଇଁ (ଯେଉଁ ସୁବିଧା ଆଦିମ ନିବାସୀମାନେ ପାଉଥିଲେ) ଏହାକୁ କୃଷ୍ଣ ଦ୍ୱୈପାୟନଙ୍କର ଜନ୍ମସ୍ଥାନ ବୋଲି ପ୍ରକାଶ କରାଯାଇଥିଲା । ଯେହେତୁ କୃଷ୍ଣ ଦ୍ୱୈପାୟନଙ୍କର ପିତା ଥିଲେ ପରାଶର ଏବଂ ବ୍ରାହ୍ମଣୀ କୂଳରେ ଥିଲା ପରାଶର ଘୁଟୁକୁରା, ଜନଶ୍ରୁତିରେ ଉଭୟ ପରାଶର ଏକ ଓ ଅଭିନ୍ନ ବୋଲି ରହିଗଲେ । ପୁଣି ବ୍ରାହ୍ମଣୀ କୂଳରେ ଏକ ପ୍ରକାର କୁହୁଡ଼ି ସୃଷ୍ଟି ହେଉଥିବାରୁ ଏହା ପରାଶରଙ୍କର କାମବାସନା ଚରିତାର୍ଥ ପାଇଁ ସୃଷ୍ଟି କରାଯାଇଥିବା କୁହୁଡ଼ି ରୂପେ ଗ୍ରହଣ କରିବାରେ କିଛି ଅସୁବିଧା ନଥିଲା; ମାତ୍ର ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ ପରାଶର ମତ୍ସ୍ୟଗନ୍ଧା ସହିତ ଯୌନ ସମ୍ପର୍କ ରଖିବା ପାଇଁ ଜନ ଆଢୁଆଳରେ ଯେଉଁ କୁହୁଡ଼ି ସୃଷ୍ଟି କଲେ, ତାହା କାମବାସନା ଚରିତାର୍ଥ କରିବା ପରେ ଉଭାଇଯାଇଥିଲା । ଏଣୁ ବ୍ରାହ୍ମଣୀ କୂଳରେ ପ୍ରତିବର୍ଷ ନିର୍ଦ୍ଦିଷ୍ଟ ସମୟରେ ଆସୁଥିବା କୁହୁଡ଼ିକୁ ପରାଶର ସୃଷ୍ଟ କୁହୁଡ଼ି ସହିତ ମିଳାଇ ଦେବା ଉଚିତ ହେବ ନାହିଁ । ପୁରାଣମାନଙ୍କରେ ପରାଶର ସୃଷ୍ଟ କୁହୁଡ଼ି ଏହିପରି ଭାବରେ ପ୍ରତିବର୍ଷ ଏକ ନିର୍ଦ୍ଦିଷ୍ଟ ସମୟରେ ଆସୁଥିବାର ସୂଚନା ନାହିଁ । ଶଙ୍ଖ, କୋଇଲ

ଏବଂ ସରସ୍ୱତୀର ମିଳନ ସ୍ଥାନ ଏକ ଦ୍ୱୀପପରି ଦେଖାଯାଏ । ଏହିପରି ଏକ ଦ୍ୱୀପରେ କୃଷ୍ଣ ଦ୍ୱୈପାୟନ ଜନ୍ମ ନେଇଥିବାର କଥା ପୁରାଣରେ ସୂଚିତ । ବ୍ରାହ୍ମଣୀ କୂଳରେ ଦେଖାଦେଉଥିବା ଏକ ପ୍ରକାର କୁହୁଡ଼ି, ପରାଶର ନାମ ବହନ କରୁଥିବା ଏକ କ୍ଷୁଦ୍ର ପାହାଡ଼ ଘୁଟୁକୁରା- ଯେଉଁ ପରାଶରଙ୍କୁ କୃଷ୍ଣ ଦ୍ୱୈପାୟନଙ୍କର ପିତା ହିସାବରେ ଗ୍ରହଣ କରାଯାଇଛି, ଶଙ୍ଖ କୋଇଲ ଏବଂ ସରସ୍ୱତୀର ମିଳନ ସ୍ଥାନ ଏକ ଦ୍ୱୀପ ସଦୃଶ- ଏ ସମସ୍ତ ଉପାଦାନକୁ ନେଇ ମହାଭାରତ ରଚୟିତା କୃଷ୍ଣ ଦ୍ୱୈପାୟନଙ୍କର ଜନ୍ମସ୍ଥାନ ଏହି ସ୍ଥଳ ବୋଲି ଜନଶ୍ରୁତି ସୃଷ୍ଟି ହୋଇଛି । ପୁଣି ପ୍ରାଚୀନ ଏକ ରାଜବଂଶ (ଆଦିବାସୀମାନଙ୍କ ସହିତ ଜଡ଼ିତ) ରାଜାଙ୍କୁ ଦାସରାଜା ବୋଲି ପ୍ରକାଶ କରି ତାଙ୍କର ଗଡ଼କୁ ଦାସରାଜଗଡ଼ ବୋଲି ଗ୍ରହଣ କରାଯାଇଛି । ଅନୁମାନ କରାଯାଇପାରେ ଯେ କୈବର୍ତ୍ତ ସମ୍ପ୍ରଦାୟ ମୁଖ୍ୟ ଏହି ନଦୀସ୍ଥଳରେ କ୍ଷମତାଶାଳୀ ହୋଇ ଆଦିମ ନିବାସୀମାନଙ୍କର ସ୍ଥାନ ଉପରେ ଥିବା କର୍ତ୍ତୃତ୍ୱକୁ ଅସ୍ୱୀକାର କରିଥିଲେ ଏବଂ ସେମାନଙ୍କ ଉପରେ ନିଜର ଆଧିପତ୍ୟ ବିସ୍ତାର କରିଥିଲେ । ପରେ ଜନଶ୍ରୁତି ତାହାଙ୍କୁ ଦାସରାଜା ବୋଲି ଗ୍ରହଣ କରି ଭୁଲରେ ମତ୍ସ୍ୟଗନ୍ଧର ପିତା ବୋଲି ସ୍ୱୀକାର କରିଥିଲା । କିନ୍ତୁ ଚେଦୀ ରାଷ୍ଟ୍ର 'ସୁନ୍ଦରଗଡ଼ ହୋଇନଥିବାରୁ ଦାସରାଜାଙ୍କର ବାସସ୍ଥଳ ଏଠାରେ ନଥିଲା ବୋଲି କୁହାଯାଇପାରେ । ଅନୁମାନ କରାଯାଇପାରେ ଯେ ଚେଦୀ ବଂଶର ଏକ ଶାଖା ଏହି ଅଞ୍ଚଳରେ ରାଜତ୍ୱ କରୁଥିବା କାଳରେ ଏକ ସାମନ୍ତ ରାଜା କୋଇଲ କୂଳରେ ଗଡ଼ ନିର୍ମାଣ କରି କିଛି ଅଞ୍ଚଳକୁ ଶାସନ କରୁଥିଲେ । ପରେ ସେହି ସାମନ୍ତ ରାଜାଙ୍କର ଗଡ଼କୁ ଦାସରାଜା ଗଡ଼ବୋଲି ପ୍ରକାଶ କରାଯାଇଛି । ମହାଭାରତରେ ମତ୍ସ୍ୟଗନ୍ଧାର ପାଳିତ ପିତା କୈବର୍ତ୍ତ ଥିବାର ସୂଚନା ଥିଲେ ମଧ୍ୟ ତାଙ୍କର ରାଜଧାନୀ ଥିବାର ସୂଚନା ନାହିଁ । ଏଣୁ ଜନଶ୍ରୁତିର ଏହି ଅଂଶଟି ବ୍ରାହ୍ମଣ/ ଆର୍ଯ୍ୟମାନଙ୍କର ସମର୍ଥନରେ ମହାଭାରତର ବିଷୟବସ୍ତୁକୁ ନେଇ ଉଦ୍ଦେଶ୍ୟ ରଖି ପ୍ରଚାର କରାଯାଇଛି ।

ଶଙ୍ଖ ଓ କୋଇଲର ସଙ୍ଗମସ୍ଥଳ ଆଦିମ ନିବାସୀ ଏବଂ ବ୍ରାହ୍ମଣ/ଆର୍ଯ୍ୟମାନଙ୍କ ପାଇଁ ନାନା କାରଣରୁ ପୁଣ୍ୟପୀଠ ରୂପେ ବିବାଦର ଭୂମିଥିଲା । ଏହି ସ୍ଥାନ ଅଧିକାର/ ପ୍ରାଧାନ୍ୟ ବିସ୍ତାର ପାଇଁ ଏହି ସମସ୍ତ ସାମାଜିକ ଗୋଷ୍ଠୀ ମଧ୍ୟରେ ଥିବା ବିବାଦରୁ ଏହି ସ୍ଥାନରେ କୃଷ୍ଣ ଦ୍ୱୈପାୟନଙ୍କର ଜନ୍ମସ୍ଥାନ ସମ୍ପର୍କିତ ଜନଶ୍ରୁତି (ଆଖ୍ୟାନ) ସୃଷ୍ଟି ହୋଇଛି । ଏହି ଅଞ୍ଚଳର ପ୍ରଥମ ବାସିନ୍ଦା ଥିଲେ ଭୂୟାଁ, ଓରାଂ, ମୁଣ୍ଡା, ଗଣ୍ଡ ଏବଂ ଖଡ଼ିଆ ।

ସମ୍ଭବତଃ ପ୍ରାଚୀନ କାଳରେ (ପରାଶରଙ୍କର ପରବର୍ତ୍ତିକାଳରେ) ଆଦିମ ନିବାସୀମାନେ ଏହି ସଙ୍ଗମସ୍ଥଳକୁ ନିଜର ଧର୍ମକାର୍ଯ୍ୟ ପାଇଁ ବ୍ୟବହାର କରୁଥିଲେ ଏବଂ ନିଜ ଅଧିନରେ ରଖିଥିଲେ । ବହୁ ଶତାବ୍ଦୀ ପରେ କିଛି କୈବର୍ତ୍ତ ନିଜର ସୁବିଧା ପାଇଁ (ନୌକା ଚଳାଚଳ ପାଇଁ) ଏହି ସ୍ଥାନକୁ ଅଧିକାର କରିବାକୁ ଚେଷ୍ଟା କରିଥିଲେ । କିଛି ବର୍ଷକାଳ ଉଭୟ ଗୋଷ୍ଠୀ ମଧ୍ୟରେ ସ୍ଥାନ ଅଧିକାର ନେଇ ବିବାଦ ଲାଗିଥିବ । ପରେ ବ୍ରାହ୍ମଣମାନଙ୍କର ସହଯୋଗରେ ଉଭୟ ଗୋଷ୍ଠୀ ମଧ୍ୟରେ ଥିବା ବିବାଦର ସମାଧାନ ହୋଇଥିବ । ବ୍ରାହ୍ମଣମାନେ ଏପରି ଏକ ସଙ୍ଗମସ୍ଥଳକୁ ମଧ୍ୟ ନିଜର ସୁବିଧା ପାଇଁ ବ୍ୟବହାର କରିବାକୁ ଭିତରେ ଇଚ୍ଛା କରିଥିବେ । ଏହି ପୃଷ୍ଠପଟରେ କୃଷ୍ଣ ଦ୍ୱୈପାୟନ ବ୍ୟାସଙ୍କର ଏହି ସ୍ଥାନରେ ଜନ୍ମ ନେଇଥିବା ସମ୍ବାଦକୁ ନେଇ ଏକ କ୍ଷୁଦ୍ର ପୁରାଣ ରଚନା କରାଯାଇଥିବ ଏବଂ ଜନଶ୍ରୁତି ପ୍ରସାରିତ ହୋଇଥିବ । ଏହି କାଳରେ ଶଙ୍ଖ ଓ କୋଇଲ ନିକଟସ୍ଥ ଏକ ସ୍ରୋତକୁ ସରସ୍ୱତୀ ବୋଲି ନାମିତ କରାଯାଇଥିବ- ଏହା ଫଳରେ ଅନ୍ୟ ଦୁଇଟି କ୍ଷୁଦ୍ର ନଦୀକୁ ଗଙ୍ଗା ଏବଂ ଯମୁନା ନାମରେ ପରିଚିତ କରାଯାଇଥିବ । (୨୨) ଶଙ୍ଖ ନଦୀର ଜଳର ରଙ୍ଗ ଗଙ୍ଗାଜଳ ରଙ୍ଗ ପରି । କୋଇଲ ନଦୀର ଜଳର ରଙ୍ଗ ଯମୁନା ନଦୀର ଜଳପରି ଏବଂ ସରସ୍ୱତୀ ନଦୀର ଜଳ ଅନ୍ୟ ଧାରର ଜଳପରି ଦିଶୁଥିବାରୁ ଏହା ଶାରଳା ମହାଭାରତ ରଚନାକାଳରେ ମଧ୍ୟ ତ୍ରିବେଣୀ ବୋଲି ପରିଚିତ ଥିଲା । (୨୩) ଭାରତୀୟ ଖ୍ୟାତିସମ୍ପନ୍ନ ନଦୀର ନାମକୁ ଆଞ୍ଚଳିକ ନଦୀର ନାମରେନାମିତ କରାଯାଇଥିବାର ଦୃଷ୍ଟାନ୍ତର ମଧ୍ୟ ଅଭାବ ନାହିଁ; ଯେପରି ଓଡ଼ିଶାରେ ଚନ୍ଦ୍ରଭାଗା ନଦୀ ପ୍ରବାହିତ । ଏହି ଚନ୍ଦ୍ରଭାଗା ଆର୍ଯ୍ୟବସତିର ପ୍ରାରମ୍ଭରେ ଉତ୍ତର- ପଶ୍ଚିମାଂଶରେ ପ୍ରବାହିତ ସପ୍ତନଦୀ ଅନ୍ତର୍ଗତ ।

ସଙ୍ଗମସ୍ଥଳକୁ କୃଷ୍ଣ ଦ୍ୱୈପାୟନ ବେଦବ୍ୟାସଙ୍କର ଜନ୍ମସ୍ଥାନ ବୋଲି ପ୍ରଚାର କରିବା ଦ୍ୱାରା ଦୁଇ ଭିନ୍ନ ଜାତି/ ଗୋଷ୍ଠୀ ମଧ୍ୟରେ ବିବାହ ବ୍ୟବସ୍ଥା (inter-caste and inter- tribal marriage) ଯାହା ଋଷି ପରାଶର ଏବଂ କୈବର୍ତ୍ତ କନ୍ୟାଙ୍କର ସାମୟିକ ମିଳନ ଯୋଗୁ ସମ୍ଭବ ହୋଇପାରିଲା- ଗୃହୀତ ହୋଇପାରିଲା । ଏହି ସ୍ଥାନକୁ କୃଷ୍ଣ ଦ୍ୱୈପାୟନଙ୍କର ଜନ୍ମସ୍ଥାନ ରୂପେ ଗ୍ରହଣ କରିଥିବା ଜନଶ୍ରୁତିର ଏହା ଥିଲା ଅନ୍ୟ ଏକ ଆଭିମୁଖ୍ୟ । ଏପରି ପ୍ରଚାର ଦ୍ୱାରା ବ୍ରାହ୍ମଣମାନେ, କୈବର୍ତ୍ତମାନେ ଏବଂ ଆଦିମ ନିବାସୀମାନେ ଉପକୃତ ହେଲେ ଏବଂ ସଙ୍ଗମସ୍ଥଳଟି ଏକ ଉପ ଆଞ୍ଚଳିକ ତୀର୍ଥସ୍ଥାନ ରୂପେ ଭାରତରେ ପରିଚିତ ହେଲା ।

## ପ୍ରସଙ୍ଗନିର୍ଦ୍ଦେଶ

୧. କବି ଗଙ୍ଗାଧର ମେହେରଙ୍କ ରଚିତ ''କବିତା କଲ୍ଲୋଳ'' ଅନ୍ତର୍ଗତ ବେଦବ୍ୟାସ ଶୀର୍ଷକ କବିତାରେ ପ୍ରକାଶ କରାଯାଇଛି,

ସତ୍ୟବତୀ ପିତା ଥିଲେ ଦାସପତି
ପାଶେ ରହିଛନ୍ତି ତାହାଙ୍କ ବସତି ।
ନାହିଁ ସିନା ତାଙ୍କ ନିବାସ ଆଗାର
ରହିଅଛି ବାସଭୂମି ସ୍ତୂପାକାର ।
ଚତୁର୍ଦ୍ଦିଗେ ତାର ବେଢ଼ିଛି ପରିଖା
ନିକଟକୁ ଯାଇ କର ତା ପରୀକ୍ଷା ।
ଅଦ୍ୟାବଧି ଦାସ ବଂଶଧରମାନେ
ଅଛନ୍ତି ଏ ରାଜ୍ୟେ ବହୁ ପରିମାଣେ ।

ଗଙ୍ଗାଧର ଗ୍ରନ୍ଥାବଳୀ, ନୂତନ ମୁଦ୍ରଣ, ବେଦବ୍ୟାସ, ପୃ- ୨୧୯ ।

କୋଇଲ ନଦୀର ପୂର୍ବଧାରକୁ ଲାଗି ଦାସରାଜା ଗଡ଼ର ଧ୍ୱଂସସ୍ତୂପ ଶାଳ, ଅଶ୍ୱଥ, ବାଉଁଶ, ଗୁଳ୍ମ ଇତ୍ୟାଦି ଦ୍ୱାରା ଆଚ୍ଛାଦିତ ହୋଇ ରହିଛି । ଗଡ଼ମଧ୍ୟସ୍ଥ ଏକ ଅଣଓସାରିଆ ଖାଇ ପୂର୍ବରୁ ପଶ୍ଚିମକୁ ଗତି କରି କୋଇଲ ନଦୀରେ ପଡ଼ିଅଛି । ଖାଇର ଉଭୟପାର୍ଶ୍ୱ ଖଣ୍ଡି ଭିତରେ ଥିବା ଶ୍ରେଣୀକୁ ଦେଖିଲେ ଗଡ଼ର ପ୍ରାଚୀନତା ଅନୁମାନ କରାଯାଇପାରେ । ଏକଦା ଖାଇର ଦକ୍ଷିଣ ଭାଗ ଉଚ୍ଚ ମାଟିସ୍ତୂପ ମଧ୍ୟରେ ଗଡ଼ଶିରୀ ଅର୍ଥାତ୍ ଗଡ଼ଦେବୀ ଉଚ୍ଚ ବୃକ୍ଷାଦି ମେଳରେ ଏକଦା ବିଦ୍ୟମାନ ଥିଲେ । ଛୋଟ ଛୋଟ ପ୍ରାଚୀନ ଭଙ୍ଗା ଇଟା ଏଣେତେଣେ ଉଭୟପାର୍ଶ୍ୱରେ ପଡ଼ିଥିଲା । ଏ ସମ୍ପର୍କରେ ବିସ୍ତାରିତ ଆଲୋଚନା ପାଇଁ ଦ୍ରଷ୍ଟବ୍ୟ । ମିଶ୍ର ଗୋକୁଳଚନ୍ଦ୍ର, ନାଗରା, ୧୯୯୨, ନାଗ୍ରା ସାଂସ୍କୃତିକ ଅନୁସନ୍ଧାନକାରୀ ସମିତି, ବଲାଣି, ସୁନ୍ଦରଗଡ଼, ପୃ- ୨୧୨ ।

୨. ଦାଶ, ଶିବପ୍ରସାଦ, ସମ୍ବଲପୁର ଇତିହାସ, ୧୯୬୯, ପୃ- ୪୧୧- ୧୩

୩. Cobden Ramsay, L.E.B. Feudatory States of Orissa in Bengal Gazetteers, 1910/ 1982, p. 175- 176

ଗଙ୍ଗାଧର ଗ୍ରନ୍ଥାବଳୀ, ଦାସ ବ୍ରଦର୍ସ, କଟକ, ୧୯୬୮ ।

ଶ୍ରୀଯୁକ୍ତ ନିରାକାର ମହାଲିକ ବେଦବ୍ୟାସ ଜନଶ୍ରୁତିକୁ ଗ୍ରହଣ କରି ବେଦବ୍ୟାସ ଶୀର୍ଷକ ଗ୍ରନ୍ଥ ପ୍ରକାଶ କରିଛନ୍ତି ।

''ବେଦବ୍ୟାସ'', ଶୀ ଶ୍ରୀ ରାଧାକୃଷ୍ଣ ସାଂସ୍କୃତିକ ସଂସଦ, ରେଢ଼ାଖୋଲ, ୧୯୮୮ ।

ଜନଶ୍ରୁତିର ବିସ୍ତାରିତ ଏବଂ ପୂର୍ଣ୍ଣ ବିବରଣୀ ଶ୍ରୀଯୁକ୍ତ ଗୋକୁଳଚନ୍ଦ୍ର ମିଶ୍ର 'ନାଗରା' ପୁସ୍ତକରେ ସ୍ଥାନ ଦେଇଛନ୍ତି ।

୪. Mani Vettum, 1979/84, Puranic Encyclopaedia, Motilal Banarsi Dass, New Delhi, p. 885-88

୫. କରବୀର ମହାତ୍ମ୍ୟ (ପଦ୍ମପୁରାଣର ଏକ ଖଣ୍ଡ)ରେ ପରାଶର ଏବଂ ସତ୍ୟବତୀଙ୍କର ପୂର୍ବଜନ୍ମ କଥା ପ୍ରକାଶ କରାଯାଇଛି । ଏହି ଖଣ୍ଡ ଅନୁସାରେ ଋଷି ପରାଶରଙ୍କର ପତ୍ନୀ ଥିଲେ ସତ୍ୟବତୀ । ଏକଦା ସତ୍ୟବତୀ ସ୍ନାନରତା ଅବସ୍ଥାରେ ମତ୍ସ୍ୟମାନଙ୍କର ସାଂସାରିକ ଜୀବନ ଦେଖି ବିହ୍ୱଳ ହୋଇଗଲେ ଏବଂ ଆଶ୍ରମକୁ ଫେରିବାକୁ ବିଳମ୍ବ କଲେ । ପରାଶର କ୍ରୋଧାନ୍ୱିତ ହୋଇ ତାହାଙ୍କୁ ମତ୍ସ୍ୟଜୀବୀର କନ୍ୟା ହେବାକୁ ଅଭିଶାପ ଦେଲେ । ବ୍ୟଥିତା ସତ୍ୟବତୀ ବିଷ୍ଣୁଙ୍କୁ ନିଜ ପୁତ୍ରରୂପେ ତାଙ୍କ ଗର୍ଭରୁ ଲାଭ କରିବେ ବୋଲି ଇଚ୍ଛାକଲେ । ଏଥିରେ ଋଷି ଏକମତ ହେଲେ ଏବଂ ପରବର୍ତ୍ତିକାଳରେ କୃଷ୍ଣ ଦ୍ୱୈପାୟନ ବ୍ୟାସ ଅବିବାହିତା ସତ୍ୟବତୀଙ୍କ ଠାରୁ ଜନ୍ମ ନେଇଥିଲେ ।

କରବୀର ମହାତ୍ମ୍ୟ, ଅଧ୍ୟାୟ- ନବମ, ଦଶମ, ଷୋଡ଼ଶ ।

Kurma Purana, part-I (Translated and annotated by G.V. Tagore), Delhi.

୬. ମହାଭାରତ, ଆଦିପର୍ବ, ପ୍ରଥମ ଅଧ୍ୟାୟ । Mani Vetum, ପୂର୍ବୋକ୍ତ ଗ୍ରନ୍ଥ, ପୃ-୮୮୭ ।

୭. ବିଷ୍ଣୁ ପୁରାଣରେ ୨୮ ଜଣ ବ୍ୟାସଙ୍କ କଥା କୁହାଯାଇଛି । ବେଦ ୨୮ ଜଣ ବିଶିଷ୍ଟ ଋଷିମାନଙ୍କ ଦ୍ୱାରା ବିଭିନ୍ନ ଦ୍ୱାପର ଯୁଗରେ ବିଭକ୍ତ ହୋଇଥିଲା । ବିଷ୍ଣୁ ପୁରାଣରେ କୃଷ୍ଣ ଦ୍ୱୈପାୟନ ଅଷ୍ଟବିଂଶ ବ୍ୟାସ ବୋଲି ବର୍ଣ୍ଣିତ ।

Wilson, H.H., The Vishnu Purana, A system of the Hindu Mythology and Tradition, 1972, p. 219-20

୮. ମିଶ୍ର, ଗୋକୁଳଚନ୍ଦ୍ର, ନାଗରା, ୧୯୯୨- ପୃ-୨୧୨ ।

୯. ତତ୍ରୈବ ।

୧୦. Ray Chaudhuri, H.C., Political History of ancient india, 1972, p.116

୧୧. Sircar, D.C. Studies in the Geograpy of Ancient and Medi-aeval India, 1971, p. 56

୧୨. Sircar, D.C., ପୂର୍ବୋକ୍ତ ପୁସ୍ତକ, ପୃ-୫୬ ।

୧୩. ତତ୍ରୈବ, ପୃ-୫୭ ।

୧୪. ସାହୁ ନବୀନ କୁମାର, ଓଡ଼ିଆ ଜାତିର ଇତିହାସ, ୧୯୭୪, ପୃ-୧୧୧

୧୫. Sircar, ପୂର୍ବୋକ୍ତ, ପୁସ୍ତକ, ପୃ-୬୨

୧୬. ତତ୍ରୈବ ।

୧୭. ତତ୍ରୈବ ।

୧୮. Singh Deo, Jitamitra Prasad;
(a) Cultural profile of South Kosala, 1987, p. 74-75.
(b) Archaeological remains of Patnagarh, Orissa Historical Research Journal, Vol. XXXIII, Nos.3 & 4, p. 27

୧୯. Chopdar, D. Date of Barpali Copper plate of Hambiradeva, Orissa History Congress Proceeding of the XV Annual Session, 1989, p. 77-80.

୨୦. କୋଶଳାଧିପତି ହିରଣ୍ୟନାଭ ଏବଂ ତାଙ୍କ ଶିଷ୍ୟ ସମ୍ପର୍କରେ ଦ୍ରଷ୍ଟବ୍ୟ —
Pathak V.N.,History of Kosala upto the rise of the Mauryas, 1963, p. 203-204.

୨୧. ଗଙ୍ଗାଧର ମେହେରଙ୍କ 'ବେଦବ୍ୟାସ' କବିତା ଏବଂ 'ବ୍ୟାସାଶ୍ରମ' ନାମକ ସଂସ୍କୃତ କାବ୍ୟରୁ ଏକଥା ସ୍ପଷ୍ଟ ଯେ ବେଦବ୍ୟାସ ଜନ୍ମସ୍ଥାନ ସମ୍ପର୍କିତ ଜନଶ୍ରୁତି କୌଣସି ପର୍ଯ୍ୟାୟରେ ଏକ ପୁରାଣ ରୂପ ନେଇଥିଲା । ହୁଏତ ପୁରାଣରଚନା ପରେ ଜନଶ୍ରୁତି ହୋଇଛି । ଶ୍ରୀଯୁକ୍ତ ଗୋକୁଳଚନ୍ଦ୍ର ମିଶ୍ର ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ 'ନାଗରା'ରେ ଏହି ବ୍ୟାସାଶ୍ରମ କାବ୍ୟ ଏବଂ କୈବର୍ତ୍ତ ପୁରାଣ କଥା ଉଲ୍ଲେଖ କରିଛନ୍ତି । କୈବର୍ତ୍ତ ପୁରାଣର ରଚୟିତାଥିଲେ ବୁଦ୍ଧିମନ୍ତ ପୁହାଣ । ବ୍ୟାସାଶ୍ରମ ନାମକ ସଂସ୍କୃତ ପାଣ୍ଡୁଲିପି ଉତ୍କଳୀୟ ଲିପିରେ ନାଗରାର ପଣ୍ଡିତ ସତ୍ୟାନନ୍ଦ ପଣ୍ଡା ଏବଂ ପଣ୍ଡିତ ନିଶାକର ପଣ୍ଡା ଉଭୟଙ୍କ ମିଳିତ ପ୍ରଚେଷ୍ଟାରେ ଲେଖାଯାଇଥିଲା । ନାଗରା, ୧୯୯୨, ପୃ- ୨୪୩ ।

୨୨. ଦାଶ, କୈଳାସଚନ୍ଦ୍ର, 'ବେଦବ୍ୟାସ' ନବପତ୍ର, ୧୯୮୮, ଜାନୁଆରୀ, ପୃ- ୨୧୪-୧୫ ।

୨୩. ତତ୍ରୈବ, ପୃ- ୨୧୫- ୨୧୭ ।

